# ବଳିଆରଭୁଜ

ଲେଖକ

ଶ୍ରୀ ଗଣେଶ ପ୍ରସାଦ ପରଜା

ତେନ୍ତୁଳପଦା, କଟକ

ପ୍ରକାଶିକା :

ଶଶିପ୍ରଭା ସାମନ୍ତରାୟ

ଦିବ୍ୟଦୂତ ପ୍ରକାଶନୀ

ରାଜାବଗିଚା, କଟକ-୭୫୩୦୦୯

ପ୍ରକାଶକାଳ : ୧୯୯୯

ପ୍ରଚ୍ଛଦ :

ଗୌରାଙ୍ଗ ବାରକ

ମୁଦ୍ରଣ :

ଶ୍ରୀଅରବିନ୍ଦ ପ୍ରିଣ୍ଟିଂ ପ୍ରେସ

ରାଜାବଗିଚା, କଟକ-୨

ମୂଲ୍ୟ—ଟ ୩୫-୦୦

# ସୂଚୀପତ୍ର


| | | |
|---|---|---|
| ୧ । | ସୁଦର୍ଶନଙ୍କ ସମ୍ବନ୍ଧରେ ପଦେ | ୧ |
| ୨ । | ଶ୍ରୀଜଗନ୍ନାଥ ଓ ଦେବୀ ଶାରଳା | ୯ |
| ୩ । | ଶ୍ରୀଜଗନ୍ନାଥ ଓ ମହାକବି ଶାରଳା ଦାସ | ୨୧ |
| ୪ । | ଜୟଶ୍ରୀ ମାଳାଦ୍ରି ବିହାରୀ | ୩୫ |
| ୫ । | ଶ୍ରୀଜଗନ୍ନାଥ | ୪୪ |
| ୬ । | ଅଣାକାର ପୁରୁଷ | ୫୬ |
| ୭ । | ଭକ୍ତ ନଧିପଧାନୀ | ୬୮ |
| ୮ । | ମହିମାମୟ ଶ୍ରୀଜଗନ୍ନାଥ | ୭୬ |
| ୯ । | ମହାଶକ୍ତି ବିମଳା | ୯୦ |
| ୧୦ । | ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ | ୯୮ |
| ୧୧ । | କାଣ୍ଡାରୀ ଶ୍ରୀଜଗନ୍ନାଥ | ୧୦୮ |
| ୧୨ । | ଶ୍ରୀଜଗନ୍ନାଥ ଓ ଗୁରୁ ଅନଙ୍ଗବଜ୍ର | ୧୧୬ |
| ୧୩ । | ଭକ୍ତ ଅଚ୍ୟୁତାନନ୍ଦ | ୧୩୧ |
| ୧୪ । | ବଳଆରଭୁଜ | ୧୪୨ |


—:*:—

# ସୁଦର୍ଶନଙ୍କ ସମ୍ବନ୍ଧରେ ପଦେ

ଶ୍ରୀଜଗନ୍ନାଥ ମନ୍ଦିରର ମୂର୍ତ୍ତି ଚତୁଷ୍ଟୟଙ୍କ ମଧ୍ୟରେ ସୁଦର୍ଶନଙ୍କ ବିଷୟ ଅତ୍ୟନ୍ତ ଗୂଢ଼ । ଏ ପର୍ଯ୍ୟନ୍ତ ସେ ବିଷୟରେ ବିଧିବଦ୍ଧ କାହିଁକି ସାଧାରଣ ଭାବେ ମଧ୍ୟ ଆଲୋଚନା ହୋଇନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ସାଧାରଣତଃ ଆଲୋଚକ-ମାନେ ଶ୍ରୀଜଗନ୍ନାଥଙ୍କ ବିଷୟରେ ବିଭିନ୍ନ ଦୃଷ୍ଟିକୋଣରୁ ସମ୍ୟକ ଆଲୋଚନା କରିଥାନ୍ତି । ଅବଶିଷ୍ଟ ଶ୍ରୀ ବଳଭଦ୍ର ମାତା ସୁଭଦ୍ରା ଓ ସୁଦର୍ଶନଙ୍କ ବିଷୟରେ କହିବାକୁ ଯାଇ ବଳଭଦ୍ର ତାଙ୍କ ବଡ଼ ଭାଇ, ସୁଭଦ୍ରା ତାଙ୍କ ଭଉଣୀ ଓ ସୁଦର୍ଶନ ମହାପ୍ରଭୁଙ୍କ ଶ୍ରୀକରରେ ଶୋଭା ପାଉଥିବା ଚକ୍ର ବ୍ୟତୀତ ଅନ୍ୟ କିଛି କୁହାଯାଏ ନାହିଁ । ସୁଦର୍ଶନ ଯେ ମହାପ୍ରଭୁ ଜଗନ୍ନାଥଙ୍କ ଦକ୍ଷ ଭୁଜରେ ଧାରଣ କରିଥିବା ଚକ୍ର ନୁହେଁ, ଏହା କେହି ଭୁଲରେ ମଧ୍ୟ ବ୍ୟକ୍ତ କରନ୍ତି ନାହିଁ । କାହିଁକି ନା ସେମାନେ ବୋଧେ ସୁଦର୍ଶନଙ୍କ ଉପରେ ସେଭଳି କିଛି ଆଲୋଚନା କରିବାକୁ ଚାହାଁନ୍ତି ନାହିଁ । 'ସ୍କନ୍ଦପୁରାଣ ଉତ୍କଳଖଣ୍ଡ', ଯେଉଁ ଗ୍ରନ୍ଥରେ ପୁରୁଷୋତ୍ତମ ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି, ତନ୍ମଧ୍ୟରେ ଶ୍ରୀ ଜଗନ୍ନାଥ-ବଳଭଦ୍ର-ସୁଭଦ୍ରାଙ୍କ ସହିତ ସୁଦର୍ଶନଙ୍କ ସ୍ତୁତି ରହିଛି । ମାତ୍ର ସ୍ନାନ ବା ରଥଯାତ୍ରାରେ ସୁଦର୍ଶନଙ୍କ କଥା କିଛି ଲେଖା ହୋଇନାହିଁ । ସତେ ଯେପରି ରଥଯାତ୍ରାରେ ସୁଦର୍ଶନଙ୍କର କୌଣସି ଅଂଶ ନାହିଁ, ସେହିଭଳି ମନେହୁଏ । ଅଥଚ ଦେଖିଲା ବେଳକୁ ରଥଯାତ୍ରାରେ ପ୍ରଥମେ ସୁଦର୍ଶନଙ୍କ ପହଣ୍ଡି ବିଜେ ହେଲା ପରେ ବଳଭଦ୍ରଙ୍କର ହୁଏ । ତା' ପରେ ହୁଏ ଦେବୀ ସୁଭଦ୍ରାଙ୍କର ଓ ଶେଷରେ ହୁଏ ଶ୍ରୀଜଗନ୍ନାଥଙ୍କର ।

ଡଃ. ମହତାବଙ୍କ ଓଡ଼ିଶା ଇତିହାସରେ ଉଲ୍ଲେଖ ଅଛି—ସ୍କନ୍ଦ ପୁରାଣ ଉତ୍କଳ-ଖଣ୍ଡ କପିଳେନ୍ଦ୍ରଙ୍କ ରାଜତ୍ୱ ସମୟରେ ବା ତାହାର ଟିକିଏ ପୂର୍ବରୁ ଲେଖା ହୋଇଛି । କପିଳେନ୍ଦ୍ରଙ୍କ ରାଜତ୍ୱ ସମୟରେ ପ୍ରସିଦ୍ଧ ଓଡ଼ିଆ କବି ଶାରଳାଦାସ ମୂଷଳୀ ପର୍ବରେ ଶ୍ରୀଜଗନ୍ନାଥଙ୍କ ବୃତ୍ତାନ୍ତ ଉଲ୍ଲେଖ କରିଛନ୍ତି । ସେ ମଧ୍ୟ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ବ୍ୟତୀତ ସୁଦର୍ଶନଙ୍କ କଥା ଉଲ୍ଲେଖ କରି ନାହାନ୍ତି । ତେଣୁ ସ୍ୱତଃ ମନେ ହୋଇଥାଏ, ସୁଦର୍ଶନ କ'ଣ ପରେ ନିର୍ମିତ ହୋଇ ଶ୍ରୀଜଗନ୍ନାଥ ମୂର୍ତ୍ତିତ୍ରୟଙ୍କ ସହିତ ସଂଯୁକ୍ତ ହେଲେ କି ? ଇତିହାସରେ ଏହାର ସାକ୍ଷ୍ୟ ଅଭାବ ନାହିଁ । କଳାପାହାଡ଼ ମହାପ୍ରଭୁମାନଙ୍କୁ ହାତୀରେ ନେଇ ପୋଡ଼ି ଦେଉଥିବାବେଳେ ବିଶର ମହାନ୍ତି ତାଙ୍କ ବ୍ରହ୍ମମାନଙ୍କୁ ଆଣି କୁଜଙ୍ଗରେ ପୂଜା କରିଥିବା ଇତିହାସରେ ଅଛି । ସେହି ବ୍ରହ୍ମମାନଙ୍କୁ

ଆଣି ରାମଚନ୍ଦ୍ର ଦେବ ମୂର୍ତ୍ତି ନିର୍ମାଣ କରି ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ପୂଜା କରିଥିଲେ । ଏହି ସମୟରେ ସୁଦର୍ଶନ ନିର୍ମିତ ହୋଇଥିବା ଧାରଣା କରାଯାଇପାରେ । ମାତ୍ର ଏଭଳି ଧାରଣା ଅମୂଳକ । ସୁଦର୍ଶନ ମୂଳରୁ ଖ୍ରୀ: ସମ୍ଭବତଃ ଅଷ୍ଟମ ଶତାବ୍ଦୀ ବା ତା' ପୂର୍ବରୁ ଉପାସିତ ହୋଇ ଆସୁଛନ୍ତି—ଏହା ଧାରଣା କରିବା ଆଦୌ ଭ୍ରମ ନୁହେଁ ।

ଚତୁର୍ଥ ଶତାବ୍ଦୀ ବା ତା' ପୂର୍ବରୁ ଓଡ଼ିଶାରେ ବଜ୍ରଯାନ ନାମରେ ଏକ ବୌଦ୍ଧ ଧର୍ମ ଶାଖାର ଅଭ୍ୟୁଦୟ ଘଟିଥିଲା । ଚୀନ, ତିବ୍ବତ ଆଦିରେ ଏହି ଶାଖା ବିରାଟ ଆକାର ଧାରଣ କରିଥିବା ଦେଖାଯାଏ । ଏହି ବଜ୍ରଯାନୀଙ୍କ ମତ ଅନୁଯାୟୀ ସୁଦର୍ଶନ ହେଉଛନ୍ତି ବଜ୍ର । ବଜ୍ର କହିଲେ, ଶୂନ୍ୟକୁ ବୁଝାଏ ଏବଂ ପୁଂଲିଙ୍ଗକୁ ମଧ୍ୟ ବୁଝାଏ । ଶୂନ୍ୟ ସହିତ ମିଳିତ ହେବାପାଇଁ ଯେଉଁ ମାର୍ଗର ଆଶ୍ରୟ ନେବାକୁ ହୁଏ, ତାହାକୁ ବଜ୍ରଯାନ କୁହାଯାଏ ।

ମୂଳ ବୌଦ୍ଧଧର୍ମ ବୁଦ୍ଧଙ୍କ ପରେ ଦୁଇ ଭାଗରେ ବିଭକ୍ତ ହୋଇ ହୀନଯାନ ବା ଅର୍ହତ୍‌ଯାନ ଓ ମହାଯାନ ନାମରେ ନାମିତ ହେଲା । ଏହି ମହାଯାନର କେତେକ ପଣ୍ଡିତ ଶୂନ୍ୟଯାନ ବା ବଜ୍ରଯାନ ପ୍ରଚାର କଲେ । ଚର୍ଯ୍ୟାପଦର ରଚୟିତାମାନେ ବଜ୍ରଯାନରୁ ଜଣେ ଜଣେ ସିଦ୍ଧ ସାଧକ ବୋଲି ନିରୂପିତ ହୁଅନ୍ତି । ଚର୍ଯ୍ୟାପଦକୁ ଛାଡ଼ିଦେଲେ ଶାରଳାଙ୍କ ସମୟଠାରୁ ପଞ୍ଚସଖା କାହ୍ନିକ, ତା'ପରେ ଭୀମଭୋଇଙ୍କ ପର୍ଯ୍ୟନ୍ତ ଶୂନ୍ୟ ଉପରେ ବହୁ ସାହିତ୍ୟ ବା ଗ୍ରନ୍ଥ ଲେଖାହୋଇଛି । ଏହି ଶୂନ୍ୟ ହେଉଛନ୍ତି ନିଜେ ମହାପ୍ରଭୁ ଜଗନ୍ନାଥ । ତେଣୁ ବଜ୍ରଯାନ ମତ ଅନୁଯାୟୀ ଶ୍ରୀଜଗନ୍ନାଥଙ୍କୁ ପରମବଜ୍ରୀ କୁହାଯାଏ । କାହିଁକି ନା, ତାଙ୍କ ବାମ ଭାଗରେ ବଜ୍ର ସୁଦର୍ଶନ ଆଖ୍ୟା ନେଇ ଅବସ୍ଥାପିତ । ଭଗବାନ ବିଷ୍ଣୁ ବେଦରେ ଦେବତାଭାବେ ଗୌଣ ହେଲେ ମଧ୍ୟ ପରବର୍ତ୍ତୀ ପୁରାଣ ଯୁଗରେ ମୁଖ୍ୟ ଦେବତାରୂପେ ହିନ୍ଦୁମାନଙ୍କ ଦ୍ୱାରା ଗୃହୀତ ହୋଇ ଆସିଛନ୍ତି । ତାଙ୍କ ଧ୍ୟାନରେ ସେ ଚତୁର୍ଭୁଜ ବୋଲି କୁହାହୋଇଛି ଓ ସେ ଚତୁର୍ଭୁଜରେ ଶଙ୍ଖ-ଚକ୍ର-ଗଦା-ପଦ୍ମ ଧାରଣ କରିଥିବା ଉଲ୍ଲେଖ ଅଛି । ଦେଖିବାକୁ ଗଲେ, ଏହି ଶଙ୍ଖ-ଚକ୍ର-ଗଦା ପଦ୍ମ ବୌଦ୍ଧ ସଙ୍କେତ । ପୁଣି ଗୋଟି ମହାପ୍ରଭୁ ଜଗନ୍ନାଥଙ୍କ ବାମ ଭାଗରେ ଥିବା ସୁଦର୍ଶନ ବୋଲି ଧାରଣା କରାଯାଏ ।

ହିନ୍ଦୁମାନଙ୍କ ଶାସ୍ତ୍ରରେ ବର୍ଣ୍ଣିତ ସୁଦର୍ଶନ ଏକ ଗୋଲାକାର ଚକ୍ର । ମାତ୍ର ଶ୍ରୀଜଗନ୍ନାଥଙ୍କ ବାମ ଭାଗରେ ଥିବା ସୁଦର୍ଶନ ଲମ୍ବାକୃତି । ତେଣୁ ଏହା ସୁଦର୍ଶନ ଚକ୍ର ନୁହେଁ ବୋଲି କହିଲେ ଭୁଲ୍ ହେବନାହିଁ । ପୁଣି ସୁଦର୍ଶନ ଚକ୍ରକୁ ବିଷ୍ଣୁ ବାମ

କରରେ କେବେ ଧାରଣ କରନ୍ତି ନାହିଁ । ସେ ଯେତେବେଳେ ଶ୍ରୀଜଗନ୍ନାଥଙ୍କ ବାମ ଭାଗରେ ରହିଛନ୍ତି, ସେତେବେଳେ ସୁଦର୍ଶନ ଚକ୍ର କପରି କୁହାଯିବ ? ସୁଦର୍ଶନ କହିଲେ, ସୁ-ଦର୍ଶନ—ଅର୍ଥାତ୍ ଯାହା ଦେଖିବାକୁ ଉତ୍ତମ ବା ସୁନ୍ଦର । ତେଣୁ ଶ୍ରୀଜଗନ୍ନାଥଙ୍କ ବାମ ଭାଗରେ ଥିବା ସୁଦର୍ଶନ ଦେଖିବାକୁ ସୁନ୍ଦର ବୋଲି ତାଙ୍କୁ ସୁଦର୍ଶନ କୁହାଯାଇଛି ।

ବଜ୍ରଯାନ ମତରେ, ଶ୍ରୀଜଗନ୍ନାଥ ହେଉଛନ୍ତି ପରମବଜ୍ର, ବଳଭଦ୍ର ବଜ୍ରୋଦକ, ସୁଭଦ୍ରା ବଜ୍ରେଶ୍ୱରୀ ବା ବଜ୍ରଶ୍ୱାସ ଓ ସୁଦର୍ଶନ ବଜ୍ର । ସୃଷ୍ଟି ଉଦ୍ଦେଶ୍ୟରେ ଏହି ଗୃହଦେବତାଙ୍କର ଆବଶ୍ୟକତା ରହିଛି । ଶ୍ରୀଜଗନ୍ନାଥ ଶୂନ୍ୟ । ଶୂନ୍ୟର ବର୍ଣ୍ଣ ନୀଳ ।

ଏହି ନୀଳ ଘନ ହୋଇଗଲେ କଳା ହୋଇଯାଏ । ତେଣୁ ଶ୍ରୀଜଗନ୍ନାଥ କୃଷ୍ଣ ବର୍ଣ୍ଣର ଦେବତା । ବିନ୍ଦୁ ସଚରାଚର ଶ୍ୱେତ ହୋଇଥିବାରୁ ବଜ୍ରୋଦକ ଶ୍ୱେତ ଓ ପାରଦ ଭଳି ଚଳ ଚଳ । ତେଣୁ ବଳଭଦ୍ର ଶ୍ୱେତ ବର୍ଣ୍ଣର ଦେବତା ଓ ସେ ପହଣ୍ଡି ବେଳେ ଚଳି ଚଳି ଆସନ୍ତି । ବଜ୍ରେଶ୍ୱରୀ ହେଉଛନ୍ତି ପୃଥିବୀ ଭଳି ଜଗଜ୍ଜନନୀ । ବେଦରେ ମାତା ପୃଥିବୀ ଓ ପିତା ଦ୍ୟୌଙ୍କ କଥା ଉଲ୍ଲେଖ ଅଛି । ଦ୍ୟୌ ହେଉଛନ୍ତି ଅନ୍ତରୀକ୍ଷ ବା ଆକାଶ, ଆଉ ମାତା ପୃଥିବୀ ବସୁଧା । ଶସ୍ୟଶାଳିନୀ ମାତା ପୃଥିବୀର ବର୍ଣ୍ଣ ଯେଉଁ ଭଳି ହରିଦ୍ରା ସେହିଭଳି ଦେବୀ ସୁଭଦ୍ରାଙ୍କ ବର୍ଣ୍ଣ ହଳଦିଆ । ସାଧାରଣତଃ ବଜ୍ର ବା ଲିଙ୍ଗର ବର୍ଣ୍ଣ ତାଉ ବା ରକ୍ତ; ତେଣୁ ସୁଦର୍ଶନ ତାଉ ରଙ୍ଗର ।

ତନ୍ତ୍ର ଅନୁଯାୟୀ ଶିବ ଶକ୍ତି—ପୁରୁଷ ସ୍ତ୍ରୀ ଏ ଦୁହେଁ ସତ୍ୟ । ସେହିଭଳି ଶ୍ରୀଜଗନ୍ନାଥ ଓ ମାତା ସୁଭଦ୍ରା ସତ୍ୟ । ବିନ୍ଦୁ—ବଜ୍ରୋଦକ ବା ବଳଭଦ୍ର ସତ୍ୟ ନ ହେଲେ ମଧ୍ୟ ସଂପୂର୍ଣ୍ଣ ଅସତ୍ୟ ନୁହନ୍ତି । ସେ ଆପେକ୍ଷିକ ସତ୍ୟ ହୋଇଥିବାରୁ ତାଙ୍କ ପାଇଁ ସ୍ୱତନ୍ତ୍ର ରଥ ନିର୍ମିତ ହୁଏ । ସେ ସବୁଜ ସୃଷ୍ଟିର ପ୍ରତୀକ ହୋଇଥିବା ଯୋଗୁଁ ତାଙ୍କ ରଥ ଉପରେ ସବୁଜ କପଡ଼ାର ଆଭରଣ ଦିଆଯାଏ । ତାହା ନୀଳ ରଙ୍ଗ ନୁହେଁ । ଯେହେତୁ ବଳରାମ ନୀଳାମ୍ବର, ତେଣୁ ତାଙ୍କ ରଥ ଉପରେ ନୀଳ କପଡ଼ା ଆବୃତ ହୋଇଛି—ଏଭଳି କହିବାର ଯୁକ୍ତି ନାହିଁ । ବଜ୍ର ସତ୍ୟ ନୁହେଁ ବା ଆପେକ୍ଷିକ ସତ୍ୟ ନୁହେଁ—ତେଣୁ ସେ ସଂପୂର୍ଣ୍ଣ ଅସତ୍ୟ । ସେଥିପାଇଁ ସୁଦର୍ଶନଙ୍କର ସ୍ୱତନ୍ତ୍ର ରଥ ହୁଏ ନାହିଁ । ସେ ସୁଭଦ୍ରାଙ୍କ ରଥରେ ରହିବାର କାରଣ ହେଉଛି, ସୃଷ୍ଟି ନିମିତ୍ତ ସେ ଶକ୍ତିଙ୍କ ସହ ଯୁକ୍ତ ନ ହେଲେ ସୃଷ୍ଟି ହେବା ସମ୍ଭବ ନୁହେଁ । ତେଣୁ ରଥଯାତ୍ରା ବେଳେ ସେ ଶକ୍ତିଙ୍କ ରଥରେ ରହନ୍ତି ।

ମହେଞ୍ଜୋଦାରୋ ସଭ୍ୟତାରେ ଗୋଟିଏ ବହୁ ବଳୟ ଭୂଷିତ ପୁରୁଷର ଚିତ୍ର ରହିଛି । ଜନ୍ ମାର୍ଶଲ ସେହି ଚିତ୍ରଟିକୁ ଭଲଭାବେ ନିରୀକ୍ଷଣ କରି କହନ୍ତି— ଏହି

ପୁରୁଷ ଊର୍ଦ୍ଧ୍ୱଲିଙ୍ଗ । ସେହିଭଳି ଓଡ଼ିଶା ସଂଗ୍ରହାଳୟରେ ଗୋଟିଏ ନର୍ତ୍ତନଶୀଳ ଶିବ ମୂର୍ତ୍ତି ଅଛି । ତାହା କେନ୍ଦୁଝରର ଆସନ ପାଟରୁ ମିଳିଥିଲା । ସେହି ମୂର୍ତ୍ତି ମଧ୍ୟ ଊର୍ଦ୍ଧ୍ୱଲିଙ୍ଗ । ବିନ୍ଦୁ ଯଥେଷ୍ଟ ନ ଥିଲେ ପୁରୁଷ ଊର୍ଦ୍ଧ୍ୱଲିଙ୍ଗ ହୋଇପାରେ ନାହିଁ । ସେଥିପାଇଁ ସିଦ୍ଧମାନେ ବ୍ରହ୍ମଚାରୀ ହୋଇଥା'ନ୍ତି । ଯେଉଁଭଳି ମହେଞ୍ଜୋଦାରୋ ସଭ୍ୟତାର ବହୁବଳୟ ଭୂଷିତ ପୁରୁଷ ବା ଓଡ଼ିଶା ସଂଗ୍ରହାଳୟରେ ଥିବା ନର୍ତ୍ତନଶୀଳ ଶିବମୂର୍ତ୍ତି ଊର୍ଦ୍ଧ୍ୱଲିଙ୍ଗ, ସେହିଭଳି ମହାପ୍ରଭୁ ଜଗନ୍ନାଥ ମଧ୍ୟ ଊର୍ଦ୍ଧ୍ୱଲିଙ୍ଗ । ତାହା ସମ୍ଭବ ହୋଇଛି କେବଳ ସୁଦର୍ଶନଙ୍କ ଯୋଗୁଁ । ସେଥିପାଇଁ ସୁଦର୍ଶନ ଶ୍ରୀଜଗନ୍ନାଥଙ୍କ ବାମଭାଗରେ ଊର୍ଦ୍ଧ୍ୱଶିର ହୋଇ ରହନ୍ତି ।

ହିନ୍ଦୁ ସଭ୍ୟତାରେ ଉପାସନାର ଦୁଇଟି ମାର୍ଗ ଅଛି । ସେହି ଦୁଇଟି ମାର୍ଗ ମଧ୍ୟରୁ ଗୋଟିଏ ବୈଦିକ ଓ ଅନ୍ୟଟି ତାନ୍ତ୍ରିକ । ବୈଦିକ ଉପାସନା ଯଜ୍ଞ ମାଧ୍ୟମରେ ହୁଏ । ମାତ୍ର ତାନ୍ତ୍ରିକ ଉପାସନା ବିଭିନ୍ନ ଉପଚାରରେ ପୂଜା ମାଧ୍ୟମରେ ହୋଇଥାଏ । ଶ୍ରୀଜଗନ୍ନାଥଙ୍କ ରୋଷଘରେ ପ୍ରାତଃ ସମୟରେ ହୋମ କରିବାର ବିଧି ଅଛି । ହୋମ ହିଁ ବୈଦିକ ଯଜ୍ଞର ଅନ୍ୟରୂପ । ମାତ୍ର ମହାପ୍ରଭୁମାନଙ୍କୁ ପୂଜା ମାଧ୍ୟମରେ ଅର୍ଚ୍ଚନା କରାଯାଏ । ତେଣୁ ତାନ୍ତ୍ରିକ ମତରେ ମହାପ୍ରଭୁଙ୍କର ଉପାସନା ହୁଏ, ଏହା ବୁଝାଯିବ । ତନ୍ତ୍ରରେ ଦୁଇଟି ମତ ଅଛି । ଗୋଟିଏ ଦକ୍ଷିଣାଚାର ଓ ଅନ୍ୟଟି ବାମାଚାର । ସୁଦର୍ଶନ ମହାପ୍ରଭୁଙ୍କ ବାମଭାଗରେ ରହିଥିବା ହେତୁ ଶ୍ରୀଜଗନ୍ନାଥଙ୍କ ପୂଜା ବାମ ମାର୍ଗରେ କରାଯିବ—ଏହା ହିଁ ସୁଦର୍ଶନ ବିଜ୍ଞାପିତ କରୁଛନ୍ତି ।

ପୁରୀରେ ଗୋଟିଏ କିମ୍ବଦନ୍ତୀ ଅଛି; ଏକଦା ବିଷ୍ଣୁଙ୍କ ଚକ୍ର ସୁଦର୍ଶନ ମନ ମଧ୍ୟରେ ଧାରଣା କଲେ ମୁଁ ଅସୁର ମାନଙ୍କୁ ବଧ କରିବା ହେତୁ ଭଗବାନ ସର୍ବଶକ୍ତିମାନ ହେଉଛନ୍ତି । ତେଣୁ ସେ ନିଜକୁ ଗର୍ବିତ ମନେକଲେ । ଏହା ଶ୍ରୀଜଗନ୍ନାଥ ଜାଣିପାରି ସୁଦର୍ଶନଙ୍କୁ କହିଲେ, "ତୁମେ ପ୍ରକୃତ ଶକ୍ତିମାନ କିମ୍ବା ମୁଁ ଶକ୍ତିମାନ, ତାହାର ବିଚାର ପାଇଁ ଜଣେ ମଧ୍ୟସ୍ଥି ସ୍ଥିର କର ।" ସୁଦର୍ଶନ ସେଭଳି କାହାକୁ ସ୍ଥିର କରି ନ ପାରିବାରୁ ଶ୍ରୀଜଗନ୍ନାଥ ହନୁମାନଙ୍କୁ ଡାକିବାକୁ କହିଲେ । ସୁଦର୍ଶନ ସଙ୍ଗେ ସଙ୍ଗେ ଯାଇ ହନୁମାନଙ୍କୁ କହିଲେ- "ତୁମକୁ ମହାପ୍ରଭୁ ଡାକୁଛନ୍ତି ।" ହନୁମାନ ଶ୍ରୀଜଗନ୍ନାଥ ଡାକୁଛନ୍ତି ଶୁଣି କହିଲେ, "ହେଉ ତୁମେ ଯାଅ, ତୁମେ ପହଞ୍ଚିବା ପୂର୍ବରୁ ମୁଁ ମହାପ୍ରଭୁଙ୍କ ପାଖରେ ପହଞ୍ଚି ସାରିଥିବ ।" ହେଲାରୁ ସୁଦର୍ଶନ ମୁହୂର୍ତ୍ତିକ ମଧ୍ୟରେ ଶ୍ରୀମନ୍ଦିର ନିକଟରେ ପହଞ୍ଚି ଦେଖନ୍ତି ହନୁମାନ ପାହାଚ ଡେଇଁ ମନ୍ଦିର ଭିତରକୁ ଯାଉଛନ୍ତି । ଏହା ଦେଖି ସେ ଭୟଙ୍କର ରାଗିଗଲେ ଓ ହନୁମାନଙ୍କୁ ବାଟ ଘେରିଲେ । ଗୋଟିଏ ଦ୍ୱାରରେ ସୁଦର୍ଶନ ବାଟ ଘେରିବାରୁ ହନୁମାନ ଅନ୍ୟ ଦ୍ୱାରକୁ ଚାଲିଗଲେ ଓ ସେଠାରେ ମଧ୍ୟ ସୁଦର୍ଶନ ବାଟ ଘେରିଲେ । ଏହିପରି ଚାରି-

ଦ୍ୱାରରେ ସୁଦର୍ଶନ ବାଟ ଘେରିବାରୁ, ହନୁମାନ ଚତୁର୍ହସ୍ତ ହୋଇଗଲେ ଓ ଗୋଟିଏ ହାତର ଆଙ୍ଗୁଳିରେ ସୁଦର୍ଶନଙ୍କ କେନ୍ଦ୍ର ବା ହୁଳରେ ଆଙ୍ଗୁଳି ଭର୍ତ୍ତି କରି ସୁଦର୍ଶନଙ୍କୁ ବୁଲାଇ ବୁଲାଇ ମହାପ୍ରଭୁଙ୍କ ପାଖରେ ପହଞ୍ଚିଲେ । ହନୁମାନଙ୍କର ଏହିଭଳି ରୂପ ଦେଖି ମହାପ୍ରଭୁ ପଚାରିଲେ "ହନୁମାନ, ଏ କ'ଣ ?" ଉତ୍ତରରେ ହନୁମାନ କହିଲେ, "ଭଗବାନ ! ସୁଦର୍ଶନ ବଡ଼ ଗର୍ବୀ ହୋଇ ଗଲେଣି; ତେଣୁ ତାଙ୍କୁ ବାଡ଼ିଭଳି ଲମ୍ବା କରି ଦିଅନ୍ତୁ ।" ମହାପ୍ରଭୁ କହିଲେ, "ତଥାସ୍ତୁ ।" ତା'ପରେ ହନୁମାନ କହିଲେ, "ଖାଲି ସେତିକି ନୁହେଁ; ଏଣିକି ସେ ଆପଣଙ୍କ ଦକ୍ଷିଣ ଭାଗରେ ନ ରହି ବାମ ଭାଗରେ ରହନ୍ତୁ ଓ ରଥଯାତ୍ରା ବେଳେ ସେ ଆପଣଙ୍କ ରଥରେ ନ ରହି ସୁଭଦ୍ରାଙ୍କ ରଥରେ ରହନ୍ତୁ ।" ସେଥିରେ ମଧ୍ୟ ମହାପ୍ରଭୁ ସମ୍ମତ ହେଲେ । ତେଣୁ ସେହି ଦିନଠାରୁ ସୁଦର୍ଶନ ବାଡ଼ିଭଳି ଲମ୍ବା ହୋଇ ଯାଇଛନ୍ତି; ସେ ଶ୍ରୀଜଗନ୍ନାଥଙ୍କ ବାମ ପାର୍ଶ୍ୱରେ ରହୁଛନ୍ତି ଓ ରଥଯାତ୍ରା ବେଳେ ଦେବୀ ସୁଭଦ୍ରାଙ୍କ ରଥରେ ରହି ଆସିଛନ୍ତି ।

ଏ ଗଳ୍ପର ମୁଖ୍ୟ ଉଦ୍ଦେଶ୍ୟ ବଜ୍ରଯାନ ସଭ୍ୟତା ଠାରୁ ସୁଦର୍ଶନଙ୍କୁ ଦୂରେଇ ନେବା । ଏ ଗଳ୍ପଟିର ମୌଳିକତା ନାହିଁ । କାହିଁକି ନା ମହାପ୍ରଭୁ କେବେ ସୁଦର୍ଶନଙ୍କୁ କୌଣସି ବ୍ୟକ୍ତିଙ୍କୁ ଡାକିବାକୁ ପଠାଇନାହାନ୍ତି । କାହାକୁ ଡାକିବାକୁ ଆବଶ୍ୟକ ହେଲେ ସେ ତାଙ୍କ ଦୂତ ବା ବାହନ ଗରୁଡ଼ଙ୍କୁ ପଠାଇ ଥାଆନ୍ତି । ପୁରାଣ ମାନଙ୍କରେ ଯେଉଁଠି ସୁଦର୍ଶନଙ୍କୁ ପଠାଯାଇଛି, ସେଠାରେ କାହାରିକୁ ମାରିବା ପାଇଁ ପଠାଯାଇଛି । ଏ ଗଳ୍ପ ବା କିମ୍ବଦନ୍ତୀରେ ସେହି ବ୍ୟତିକ୍ରମ ଯୋଗୁଁ ସମଗ୍ର ଗପଟି ଭୁଲ ହୋଇଯାଉଛି ।

ଶ୍ରୀକ୍ଷେତ୍ର ବଜ୍ରଯାନର କ୍ଷେତ୍ର । ଶ୍ରୀ କହିଲେ ଲକ୍ଷ୍ମୀଙ୍କୁ ବୁଝାଏ । ଶ୍ରୀକ୍ଷେତ୍ରରେ ଆରାଧିତା ଲକ୍ଷ୍ମୀ, ରତ୍ନଗିରି ବୌଦ୍ଧ ବିହାରର ତୋରଣରେ ଥିବା ଲକ୍ଷ୍ମୀଙ୍କ ସହିତ ସମାନ । ଓଡ଼ିଶାର ଲଳିତଗିରି ଓ ରତ୍ନଗିରିରେ ବଜ୍ରଯାନ ମାନଙ୍କର ବିଶ୍ୱବିଦ୍ୟାଳୟ ଥିଲା ଓ ସେଠାରେ ତନ୍ତ୍ର ପଢ଼ା ଯାଉଥିଲା । ରତ୍ନଗିରି, ଲଳିତଗିରି, ଓ ଉଦୟଗିରିରୁ ବହୁ ତନ୍ତ୍ର ଦେବତାଙ୍କର ମୂର୍ତ୍ତି ମିଳିଛି । ରତ୍ନଗିରିରେ ତନ୍ତ୍ରର ଦେବତା ମହାକାଳ ବିହାର ମାନଙ୍କ ଦ୍ୱାରା ଆରାଧିତ । ସେହି ସମୟରୁ ଓଡ଼ିଶାର ପୁରପଲ୍ଲୀରେ ତନ୍ତ୍ର ପ୍ରଚାରିତ ହୋଇଆସିଛି । ଶ୍ରୀକ୍ଷେତ୍ରର ଭାଷା ଓ ରଥ ଉପରେ ଡାହୁକ ଗାଉଥିବା ପଦଗୁଡ଼ିକ ବଜ୍ରଯାନର । ତେଣୁ ଶ୍ରୀଜଗନ୍ନାଥଙ୍କ ବାମ ପାର୍ଶ୍ୱରେ ପୂଜା ପାଉଥିବା ସୁଦର୍ଶନ ଯେ ବଜ୍ରଯାନର ବଜ୍ର, ଏହା ପ୍ରମାଣ କରିବାରେ ଅସୁବିଧା ହୁଏ ନାହିଁ ।

ଆରମ୍ଭରୁ ସୁଦର୍ଶନ ସତ୍ୟ ବା ଆପେକ୍ଷିକ ସତ୍ୟ ହୋଇ ନ ଥିବାରୁ ତାଙ୍କ ସେବା ପୂଜା ଠିକ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସେବା ପୂଜା ଭଳି ହୁଏ

ନାହିଁ । ସେଥିପାଇଁ ଶାରଳାଦାସ କିମ୍ବା ସ୍କନ୍ଦ ପୁରାଣ ଉତ୍କଳ ଖଣ୍ଡର ଲେଖକ ସ୍ନାନ ବା ରଥଯାତ୍ରାରେ ସୁଦର୍ଶନଙ୍କ କଥା ଉଲ୍ଲେଖ କରି ନାହାନ୍ତି । ଏଭଳିକି ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ କୋଣାର୍କ ଗାତ୍ରରେ ସୁଦର୍ଶନ ଓ ବଳଭଦ୍ରଙ୍କୁ ଏକ କରି ଅଙ୍କନ କରାଯାଇଛି । ସୁଦର୍ଶନ ଯଦି ପ୍ରଥମରୁ ଶ୍ରୀଜଗନ୍ନାଥଙ୍କ ସହିତ ନ ରହି ଷୋଡ଼ଶ ଶତାବ୍ଦୀରେ ନିର୍ମିତ ହୋଇ ରହିଥା'ନ୍ତେ, ତେବେ ତାଙ୍କ ଆକାର ଲିଙ୍ଗାକୃତି ନ ହୋଇ ଚକ୍ରାକୃତି ହୋଇଥା'ନ୍ତା ଓ ତାହା ଶ୍ରୀଜଗନ୍ନାଥଙ୍କ ଦକ୍ଷ ଭାଗରେ ରହିଥା'ନ୍ତା । କାହିଁକି ନା ଷୋଡ଼ଶ, ସପ୍ତଦଶ ଶତାବ୍ଦୀ ବେଳକୁ ବଜ୍ରଯାନ ସଂସ୍କୃତି ଲୋପ ପାଇ ଆସିଲିଣି । କେବଳ ଚଳଣିରେ ଯାହା ରହିଯାଇଛି । ଉଦାହରଣ ସ୍ୱରୂପ ରଥଯାତ୍ରାରେ ଡାହୁକ ଯେଉଁ ଅଶ୍ଳୀଳ ଗୀତ ବୋଲିଥାଏ, ତାହା ସମ୍ପୂର୍ଣ୍ଣ ବଜ୍ରଯାନ ସଂସ୍କୃତିର, ଯାହାକୁ କି ଆଜି ଲୋକେ ବୁଝି ନ ପାରି ତାହା ବନ୍ଦ କରିଦେବାକୁ ସ୍ୱର ଉତ୍ତୋଳନ କରୁଛନ୍ତି । ବାରିପଦା, କେନ୍ଦୁଝର ଆଦି ରଥରୁ ଏ ସଂସ୍କୃତି ଲୋପ ପାଇଗଲିଣି । କିନ୍ତୁ ଶ୍ରୀକ୍ଷେତ୍ରରେ ପୂର୍ବରୁ ପ୍ରଚଳିତ ଥିବାରୁ ଚାଲି ଆସୁଛି । ତାହା ସନ୍ଧ୍ୟା ଭାଷାରେ ଲେଖା ହୋଇଛି ଓ ତା'ର ବାହ୍ୟ ଅର୍ଥ ଅଶ୍ଳୀଳ ହେଲେ ମଧ୍ୟ ଭିତରର ଅର୍ଥ ବେଶ୍ ପରମାର୍ଥିକ । ଶ୍ରୀଜଗନ୍ନାଥ ବଜ୍ରଯାନର ଦେବତା ହୋଇଥିବାରୁ ବଜ୍ରଯାନର ସିଦ୍ଧ ସାଧକ ଆଚାର୍ଯ୍ୟ ଇନ୍ଦ୍ରଭୂତି ତାଙ୍କ ଜ୍ଞାନସିଦ୍ଧିର ଆଦ୍ୟରେ ଗାଇଲେ—

ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍ ।
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ॥

ଇନ୍ଦ୍ରଭୂତି ଅଷ୍ଟମ ଶତାବ୍ଦୀର କବି । ବଜ୍ରଯାନ ଚତୁର୍ଥ ପଞ୍ଚମ ଶତାବ୍ଦୀ ବା ତା ପୂର୍ବରୁ ଆରମ୍ଭ ହୋଇଥିବା ଗବେଷକମାନେ ଧାରଣା କରନ୍ତି । ଶ୍ରୀଜଗନ୍ନାଥ ଆଦିବାସୀର ଦେବତା । ବୌଦ୍ଧମାନେ ଆଦିବାସୀମାନଙ୍କ ସହିତ ମିଶି ସେମାନଙ୍କ ଦେବତାଙ୍କ ମାହାତ୍ମ୍ୟ ଉପଲବ୍ଧି କରି ସେହି ଦେବତାଙ୍କୁ ନିଜ ସଂସ୍କୃତିରେ ଗ୍ରହଣ କରିଥିଲେ; ତା'ପରେ ହିନ୍ଦୁମାନେ ତାଙ୍କ ମାହାତ୍ମ୍ୟ ଅନୁଭବକରି ତାଙ୍କୁ ନିଜର କରିନେଲେ । ତେଣୁ ଶ୍ରୀଜଗନ୍ନାଥ ସଂସ୍କୃତି ବହୁକାଳ ପୂର୍ବର । ଏପରି କି ବେଦ ପୂର୍ବର । ତାଙ୍କ ସହିତ ଓତଃପ୍ରୋତ ଭାବେ ଜଡ଼ିତ ସୁଦର୍ଶନ, ପ୍ରାପ୍ତ ବଜ୍ରଯାନ ସମୟରୁ । ରଥଯାତ୍ରାରେ ପ୍ରଥମେ ସେ ପହଣ୍ଡି ବିଜେ ହୁଅନ୍ତି । ତେଣୁ ଶ୍ରୀଜଗନ୍ନାଥ ସଂସ୍କୃତିରେ ସୁଦର୍ଶନଙ୍କୁ ପ୍ରଥମ କହିଲେ ଅତ୍ୟୁକ୍ତି ହେବ ନାହିଁ । କାହିଁକି ନା ଶାବରଶସ୍ୟମାନେ ସୁଦର୍ଶନ ଭଳି କାଠଗଣ୍ଡି ପୋତି ଦେବତା ଭାବେ ଉପାସନା କରିଥା'ନ୍ତି । ଓଡ଼ିଶାର ବିଭିନ୍ନ ଶାବରଶସ୍ୟ ମାନେ କେଉଁଠି ଗୋଟିଏ, କେଉଁଠି ଦୁଇଟି, କେଉଁଠି ବା ତିନୋଟି ମହୁଲ କାଠର ଗଣ୍ଡି ପୋତିଥା'ନ୍ତି । ମହୁଲି କାଠ ପରେ ନିମ୍ବକାଠରେ ପରିଣତ ହେବା

ମାଦଳା ପାଞ୍ଜିରୁ ଦେଖିବାକୁ ମିଳେ । ରଥଯାତ୍ରା ଅବସରରେ ଶ୍ରୀଜଗନ୍ନାଥଙ୍କର ଜୟ ଜୟକାର ସହିତ ଶ୍ରୀ ସୁଦର୍ଶନଙ୍କର ଜୟ ଧ୍ୱନିରେ ଗଗନ ପବନ ନିନାଦିତ ହେଉ । ସମସ୍ତ ଅମଙ୍ଗଳ ଅପସରି ଯାଇ ଦେଶ ଓ ଜାତିର ମଙ୍ଗଳ ହେଉ ।

ବଳିଆର ଭୁଜ ଛପା ସରିଛି । ଏଥିପାଇଁ ମୋର ପ୍ରିୟ ପାଠକ ବନ୍ଧୁମାନଙ୍କ ସ୍ନେହ ପାଇଲେ ଉପକୃତ ହେବ । ଶେଷରେ ମୁଁ ମୋର ପରମହିତୈଷିଣୀ ଶ୍ରୀ ଦୁର୍ଗା ପ୍ରସନ୍ନ ସିଂହଙ୍କ ପାଖରେ କୃତଜ୍ଞତା ଜ୍ଞାପନ କରୁଛି । ତାଙ୍କର ବନ୍ଧୁତା ଏବଂ ସହାନୁଭୂତି ମୋତେ ବଳିଆର ଭୁଜ ପ୍ରକାଶ ପାଇଁ ବହୁ ପ୍ରେରଣା ଦେଇଛି ।

"ଇତି"

**ଲେଖକ**



# ଶ୍ରୀଜଗନ୍ନାଥ ଓ ଦେବୀ ଶାରଳା

କୁହନ୍ତୁ ମହାପ୍ରଭୁ ! ଜାତିର ଇତିହାସ ପୁରାଣ ମାଧ୍ୟମରେ ଲେଖା ସରିଲାପରେ ଆପଣଙ୍କ ବିଷୟରେ କଣ ଲେଖାଯିବ ? ଏ ଜାତି ଆପଣଙ୍କୁ ଭରସାକରି ଗଢ଼ି ଉଠିଛି । ଯୁଗେ ଯୁଗେ ଆପଣ ହେଉଛନ୍ତି ଏ ଜାତିର ରକ୍ଷକ ! ଶିକ୍ଷକ !! ଯେତେବେଳେ ଜାତି ଆପଣଙ୍କୁ ତ୍ୟାଗ କରିବ ସେତେବେଳେ ସେ ତାର ସବୁ କିଛି ହରାଇ ବସିବ । ଏହି ପରିସ୍ଥିତିରେ ଜାତିକୁ ଦିଗ୍‌ଦର୍ଶନ ଦେବାପାଇଁ କଣ ଲେଖାଯିବ ?

କ'ଣ ଜାଣିଥିଲୁ ମହାଭାରତ ଲେଖା ଶେଷ ହୋଇଗଲାଣି ଯେ ତୁମେ ମୋକଥା କଣ ଲେଖାଯିବ ବୋଲି ପଚାରୁଛ ? ଏ ବିଷୟରେ ତୁମକୁ ମୁଁ ସମସ୍ତ କ୍ଷମତା ଦେଇଛି । ତୁମେ ଚିନ୍ତାକଲା ମାତ୍ରେ ସମସ୍ତ ସତ୍ୟ ଘଟଣା ତୁମ ମାନସ ପଟରେ ଭାସିଯିବ । ମୁଁ କିଏ, କେବେଠାରୁ ଆରାଧିତ ସମସ୍ତ ବିଷୟ ଠିକ୍‌ଏ ଚିନ୍ତାକଲେ ତୁମେ ଜାଣିପାରିବ । ତେଣୁ ତୁମେ ମୋତେ ପଚାରିବାର ଆବଶ୍ୟକତା କ'ଣ ଅଛି ?

ତଥାପି ମହାପ୍ରଭୁ ! ଆପଣଙ୍କ ଅନୁମତି ନ ନେଇ ମୁଁ କିଭଳି ନିର୍ଦ୍ଦେଶ ଦେବି ଆପଣଙ୍କ ବିଷୟ ଲେଖିବାକୁ ! ହୁଏତ କେଉଁଠାରେ ତ୍ରୁଟି ରହିଯିବ । ସେ ତ୍ରୁଟି ହୁଏତ ଓଡ଼ିଆଜାତି ଜାଣି ପାରିବ କି ନାହିଁ; କିନ୍ତୁ ଆପଣତ ତାହା ଜାଣି ପାରିବେ ? ଜାତିର ଇତିହାସକୁ ପୁରାଣ ମାଧ୍ୟମରେ ଲେଖିଲାବେଳେ ତା'ର ଦେବତା; ପୁଣି ଆପଣଙ୍କ ବିଷୟରେ କିପରି ତ୍ରୁଟିପୂର୍ଣ୍ଣ ତଥ୍ୟ ମୁଁ ପରିବେଷଣ କରିବି ? ଆପଣ ମୋତେ କଣ କହିବେ ଶେଷରେ ?

ଶାରଳେ ! ତୁମେ ମନେରଖ ଓଡ଼ିଆଜାତିର ପୁରାଣ ଲେଖା ସରିଲାପରେ, ତାହାର ଅନୁମୋଦନ ପାଇଁ କବି ନିଜେ ସେଗୁଡ଼ିକ ଧରି ଏଠାକୁ ଆସିବେ । ସେତେବେଳେ ଯାହା ତ୍ରୁଟିଥିବ ତାହା ପରିମାର୍ଜିତ

ହେବ । ତେଣୁ ବର୍ତ୍ତମାନ ତୁମେ ଯାହା ଉଚିତ୍ ମନେକରୁଛ ତାହା ଲେଖିବାପାଇଁ ନିର୍ଦ୍ଦେଶ ଦିଅ !

ଆପଣଙ୍କ ଆଦେଶ ମୁଁ ପାଳନ କରିବି ମହାପ୍ରଭୁ ! ତଥାପି ଆପଣଙ୍କ ବିଷୟରେ ମୁଁ ଯାହା ଜାଣୁଛି; ତାହା ଟିକିଏ କହିବାକୁ ଇଚ୍ଛା ହେଉଛି । ମୋତେ ଅନୁମତି ଦେଲେ ତାହା ବ୍ୟକ୍ତକରି ମୁଁ ନିଜର ଭାରାକ୍ରାନ୍ତ ମନକୁ ଲାଘବ କରିବି । ମୁଁ ଅନ୍ୟ ବିଷୟରେ ଲେଖିବାକୁ ଯାହା ନିର୍ଦ୍ଦେଶ ଦିଏ ନା କାହିଁକି, ଆପଣଙ୍କ ବିଷୟରେ ପ୍ରଥମରୁ ଅନୁମୋଦନ ଲୋଡ଼ା । ତା' ନ ହେଲେ ଅସୁବିଧା ହୋଇପାରେ ।

ଦେଖ ଦେଖ, ମୋର ବେଶୀ ସମୟ ନାହିଁ ତୁମ କଥା ଶୁଣିବାକୁ । ଅଳ୍ପ ସମୟ ମଧ୍ୟରେ ତୁମେ ଯେତିକ ପାରୁଛ ବ୍ୟକ୍ତ କରିପାର !

ପ୍ରଭୁ ! ମୁଁ ଦେଖୁଛି ବେଦ ରଚନା ହେବା ପୂର୍ବରୁ, ତୁମକୁ ଆଦିମ ଅଧିବାସୀମାନେ ପୂଜା କରୁଥିଲେ । ଏବେ ବି ଶବରମାନେ ବୃକ୍ଷକୁ ଦେବତାରୂପେ ପୂଜା କରନ୍ତି । ଶଉର ଗୋଷ୍ଠୀର ପରଜାମାନେ ତିନୋଟି କାଠଗଣ୍ଡି ପୋତି ଆରାଧନା କରନ୍ତି । ସେମାନଙ୍କର ସେହି କାଠ ହେଉଛି ମହୁଲ । ନିଜ ଗାଁ'ରୁ ଗୋଟିଏ ଓ ପାଖ ଗାଁ'ରୁ ଆଉ ଗୋଟିଏ ଦେବତା ଗଠନପାଇଁ ସେମାନେ ମନୋନୀତ କରନ୍ତି । ସେହି ଦୁଇଟି ଗଛରୁ ତିନୋଟି ଦେବତାଙ୍କ ଉଦ୍ଭବ । ନିଜ ଗାଁ' ଗଛରୁ ଖାମରାଜା ଓ ପଡ଼ଶା ଗାଁ' ଗଛରୁ ଖାମରାଣୀକରି ସେମାନେ ଆନନ୍ଦ ସହକାରେ ମାଟିରେ ପୋତନ୍ତି । ତାଙ୍କ ମଝିରେ ଆଉ ଗୋଟିଏ ଶ୍ରେଷ୍ଠ ମୂର୍ତ୍ତି ରୁହେ । ସେହି ଦେବତାଙ୍କୁ ଏଭଳି ପୋତନ୍ତି, ତାହା ବାରବର୍ଷ ମଧ୍ୟରେ, ମଝି ଦେବତାଙ୍କ ଦୁଇପାଖରେ ପୋତା ହୋଇଥିବା ମହୁଲ କାଠରେ ନିର୍ମିତ ମୂର୍ତ୍ତି ଦୁଇଟି ବାଙ୍କି ପରସ୍ପର ସଂଲଗ୍ନ ହୋଇଯାଏ । ସଂଲଗ୍ନ ହେବାମାତ୍ରେ ପୁଣି ସେହି ପୁରାତନ ଦେବତାଙ୍କ ବଦଳରେ ନୂତନ ଦେବତାଙ୍କ ଆବିର୍ଭାବ ମହା ଆଡ଼ମ୍ବର ସହକାରେ ଆରମ୍ଭ ହୁଏ । ସେହି ଦେବତାଙ୍କ ମୁଖ ସହିତ ଆପଣଙ୍କ ମୁଖ ଅବିକଳ, ମୋର ମନେହେଉଛି । ତେଣୁ ବେଦ ରଚନାର ବହୁ ହଜାର ବର୍ଷ ପୂର୍ବେ ସେହି ପରଜାମାନେ ଆପଣଙ୍କୁ ଆରାଧନା କରୁଥିଲେ । କେବଳ କଳିଙ୍ଗର ଇନ୍ଦ୍ରାବତୀ

ଅଞ୍ଚଳ ନୁହେଁ, ବହୁ ଅଞ୍ଚଳରେ ଏହି ନୟମରେ ସେମାନେ ଆନନ୍ଦରେ ନାଚକରି, ଗୀତଗାଇ ଆପଣଙ୍କୁ ହିଁ ପ୍ରତିଷ୍ଠା କରି ଆରାଧନା କରୁଥିଲେ ।

ଆପଣ ବେଦର ଊର୍ଦ୍ଧ୍ୱରେ । ତଥାପି ବେଦଭାଷ୍ୟକାର ସାୟଣ ଋଗ୍‌ବେଦର ଗୋଟିଏ ମନ୍ତ୍ରରେ ଆପଣଙ୍କୁ ଦର୍ଶନ କଲେ । ଆପଣ ତାଙ୍କୁ ଦର୍ଶନ ଦେଇ କହିଲେ, 'ସାୟଣ ଋଷି ସିଦ୍ଧମନ୍ତ୍ରିତ ମୋତେ ହିଁ ଦେଖିଛନ୍ତି । ତେଣୁ ଆପଣ ବେଦର ପରମ ପୁରୁଷ । ପରମ ପୁରୁଷ ଦାରୁ ମଧ୍ୟରେ ଅଧିଷ୍ଠିତ ।'

ସେହି ଦାରୁଙ୍କୁ ଉପାସନା କରି କାଳିଙ୍ଗମାନେ ବଳଶାଳୀ ହୋଇଥିଲେ । ଯେତେ ଅନ୍ତେ ଥୋକାଯେ ଦିନ ସିବାପରେ କ୍ଷତ୍ରିୟଙ୍କ ଗର୍ବ ଚୂର୍ଣ୍ଣ ପାଇଁ ପରଶୁରାମଙ୍କୁ ଆପଣ ପଠାଇଲେ ଅବତାର ପୁରୁଷ କରି । ଚରଦିନ ଆପଣଙ୍କର ଗର୍ବଗଞ୍ଜନବାନା ଫରଫର ହୋଇ ଉଡୁଛି । କ୍ଷତ୍ରିୟଙ୍କର ଗର୍ବଗଞ୍ଜନ ପାଇଁ ପରଶୁରାମ ଯାଇ ତାଙ୍କ କାର୍ଯ୍ୟ ଶେଷ-କରିବା ପରେ ନିଜେ ଗର୍ବ ଅହମିକାର ଶିକାର ହେଲେ । ସେତେବେଳକୁ ରାବଣର ବଧପାଇଁ ଆପଣଙ୍କଠାରୁ କଳାଟିଏ ଯାଇ ଜନ୍ମ ନେଇଥିଲେ ଶ୍ରୀରାମ । ସେହି ନୂତନ ଅବତାର ପୁରୁଷ ରାମଚନ୍ଦ୍ର ପରଶୁରାମଙ୍କ ଗର୍ବଚୂର୍ଣ୍ଣକରି ତାଙ୍କଠାରୁ ଗ୍ରହଣକଲେ ବୈଷ୍ଣବ ଧନୁ । ଏହାପରେ ପରଶୁରାମ ଅବସର ଗ୍ରହଣକଲେ କଳିଙ୍ଗର ମହେନ୍ଦ୍ର ଗିରିରେ । ମହେନ୍ଦ୍ର ଗିରିର ଅଧିବାସୀଙ୍କଠାରୁ ସେ ଶିକ୍ଷା ନେଲେ ଆପଣଙ୍କ ଉପାସନା । ସେହି ଉପାସନା କରି ସେ ଧର୍ମଗୁରୁଭାବେ ମହେନ୍ଦ୍ର ଗିରି କାହିଁକି, ସମଗ୍ର ଜମ୍ବୁଦ୍ୱୀପରେ ପ୍ରସିଦ୍ଧ ହେଲେ ।

ରାବଣକୁ ମାରି ସୃଷ୍ଟି ରକ୍ଷାପାଇଁ ଆପଣଙ୍କଠାରୁ ପ୍ରେରିତ ସେହି ରାମ ରାଜା ନ ହୋଇ ଭାଇ ଲକ୍ଷ୍ମଣ ଓ ସୀତାଙ୍କ ସହ ବନକୁ ଆସିଲେ । ଧୀରେ ଧୀରେ ସେ ଉତ୍ତର ପଥରୁ ଗୋଦାବରୀ ଆଡ଼କୁ ଆସି ପ୍ରବେଶ ହେଲେ ଦଣ୍ଡକ ଅରଣ୍ୟରେ । ରାବଣ ହରଣକଲା ସୀତାଙ୍କୁ । ତାଙ୍କୁ ଖୋଜିବାକୁ ଆସି ଶ୍ରୀରାମ ସେହି ପମ୍ପା ବା ପମ୍ପାସରଠାରେ ଶବରୀଘରେ ଫଳ ଆହାର କରିଥିଲେ । ସେଠି ସେ ଅନୁଧ୍ୟାନକଲେ କାଳିଙ୍ଗ ଶବରଙ୍କର ଦେବତା ଉପାସନା । ସେହି ଦେବତାଙ୍କୁ ଉପାସନାକରି ଶ୍ରୀରାମ ମିତ୍ରତା ସ୍ଥାପନାକଲେ ସୁଗ୍ରୀବଙ୍କ ସହିତ । ସୁଗ୍ରୀବଙ୍କ ସାହାଯ୍ୟରେ ସେ ବଧକଲେ ରାବଣ । ସେହିଦିନଠାରୁ ଆପଣ ହେଲେ ଇକ୍ଷ୍ୱାକୁ ବଂଶର କୁଳଦେବତା ।

ରାବଣଙ୍କୁ ମାରି ରାମରାଜ୍ୟ ପ୍ରତିଷ୍ଠାକଲେ ଶ୍ରୀରାମଚନ୍ଦ୍ର । ତା'ପରେ ସେ ଯେତେବେଳେ ପାନ୍ର ମିତ୍ରଙ୍କ ସହିତ ସ୍ୱର୍ଗ ଗମନକଲେ, ସେତେବେଳେ ଲଙ୍କାର ରାଜା ବିଭୀଷଣଙ୍କୁ କହିଲେ "ହେ ମହାବଳୀ ରାକ୍ଷସେନ୍ଦ୍ର ! ମୁଁ ଆଉକିଛି ତୁମକୁ କହିବାକୁ ଚାହୁଁଛି । ଏହି ଇକ୍ଷ୍ୱାକୁ କୁଳର ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କୁ ଆରାଧନା କରିଥିବ । ସେ ଇନ୍ଦ୍ର ଏବଂ ସମସ୍ତ ଦେବଗଣଙ୍କ ସହିତ ସର୍ବଦା ଆରାଧମାୟ ।" ସେହିଦିନଠାରୁ ବିଭୀଷଣ ଆପଣଙ୍କୁ ଆରାଧନା କରି ଆସୁଛନ୍ତି । ଆପଣଙ୍କ ଆରାଧନା ହେଉଛି ତାଙ୍କର ଶ୍ରେଷ୍ଠ ଆରାଧନା ।

ତ୍ରେତୟାଯୁଗ ପରେ ଆରମ୍ଭହେଲା ଦ୍ୱାପରଯୁଗ । କଂସର ଅତ୍ୟାଚାରରେ ଦେବତାମାନେ ଅଥୟ ହୋଇପଡ଼ିଲେ । ସେମାନେ ଆପଣଙ୍କ ନିକଟରେ ଗୁହାରିକଲେ ରାକ୍ଷସ ବଧକରି ସୃଷ୍ଟି ରକ୍ଷାକରିବା ପାଇଁ । ସେତେବେଳେ ଆପଣ ଦେବତାଙ୍କ ଉପରେ ଅଭିମାନ କରିଥିଲେ । ରାବଣ ଥିଲା ମହର୍ଷି ବିଶ୍ରବାଙ୍କ ପୁତ୍ର । ତେଣୁ ସେ ବ୍ରାହ୍ମଣ । ସେହି ବ୍ରାହ୍ମଣଙ୍କୁ ବଧ କରିଥିବାରୁ ଆପଣ ବ୍ରହ୍ମହତ୍ୟା ଦୋଷରେ ଦୋଷୀ । ଯେ ବ୍ରହ୍ମ-ଯେ ସମସ୍ତଙ୍କ ଊର୍ଦ୍ଧ୍ୱରେ—ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ଯେ ସୃଷ୍ଟି କରୁଛି, ସୃଷ୍ଟି ରକ୍ଷାପାଇଁ ସେ ଯାହା କରୁନା କାହିଁକି ସେ କୌଣସି ଦୋଷ ଗୁଣରେ ଭାଗୀଦାର ନୁହେଁ । କିନ୍ତୁ ଦେବତାମାନେ ସେ କଥାକୁ ଚିନ୍ତା କଲେନାହିଁ । ସେଥିପାଇଁ ଆପଣ କହିଥିଲେ; ତୁମେ ଦେବତାମାନେ ଅସୁରମାନଙ୍କୁ ବର ଦେବ ଓ ସେମାନେ ଯେତେବେଳେ ସ୍ପର୍ଦ୍ଧାରେ ଫୁଲଉଠି ତୁମକୁ ମାନିବେ ନାହିଁ, ସେତେବେଳେ ମୋ'ନିକଟରେ ଅଭିଯୋଗ କରିବ । ମୁଁ ସୃଷ୍ଟି ରକ୍ଷାପାଇଁ ଅବତାର ପୁରୁଷଙ୍କୁ ପଠାଇବି । ସେମାନେ ବଣ ଜଙ୍ଗଲରେ ବୁଲି ଫଳମୂଳ ଖାଇ ବହୁ କଷ୍ଟପାଇ ରାକ୍ଷସଙ୍କୁ ବଧ କଲାପରେ ବ୍ରହ୍ମହତ୍ୟା ଦୋଷରେ ଦୋଷୀ ହେବି ମୁଁ । ତେଣୁ ମୁଁ ଆଉ ଅବତାର ଗ୍ରହଣ କରିବି ନାହିଁ । ତୁମେ ରାକ୍ଷସଙ୍କୁ ବର ଦେଇ ଯାହା କରିଛ ତା'ର ପ୍ରାୟଶ୍ଚିତ ଭୋଗକର । ତା' ମଧ୍ୟରେ ମୁଁ ମୁଣ୍ଡପୂରାଇବି କାହିଁକି ?

ଦେବତାମାନେ ନିଜର ଭୁଲ ସ୍ୱୀକାର କଲେ । ସେମାନେ କହିଲେ ଏଣିକି ଆଉ ଆମେ କୌଣସି ଦୋଷ ଆପଣଙ୍କୁ ଦେବୁନାହିଁ । ଏଥର ମଧ୍ୟ

ଅବତାର ପୁରୁଷ ବଣ ଜଙ୍ଗଲରେ ବୁଲିବେ ନାହିଁ । ବନ୍ଦୀଶାଳାରେ ସେ ଜନ୍ମନେଇ ସେହି ରାତିରେ ଗୋପ ଚାଲିଯିବେ । ଗୋପରେ ସର ଲବଣୀ ଖାଇ ଷୋଳସହସ୍ର ଗୋପୀଙ୍କ ସହିତ ରାହାସ ରଚିବେ । ସେ ହେବେ ରାଜାଧିରାଜ । ଜାତିକୁ ଦିଗ୍‌ଦର୍ଶନ ଦେବାପାଇଁ କୁରୁକ୍ଷେତ୍ର ସମର ପ୍ରାଙ୍ଗଣରେ ଅର୍ଜ୍ଜୁନକୁ ଶ୍ରେଷ୍ଠଜ୍ଞାନ ଶୁଣାଇ ନିଜର ବିଶ୍ୱରୂପ ଦେଖାଇବେ । ତେଣୁ ଲୋକମାନଙ୍କର ସେ ହେବେ ଚିରବନ୍ଦନୀୟ । ଦ୍ୱାପର ଯୁଗର ସେହି ଶ୍ରେଷ୍ଠ ପୁରୁଷ ଦୁଷ୍ଟ ଦଳନକରି ଭୂଲବଶତଃ ଜରାଶବର ଶରରେ ଦେହ ତ୍ୟାଗକରିବେ । ତାଙ୍କର ଅପୋଡ଼ାପିଣ୍ଡ ଜମ୍ବୁଦ୍ୱୀପର ପଶ୍ଚିମ ସାଗରରୁ ଭସି ଭସି ଆସି ପୂର୍ବସାଗରରେ ପହଞ୍ଚିବ । ତାହାକୁ ନେଇ ବସୁଶବର ଦେବତା ଜ୍ଞାନକରି ପୂଜା କରୁଥିବ । ସେହି ଦେବତା ଏବଂ ପୂର୍ବରୁ ଶବରମାନେ ପୂଜା କରୁଥିବା ଦେବତାମିଶି ଏକହୋଇ ଆପଣ ଆରାଧିତ ହେବେ । ସେହି ଦାରୁ ଦେବତାଙ୍କୁ ଇନ୍ଦ୍ରଦ୍ୟୁମ୍ନ ମହାରାଜା ବିଷ୍ଣୁଭାବେ ଗ୍ରହଣକରି ପୂଜା କରିବାକୁ ଆସନ୍ତେ ସେ ଶୂନ୍ୟ ହୋଇଯିବେ ।

ଶୂନ୍ୟ ପୁରୁଷଙ୍କ ଆରାଧନା ପାଇଁ ବୈଦିକ ମତରେ ଇନ୍ଦ୍ରଦ୍ୟୁମ୍ନ ମହାରାଜା ଯଜ୍ଞ କରିବେ । ଯଜ୍ଞ କାଳପରେ ଦାରୁ ରୋହିଣୀ କୁଣ୍ଡରେ ଦେଖାଯିବ । ବିଶ୍ୱକର୍ମା ଆସି ଦେବମୂର୍ତ୍ତି ଗଠନ କରିବେ ।

ହସିଲେ ମହାପ୍ରଭୁ । ଗାଢ଼ କଳାରଙ୍ଗର ମୁହଁକୁ ତାଙ୍କର ସେ ହସ ଖୁବ୍ ସୁନ୍ଦର ଦିଶିଲା । ସେ ହସି ହସି କହିଲେ, ଶାରଳେ ! ତୁମେ ଯାହା କହୁଛ ସେହି କଥାକୁ ଆଉ ଟିକିଏ ଭିନ୍ନ ଭାବରେ ଲେଖିବାକୁ ନିର୍ଦ୍ଦେଶ ଦେବ । ସେ ନିର୍ଦ୍ଦେଶରେ ଓଡ଼ିଆ ଜାତିର ବହୁ ବିଭବ ଯେପରି ଫୁଟି ଉଠେ, ତାହା ଲକ୍ଷ୍ୟ କରିବ । ତୁମକୁ ମନେ ରଖିବାକୁ ହେବ ତୁମେ ମହିଷାମର୍ଦ୍ଦିନୀ ଦୁର୍ଗା ହେଲେ ମଧ୍ୟ କଳିଙ୍ଗର ସରସ୍ୱତୀ । ଗତ—ଭବିଷ୍ୟତ—ବର୍ତ୍ତମାନ ସବୁ ତୁମର ସ୍ମରଣ ହେବ । ଗୋଟାଏ ବଳିଷ୍ଠ ଦେଶ ଓ ଜାତିର ବାକ୍‌ଦେବୀ ହୋଇ ତୁମେ ସେ ଦେଶ ଜାତି ବିଷୟରେ ଏକ ଅପୂର୍ବ ଗାଥା ରଚନା କରାଇବ ଭକ୍ତ ସିଦ୍ଧେଶ୍ୱର ଦ୍ୱାରା ।

ହଁ ପ୍ରଭୁ ! ସମସ୍ତ ଲେଖା ସରିଲାପରେ ସିଦ୍ଧେଶ୍ୱର ତା ଲିଖିତ ମହାଭାରତ ଧରି ଆପଣଙ୍କ ପାଖକୁ ଆସିବ । କୌଣସି ତ୍ରୁଟି ଥିଲେ ତାହା

ସେ ସଂଶୋଧନ କରିଦେବ । ଆପଣ ଲୀଳାମୟ । ଆପଣଙ୍କ ଲୀଳାର ଅନ୍ତ ନାହିଁ । ଆପଣଙ୍କର ସେହି ଆଦିମ ଅଧିବାସୀମାନେ ଆପଣଙ୍କୁ ଉପାସନା କରି ଅତି ସୁଖରେ ଜୀବନ ଯାପନ କରୁଥିଲାବେଳେ, ତାହା ବୌଦ୍ଧମାନଙ୍କ ଆଖିରେ ପଡିବ । ସେମାନେ ଆପଣଙ୍କ ମହିମାର ଚମତ୍କାରିତା ଉପଲବ୍ଧି କରି, ତାଙ୍କ ଧର୍ମର ଶ୍ରେଷ୍ଠ ଦେବତା ରୂପେ ଆପଣଙ୍କୁ ବାଛିପିତ କରିବେ । ସେତେବେଳେ ଆପଣଙ୍କୁ ଜ୍ଞାନାସନ କୁହାଯାଉଥିବ । ପୂର୍ବେ ଆପଣଙ୍କୁ ଆରାଧନା କରି କାଳିଙ୍ଗମାନେ ଏଭଳି ଶକ୍ତିବାନ ଓ ସାହସୀ ହୋଇଥିଲେ, ଯାହାକି ମହାଭାରତ ଯୁଦ୍ଧରେ କୁରୁକ୍ଷେତ୍ରର ସମର ପ୍ରାଙ୍ଗଣରେ କାଳିଙ୍ଗ-ମାନେ ଗୋଟିଏ ଦିନ ଯୁଦ୍ଧକରି ମହାବୀର ଭୀମଙ୍କୁ ଅସ୍ତବ୍ୟସ୍ତ କରିଦେଇଥିଲେ । ଆପଣଙ୍କ ବଳରେ ବଳୀୟାନ କଳିଙ୍ଗର ନିଷାଦରାଜ ସୁତାୟୁ ଓ ତାଙ୍କ ପୁତ୍ର ଶତ୍ରୁଦେବ, ଭାନୁମାନ, କେତୁମାନ ଯେଉଁ ଭୟଙ୍କର ଯୁଦ୍ଧ କରିଥିଲେ ତାର କାହାଣୀ ଆଭିସ ମହାମତି ବ୍ୟାସ ତାଙ୍କ ରଚିତ ମହାଭାରତର ଭୀଷ୍ମ ପର୍ବରେ ଲେଖିଛନ୍ତି । ସେତେବେଳେ ଆପଣଙ୍କ କଳାରୁ ଉତ୍ପନ୍ନ ଶ୍ରୀକୃଷ୍ଣ ଯଦି ପାଣ୍ଡବଙ୍କ ସପକ୍ଷରେ ନ ଥାନ୍ତେ, ତେବେ ଅପରାଜେୟ କଳିଙ୍ଗ ବୀରଙ୍କୁ ପରାଜିତ କରିବା ସମ୍ଭବପର ହୋଇ ନ ଥାନ୍ତା ।

ହେ ଶୂନ୍ୟ ପୁରୁଷ ବିଶ୍ୱର ପିତା ! କୋଟି କୋଟି ବିଶ୍ୱ ସୃଷ୍ଟି କରି ଆପଣ କଳିଙ୍ଗର ମହୋଦଧି କୂଳରେ ଅବସ୍ଥାନ କରିଛନ୍ତି । ହିଂସାର ମୂଳୋଚ୍ଛେଦ ଟାଣି ଶାନ୍ତି ପାଇଁ ଯେତେବେଳେ ଆପଣ ଅବତାର ପୁରୁଷ ବୁଦ୍ଧଙ୍କୁ ପଠାଇଲେ, ସେତେବେଳେ ସେହି ଗୌତମ ବୁଦ୍ଧ କହିଲେ, ବିଶ୍ୱର ନାଭିମଣ୍ଡଳ କଳିଙ୍ଗରେ ଅଛି ଓ ସେହି ନାଭିକୁ କେହି ଅତିକ୍ରମ କରି ପାରନ୍ତି ନାହିଁ । ତେଣୁ ଚଣ୍ଡାଶୋକ ଧାଇଁ ଆସିଥିଲେ ଆପଣଙ୍କୁ ମଗଧ ନେଇ ଯିବାକୁ । ସେତେବେଳେ ସେହି ଯୁଦ୍ଧରେ ଲକ୍ଷେ କାଳିଙ୍ଗ ମରିଥିଲେ ଓ ଦେଢ଼ଲକ୍ଷ ବନ୍ଦୀ ହୋଇଥିଲେ । କେତେ ଯେ ଦେଶ ଛାଡ଼ି ଅନ୍ୟ ଆଡ଼େ ପଳାଇଲେ ତାର ହିସାବ କେହି ରଖିନାହିଁ । ବୌଦ୍ଧମାନେ ଆପଣଙ୍କୁ ତାଙ୍କର ଶ୍ରେଷ୍ଠ ଦେବତା ଭାବେ ଉପାସନା କରୁଥିବାରୁ ଆପଣ ସେହି ଧର୍ମର ଅଭିବୃଦ୍ଧି ପାଇଁ ଅପରାଜେୟ କଳିଙ୍ଗକୁ ଅଶୋକଙ୍କ ଦ୍ୱାରା ଜୟ କରାଇଲେ । ମାତ୍ର ସେହିଠାରୁ ଅଶୋକ ପରାଜିତ ହୋଇ ସେତେବେଳକାର କାଳିଙ୍ଗର ଧର୍ମ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ହିଂସା ତ୍ୟାଗକଲେ । ଆପଣ କେତେଦିନ

ମଗଧରେ ରହି ଉପାସିତ ହେଲେ । ମାତ୍ର ମଗଧ ଆପଣଙ୍କୁ ଭଲ ଲାଗିଲା ନାହିଁ । ତେଣୁ କଳିଙ୍ଗର ପ୍ରତାପୀ ରାଜା ଖାରବେଳଙ୍କୁ ସ୍ୱପ୍ନାଦେଶ କରି ଆପଣ ମଗଧ ଆକ୍ରମଣ କରାଇଲେ । ସେତେବେଳକାର ମଗଧରାଜ ବୃହସ୍ପତିମିତ୍ରଙ୍କୁ ପରାସ୍ତ କରି କଳିଙ୍ଗର 'ଜିନାସନ' ତଥା ଆପଣଙ୍କୁ ସେ କଳିଙ୍ଗ ଫେରାଇ ଆଣିଲେ । ସେହିକାଳରେ ଖାରବେଳ ଜୈନ ଥିବାରୁ ଆପଣ ତାଙ୍କର ଉପାସ୍ୟ ହେଲେ ।

କଳିଙ୍ଗମାନେ ସର୍ବଦା ଆପଣଙ୍କୁ ଆରାଧନା କରନ୍ତି । ଆପଣ କଳିଙ୍ଗ ଜାତି ଓ ଧର୍ମର ମୁଖ୍ୟ ଦେବତା । ଯେତେବେଳେ କଳିଙ୍ଗମାନେ ଆପଣଙ୍କୁ ଭୁଲିଛନ୍ତି ସେତେବେଳେ ସେମାନଙ୍କର ସମସ୍ତ କିଛି ଅପସରି ଯାଇଛି । ଆପଣଙ୍କର ଆଶ୍ରିତ ଲୋକର ସମସ୍ତ ଅରିଷ୍ଟ ଧ୍ୱଂସ ହୁଏ । ଆପଣ ରାଜାଧିରାଜ ଏହା ଅନୁଭବ କରି ଗଙ୍ଗବଂଶୀ ଚୋଡ଼ଗଙ୍ଗଙ୍କ ପୂର୍ବରୁ ବିରାଟ ମନ୍ଦିର ନିର୍ମାଣ କରାଯାଇଥିଲା ଓ ଚୋଡ଼ଗଙ୍ଗ ଆପଣଙ୍କୁ ତା' ମଧ୍ୟରେ ପ୍ରତିଷ୍ଠା କରି ଉପାସନା କଲେ । ତାଙ୍କର ବଂଶର ଅନଙ୍ଗଭୀମ କହିଲେ, ମୁଁ ଏ ଦେଶର ରାଜା ନୁହେଁ ରାଜା ହେଉଛନ୍ତି ମହାପ୍ରଭୁ ଜଗନ୍ନାଥ—ମୁଁ ତାଙ୍କର ରାଉତ ।

ହେ ମହାପ୍ରଭୁ, ଆପଣଙ୍କୁ ଭରସା କରି କପିଳେଶ୍ୱର ସମଗ୍ର ଦାକ୍ଷିଣାତ୍ୟ ଓ ଗୁଜୁରାଟରୁ ଅଧେ ଜୟ କରି ଗଲାଣି । ତା' ନ ହେଲେ ଯାଗେଶ୍ୱରର ପୁତ୍ର କପିଳେଶ୍ୱର କ'ଣ କଳିଙ୍ଗ ଭୂଖଣ୍ଡର ଅଧିପତି ହୋଇ-ଥା'ନ୍ତା । ସେ ତ ଆପଣଙ୍କର ଜୟଗାନ କରି ବିଜୟନଗର, ବାହ୍ମାମନୀ, ଓଡ଼୍ର, ପଡନୁରୁ ଆଦି ଜୟ କରି ଯାଇଛି । ସେ ମଧ୍ୟ ଅଧିକାର କରିଛି କୋଶଳ ଦେଶର ଭ୍ରମରକୁଟ ବା ଅମରକୁଟ ଅଞ୍ଚଳ । ଗଙ୍ଗବଂଶୀ ନରସିଂହଦେବ ଯେତେବେଳେ କୋଣାର୍କ ମନ୍ଦିର ନିର୍ମାଣ କଲେ, ସେହି ମନ୍ଦିରର ଓ ମୁଖଶାଳାର ଗାତ୍ରରେ ଗୋଟିଏ ଗୋଟିଏ ସ୍ଥାନରେ ଆପଣଙ୍କୁ—ଶିବଲିଙ୍ଗଙ୍କୁ ଓ ଦଶଭୁଜା ଦେବୀ—ଦୁର୍ଗାଙ୍କୁ ଖୋଦିତ କରି ସ୍ଥାପିତ କଲେ, ରତ୍ନସିଂହାସନ ଉପରେ ଆରାଧିତ ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ଧର୍ମ ଓ ସଂସ୍କୃତିର ପ୍ରତୀକ । ଆଉ ବଳଭଦ୍ର ହେଉଛନ୍ତି ଶୈବ ଧର୍ମ ଓ ସଂସ୍କୃତିର ପ୍ରତିଭୂ ଓ ଦେବୀ ସୁଭଦ୍ରା ଶାକ୍ତ ଧର୍ମ ଓ ସଂସ୍କୃତିର ଉପାସ୍ୟା । ଏହି ତିନି ଧର୍ମ ତଥା ସଂସ୍କୃତିର ପ୍ରତୀକ ଓଡ଼ିଆଙ୍କର ମୁଖ୍ୟ ଉପାସ୍ୟ ଓ ଉପାସ୍ୟା । ସେ ହିଁ ଜାତିର ବିଭବ ଓ ଗତି ମୁକ୍ତିଦାତା ।

ଆପଣ କଳିଙ୍ଗର ମହୋଦଧି କୂଳରେ ଉପସ୍ଥିତ ହେଉଥିବା ବେଳେ ମାଳ ଅଞ୍ଚଳର ଲୋକେ ଗୁହାରି କଲେ, ମହାପ୍ରଭୁ ! ଆପଣ କ'ଣ ଏହି ଉପକୂଳ ଅଞ୍ଚଳରେ ଆବଧିତ ହେବେ, ମାଳ ଅଞ୍ଚଳକୁ ବିଜେ କରିବେ ନାହିଁ ? ଆମେ ମାଳ ଅଞ୍ଚଳବାସୀ କ'ଣ ଆପଣଙ୍କ ଦର୍ଶନ ପାଇଁ ଧାଇଁ ଥିବୁ ଉପକୂଳ ଅଞ୍ଚଳକୁ ? ସେମାନଙ୍କ କଥା ଶୁଣି ଆପଣ ହସିଥିଲେ । ସେମାନଙ୍କ ଭକ୍ତି ଓ ଆତ୍ମୀୟତାରେ ସନ୍ତୁଷ୍ଟ ହୋଇ କହିଥିଲେ, ହେଉ ମୁଁ ମାଳ ଅଞ୍ଚଳକୁ ଯିବି । ମାତ୍ର କେତେଦିନ ମୋତେ ପୂଜା କରି ପାରିବ ? ତାପରେ ସମୁଦ୍ର ମୁହାଣ ଭାଙ୍ଗି ପାଣି ମାଡ଼ି ଆସିଲା । ଫଳରେ ଆପଣଙ୍କୁ ନାଆରେ ବିଜେ କରାଇ ମାଳ ଅଞ୍ଚଳ ନେଇଗଲେ । କିଛିବର୍ଷ ସେହି ମାଳ ଅଞ୍ଚଳରେ ବିଜେ ହୋଇ ପୂଜା ପାଇଲେ । ତାପରେ ମାଡ଼ି ଆସିଲେ ଯବନମାନେ । ତାଙ୍କ ଭୟରେ ଆପଣଙ୍କୁ ଲୋକମାନେ ପାତାଳୀ କରି ତା ଉପରେ ବଟ ବୃକ୍ଷଟିଏ ଲଗାଇଲେ । ସେହି ଅବସ୍ଥାରେ ପୁଣି କିଛି ବର୍ଷ ଚାଲିଗଲା । ମହାରାଜ ଯଯାତି ହେଲେ ଏ ଓଡ଼ିଶା ମୁଲକର ରାଜା । ତାଙ୍କୁ ଆପଣ ସ୍ୱପ୍ନରେ ଆଦେଶଦେଲେ, ମୁଁ ହେଉଛି ଏ ଦେଶର ଏ ଜାତିର ମହାପ୍ରଭୁ । ଅଥଚ ମୁଁ ପାତାଳୀ ହୋଇ ରହିଛି ସ୍ୱଇଚ୍ଛାରେ । ଯେଉଁମାନେ ଧାରଣା କରୁଥିଲେ ମାଳ ଅଞ୍ଚଳରେ ମୁଁ ବିଜେ କଲେ ସେମାନେ ମୋତେ ରକ୍ଷା କରିବେ, ସେମାନଙ୍କର ସେହି ଦମ୍ଭ ଭାଙ୍ଗି ଯାଇଛି । ମୁଁ ଜାଣିଛି ଯବନମାନେ ମୋର କିଛି କ୍ଷତି କରିବେ ନାହିଁ ଅଥଚ ଲୋକମାନେ ନିଶ୍ଚିନ୍ତ ହୋଇ ପାରିଲେ ନାହିଁ । ତେଣୁ ପାତାଳୀ କରି ଦେଲେ । ବର୍ତ୍ତମାନ ତୁ ମୋତେ ମାଟି ତଳୁ ନେଇ ମହୋଦଧିକୂଳରେ ପ୍ରତିଷ୍ଠା କର ।

ସନ୍ନ୍ୟାସ ବ୍ରାହ୍ମଣମାନଙ୍କୁ ଧରି ଯଯାତି ମାଳ ଅଞ୍ଚଳରେ ପହଞ୍ଚିଲେ । ସେଠାକାର ଲୋକମାନଙ୍କୁ ପଚାରିବାରୁ ଲୋକମାନେ କହିଲେ, ଆମ୍ଭେମାନେ ଜାଣି ନାହୁଁ, ଆମ୍ଭ ଉପର ପୁରୁଷ କହିଯାଇଛନ୍ତି; ସମୁଦ୍ର ମୁହାଣ ଭାଙ୍ଗି ପାଣି ମାଡ଼ି ଆସିବାରୁ ପରମେଶ୍ୱର ଏଠାକୁ ଚାଲିଆସିଲେ । ମାତ୍ର ଯବନ ଭୟ ହେଲାରୁ ତାଙ୍କୁ ପାତାଳୀ କରି ଦେଇ ତା ଉପରେ ବଟବୃକ୍ଷଟିଏ ଲଗାଇ ଥିଲେ । ସେହି ବଟବୃକ୍ଷକୁ ଆମ୍ଭେ ପୂଜା କରି ଆସୁଅଛୁ । ସେହି ଢିଅଁ ବରକୁ କାଟି ମାଟି ଖୋଳିଲାରୁ ଦେଖାଗଲା ଢିଅଁ ନାହାନ୍ତି—ବ୍ରହ୍ମଅଛନ୍ତି ।

ରାଜା ସେହି ବ୍ରହ୍ମଙ୍କୁ ନେଇ ମହୋଦଧି କୂଳକୁ ଆସିଲେ । ଏହି କ୍ଷେତ୍ରରେ ସେହି ବ୍ରହ୍ମ ଅସମ୍ଭବ ଭାରି ହେବାରୁ ଏହି ଠାରେ ତାଙ୍କୁ ରଖାଯାଇ ମୂର୍ତ୍ତି ଗଠନ ପାଇଁ ରାଜା ଚେଷ୍ଟାକଲେ । କେଉଁ କାଠରେ ମୂର୍ତ୍ତି ଗଢ଼ାଯିବ ସେଥିପାଇଁ ସ୍ମୃତି ଶାସ୍ତ୍ରମାନ ବାହାରିଲା । ଶାସ୍ତ୍ରରେ ବହୁ ଦାରୁରେ ମୂର୍ତ୍ତି ଗଠନର ନିର୍ଦ୍ଦେଶ ରହିଛି । ତେଣୁ ଶେଷରେ ସ୍ଥିର ହେଲା ଲିମ୍ବ କାଠରେ ଆପଣଙ୍କୁ ନିର୍ମିତ କରିବେ । ଆଦିବାସୀ ଶବର ଜାତିର ଲୋକମାନେ ମହୁଲ କାଠ ବଦଳରେ ଆପଣ ଗଠିତ ହେଲେ ଲିମ୍ବ ଦାରୁରେ । ସେହି ଦିନ ଠାରୁ ଲିମ୍ବ କାଠରେ ଓଡ଼ିଆମାନେ ପୋଷାଇ ବାସ କରନ୍ତି ନାହିଁ ।

ଯେଉଁ ଅଞ୍ଚଳରେ ନୀଳ ଆକାଶ ଆଉ ନୀଳ ସମୁଦ୍ର ଏକାଠି ହୋଇଛି ଏବଂ ଆପଣ ସେଠି ଅଚଳ ହୋଇ ରହିଗଲେ ତାହା ହେଲା ନୀଳାଚଳ । ସେହି ନୀଳାଚଳରେ ଆପଣଙ୍କ ଲୀଳା ଲାଗି ଥିବାରୁ କେତେକ ଲୋକ ମଧ୍ୟ ନୀଳାଚଳ କହନ୍ତି । ସେହି ବେଦ ପୂର୍ବର ଜାତିଙ୍କ ଦ୍ୱାରା ଆପଣ ପୂର୍ବେ ଆରାଧିତ ହେଉଥିଲେ । ସେମାନଙ୍କର ବଂଶଧର ଆପଣଙ୍କ ପାଖରେ 'ଦଇତା' ସେବକ ନାମରେ ପରିଚିତ । ଆଦିବାସୀ ଦ୍ରାବିଡ଼ମାନଙ୍କ ଠାରୁ ଆରମ୍ଭ କରି ସେହି ବୈଦିକ ଆର୍ଯ୍ୟମାନେ ଆପଣଙ୍କୁ ଆରାଧନା କରୁଛନ୍ତି । ବେଦର ଭାଷ୍ୟକାର ସାୟଣ ଯେତେବେଳେ ବେଦର ଭାଷ୍ୟ ରଚନା କଲେ ସେତେବେଳେ ଋକ୍‌ବେଦରେ ଥିବା ଗୋଟିଏ ମନ୍ତ୍ରକୁ ଆପଣଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଛି ବୋଲି ଧାରଣାକରି ବାଖ୍ୟା କଲେ । ଗଙ୍ଗରାଜା ଚୋଳଗଙ୍ଗ ଦକ୍ଷିଣ ଆଡ଼ୁ ଆସିଲେ ଆପଣଙ୍କ ଉପରେ ଭରସା କରି । ସେତେବେଳେ କର୍ଣ୍ଣ କେଶରୀ ଆପାରଗ ହୋଇ ପଡ଼ିଥିଲେ । ଥରେ ବାସୁଦେବ ରଥଙ୍କୁ ସମ୍ପତ୍ତି ଦାନ କରି ପୁଣିସେହି ସମ୍ପତ୍ତିକୁ ଅନ୍ୟଙ୍କୁ ଦାନଦେବା ହେତୁ ବାସୁଦେବ ରଥ ଲିଙ୍ଗରାଜଙ୍କୁ ଜଣାଇଲେ । ତେଣୁ ଲିଙ୍ଗରାଜ ଆଦେଶ କଲେ ଦକ୍ଷିଣରୁ ତୁ ଚୋଳଗଙ୍ଗଙ୍କୁ ଡାକି ଆଣିବୁ । ସେହି ଚୋଳଗଙ୍ଗ ଆପଣଙ୍କ କଥା ଆଗରୁ ଜାଣିଥିଲେ । ସେ ଗୁଡ଼ାର କଟକ ଆଡ଼ୁ ଆସି ଆପଣଙ୍କୁ ମନାସ କଲେ; ହେ କଳିଙ୍ଗର ମହାପ୍ରଭୁ ଜଗନ୍ନାଥ ! ତୁ ଯଦି ତୋ ରାଜ୍ୟ ପାଇଁ ମୋ ମୁଣ୍ଡରେ ଶାଢ଼ୀ ବାନ୍ଧିବୁ ତେବେ ତୋର ପୂଜା ଚିରଦିନ ମୁଁ କରିବି । ତା ଡାକ ଶୁଣି କେଶରୀ ବଂଶର ପତନ ଆଣି ଆପଣ ଚୋଳକୁ କଳିଙ୍ଗର ରାଜା କଲେ । ନିର୍ମିତ ହୋଇଥିବା ଏହି ନୂତନ ବଡ଼ ଦେଉଳରେ ସେ ଆପଣଙ୍କୁ

ପ୍ରତିଷ୍ଠାକଲେ । ତାଙ୍କର ବଂଶ ରାଜାମାନେ ପ୍ରଚ୍ଛର କାଳେ ଏ ଦେଶର ରାଜା ହେଉଛନ୍ତି ଶ୍ରୀଜଗନ୍ନାଥ ଏବଂ ସେମାନେ ତାଙ୍କର ରାଉତ ।

ଶାରଳେ, ରାତି ସର ସର ଆସୁଛି । ପ୍ରଭାତ ହେବା ପୂର୍ବରୁ ଦେବତାମାନେ ବିଦାୟ ନେବେ । ତୁମେ ଯେଉଁ ବିରାଟ ଇତିହାସ କହିଲ ତାହା ଯଦି ସିଦ୍ଧେଶ୍ୱର ଦ୍ୱାରା ଲେଖାଅ ତେବେ ସରଳପ୍ରାଣ ଓଡ଼ିଆମାନେ ତାହା ବୁଝିବାକୁ ସମର୍ଥ ହେବେ ନାହିଁ । ତେଣୁ ତୁମେ ସିଦ୍ଧେଶ୍ୱର ଦ୍ୱାରା ଏଭଳି ରଚନା କରାଇବ ଯାହାକି ପଣ୍ଡିତଙ୍କଠାରୁ ମୂର୍ଖ ପର୍ଯ୍ୟନ୍ତ ସମସ୍ତେ ବୁଝି ପାରିବେ । ସିଦ୍ଧେଶ୍ୱର ତୁମର ଭକ୍ତ, ତୁମର ସନ୍ତାନ ଯୋଗୁଁ ତୁମର ଦାସ 'ଶାରଳାଦାସ' ନାମରେ ନାମିତ ହେବ । ସେ ହେବ ଓଡ଼ିଆ ଭାଷାର ଆଦିକବି । ହଜାର ହଜାର ବର୍ଷ ତଳୁ ଏ ଜାତିର ଭାଷା ସୃଷ୍ଟି ହୋଇଥିଲେ ମଧ୍ୟ ସେହି ଭାଷାରେ ଗ୍ରନ୍ଥ ରଚନା କରାଯାଇ ନଥିଲା । ଜାତିର ପ୍ରଥମ ଗ୍ରନ୍ଥ ତୁମର ଦାସ 'ଶାରଳା ଦାସ' ଲେଖି ଯୁଗ ଯୁଗ ପାଇଁ ଅମର ରହିବ ।

ସେତେବେଳକୁ ଆକାଶରୁ ତାରାମାନେ ହଜି ହଜି ଆସୁଥା'ନ୍ତି । ପୂର୍ବ ଆକାଶ ଆଉ ଅନ୍ଧକାର ଅପସରି ଯାଉଥାଏ । ଶ୍ରୀମନ୍ଦିର ଭିତରେ ବ୍ରହ୍ମାଙ୍କ ସହିତ ଇନ୍ଦ୍ରାଦି ଦେବତା ଯୋଡ଼ହସ୍ତରେ ଛିଡ଼ା ହୋଇଥା'ନ୍ତି ତାଙ୍କପ୍ରତି ମହାପ୍ରଭୁ କେଉଁ ଆଦେଶ ଦେବେ ତାହା ଶୁଣିବାକୁ । ମହାପ୍ରଭୁ ହେଉଛନ୍ତି ସଚରାଚର ବିଶ୍ୱର ମାଲିକ । ଯେଉଁ ଦେବତାଙ୍କୁ ଯାହା ଆଦେଶ ସେ ଦେବେ ତାହାର ଅନୁସାରେ ସେ ବ୍ରହ୍ମାଣ୍ଡକୁ ପାଳନ କରିବେ । ସେଥିପାଇଁ ପ୍ରତିଦିନ ପ୍ରଭାତ ପୂର୍ବରୁ ସେମାନେ ଶ୍ରୀମନ୍ଦିର ଆସିଥା'ନ୍ତି ।

ଯାଅ ଦେବୀ ଶାରଳେ, ତୁମର ସେହି 'ଜଙ୍ଘେରପୁର'କୁ । ସିଦ୍ଧେଶ୍ୱର ତୁମକୁ ଅପେକ୍ଷା କରିଥିବ ବୃଦ୍ଧ ମାତାଙ୍କ ପାରୁଶେ ମହୋଦଧିରେ ଭେଟିଥିବା ସେହି ଚନ୍ଦ୍ରଭାଗା କୂଳର କଳ୍ପବଟ ମୂଳରେ । ସେ ଲେଖନ-ପତ୍ର ଧରି କାନ ପାତିଥିବ ତୁମେ ଯାହା କହିବ ତାହା ଲେଖିବାକୁ । ଆଉ ବେଶୀ ସମୟ ଏଠାରେ ରହିଲେ ଆଜ ଆଉ କିଛି ସେ ଲେଖିପାରିବ ନାହିଁ ।

ସେତେବେଳକୁ ଶ୍ରୀମନ୍ଦିରର ସିଂହଦ୍ୱାରରେ ସେବକମାନେ ପହଞ୍ଚି-ଯାଇଥିଲେ । ଶାରଳା ମହାପ୍ରଭୁଙ୍କଠାରୁ ମେଲାଣି ନେଇ ଚାଲିଗଲା ପରେ ତେତିଶି କୋଟି ଦେବତା ମେଲାଣି ନେଇ ଚାଲିଯିବାକୁ ତର ତର ହେଲେ । ମାନବ ସେବକମାନେ ଆସିବା ପୂର୍ବରୁ ସେମାନେ ସେଠାରୁ ଚାଲିଯିବା ଦରକାର ।

ସିଂହଦ୍ୱାର ଡେଇଁ ଭିତରକୁ ମହାପାତ୍ର, ପାଳିଆମେକାପ, ପ୍ରତିହାରୀ, ଅଖଣ୍ଡମେକାପ, ମୁଦୁଲି ଆଗେଇ ଚାଲିଥା'ନ୍ତି ଶ୍ରୀମନ୍ଦିର ଆଡ଼କୁ । ଗତ ରାତିରେ ତଳିଚ ମହାପାତ୍ର ଜୟ-ବିଜୟ ଦ୍ୱାରରେ ମାଟିର ଯେଉଁ ମୁଦ ଦେଇ ଯାଇଥିଲେ ତାହାକୁ ଭିତରଚ୍ଛୁ ମହାପାତ୍ର ପରୀକ୍ଷା କରି, 'ଠିକ୍ ଅଛି' ବୋଲି କହିଲା ପରେ ଦ୍ୱାର ଖୋଲାହେବ । ବଡ଼ଛତା ମଠର ବାଦ୍ୟକାରମାନେ ବାଜା ବଜାଉଥା'ନ୍ତି ତାଙ୍କ ଆଗେ ଆଗେ ।

ଜଙ୍ଗେରପୁରରେ ବ୍ରହ୍ମମୁହୂର୍ତ୍ତ ଆସନ୍ନ । ନିଦରୁ ଉଠି ସିଦ୍ଧେଶ୍ୱର ଶାରଳାଙ୍କୁ ସ୍ମରଣ କରୁଥା'ନ୍ତି ଯୋଗାସନରେ ବସି । ହଠାତ୍ ସେ ଦେଖିଲେ କଳାଜୀମୂତ କାନ୍ତିଧାରୀ ଜଣେ ପୁରୁଷ ତାଙ୍କ ଆଗରେ ଉଭା ହୋଇ କହୁଛନ୍ତି, "ଶାରଳାଦାସ ! ତୁମେ ନିର୍ଭୟ ଚିତ୍ତରେ ତୁମ ଇଷ୍ଟ ଶାରଳାଙ୍କୁ ସ୍ମରଣ କରି ଓଡ଼ିଆ ଜାତିର ମହାନ୍‌ଗାଥା ମହାଭାରତ ରଚନା କରି ଚାଲ ।"

ଶାରଳାଦାସ ଉତ୍ତରରେ କହିଲେ, "ହେ ମହାପ୍ରଭୁ ! ମୋର ଇଷ୍ଟ କେବଳ କ'ଣ ଶାରଳା, ଆଉ ତୁମେ ନୁହଁ ?"

ଏତିକବେଳେ ଶୁଭିଲା ସେହି ଅତି ପରିଚିତ କଣ୍ଠସ୍ୱର—ଶାରଳାଦାସ ତାଳପତ୍ର ଖେଦା ଧରି ଲେଖନୀ ମୁନରେ ଗାରେଇଚାଲିଲେ—

ଜୟ ଜୟ ଜଗନ୍ନାଥ ଜଗତ କାରଣ ।
ଜୟ ନୀଳଗିରିବାସୀ ଭକତ ଜୀବନ ॥

କବିଙ୍କ ମନ ଆକାଶରେ ମହାପ୍ରଭୁ ଜଗନ୍ନାଥ ବିଜେ କରିଥା'ନ୍ତି । ସେ ଶୁଣୁଥା'ନ୍ତି ସେହି ବୀଣାଜଣା ଓଡ଼ିଶାର ବାଗ୍‌ଦେବୀ ଶାରଳାଙ୍କ କଣ୍ଠସ୍ୱର । ସେ ଯାହା କହୁଥା'ନ୍ତି ତାହା ଲେଖନୀ ମୁନରେ ଲେଖିଯାଇଥା'ନ୍ତି । ତାଙ୍କ

ବନ୍ଦନା ଲେଖୁ ଲେଖୁ ସେ ଭକ୍ତିବିଭୋର ହୋଇପଡ଼ିଲେ । ତାଙ୍କ ଆଖିରେ ଲୁହ ଭରିଗଲା । ସେ ସେହି ଲୁହଭରା ଆଖିରେ କମ୍ପିତ ସ୍ୱରରେ ଗାଇଲେ—

ମୁଁ ତୁମ୍ଭ ପଦ କିଙ୍କର ହେ ନୀଳାଦ୍ରୀନାଥ ।
ତୁମ୍ଭ ଛଡ଼ା ଆଶ୍ରା କେହି ନାହିଁ ମୁଁ ଅର୍ପିତ ॥
ଶାରଳାଦାସ ମୋ ନାମ ତବ ଭାବ ଭାବି ।
ଭାରତ ରଚନା କର ବୋଲୁଅଛୁ କବି ॥

—:O:—



# ଶ୍ରୀଜଗନ୍ନାଥ ଓ
# ମହାକବି ଶାରଳା ଦାସ

ଲୋକ ଗହଳରେ ବଡ଼ଦାଣ୍ଡ ଫାଟିପଡ଼ୁଛି । ଦଳ ଦଳ ହୋଇ ଲୋକେ ଛୁଟୁଥା'ନ୍ତି ଶ୍ରୀମନ୍ଦିର ଆଡ଼କୁ । କେବଳ ପୁରୁଷୋତ୍ତମରେ ବାସ କରୁଥିବା ଲୋକେ ନୁହଁନ୍ତି, ତା'ର ଆଖପାଖ ଅଞ୍ଚଳର ଲୋକେ ଧାଇଁ-ଆସୁଥା'ନ୍ତି । ପିଲାଙ୍କଠାରୁ ବୁଢ଼ା-ବୁଢ଼ୀ ପର୍ଯ୍ୟନ୍ତ ଅକଳନ୍ତ ଲୋକ ଚାଲିଥା'ନ୍ତି ଗାଁ'-ଗଣ୍ଡା ଶୂନ୍ୟକରି । ସତେ ଯେପରି ଗୋଟାଏ ଯୋଗ ପଡ଼ୁଛି—ଏହି ସମୟକୁ ଯେ ହରେଇବସିବ, ତା'ର ସାରା ଜୀବନ ଯେପରି ବ୍ୟର୍ଥ ହୋଇଯିବ । ତେଣୁ ପିଲାଠାରୁ ବୁଢା ପର୍ଯ୍ୟନ୍ତ, କି ସ୍ତ୍ରୀ କି ପୁରୁଷ ସମସ୍ତେ ଧାଇଁ ଚାଲିଛନ୍ତି ।

ଶ୍ରୀମନ୍ଦିର ଆଡ଼ୁ ଯଦି କୌଣସି ଶବ୍ଦ ଶୁଭୁଥିଲା, ତେବେ ସମସ୍ତେ ବ୍ୟସ୍ତ ହୋଇପଡ଼ୁଥିଲେ । ସେମାନଙ୍କର ଚାଲିବାର ଗତିକୁ ଆହୁରି ବଢ଼ାଇ ଦେଉଥିଲେ । କେହି ରହସ୍ୟରେ ଯଦି କହୁଥିଲା, 'ଆରେ···ଆରମ୍ଭ ହୋଇଗଲାଣି ତ', ତେବେ ଲୋକମାନଙ୍କ ମନରେ ବ୍ୟଗ୍ରତା ବଢ଼ି ଯାଉଥିଲା । ଟୋକାମାନେ ଏଭଳି ବେଗରେ ଧାଉଁଥିଲେ, ତାଙ୍କ ଆଗରେ ଥିବା ବୁଢ଼ା-ବୁଢ଼ୀ ବା ପିଲାମାନେ ତାଙ୍କୁ ବାଟ ଛାଡ଼ିଦେବାକୁ ରାସ୍ତା କଡ଼କୁ ଆଉଜେଇ ହୋଇଯାଉଥିଲେ । ତା' ନ ହେଲେ ଯୁବକଙ୍କ ଧକ୍କାରେ ସେମାନେ କଚାଡ଼ି ହୋଇ ପଡ଼ିବେ । ଯୁବତୀମାନଙ୍କର ଇଚ୍ଛା ହେଉଥିଲା ଯୁବକଙ୍କ ଭଳି ଦ୍ରୁତଗତିରେ ଆଗକୁ ଆଗେଇ ଯିବାକୁ । ମାତ୍ର ଲଜ୍ଜା ତାଙ୍କ ଗୋଡ଼କୁ ପଛକୁ ଟାଣି ଧରିଲା । ଯୁବକମାନଙ୍କୁ ସେଭଳି ଆଗକୁ ଦୌଡ଼ି ଯିବାକୁ ବୁଢ଼ାମାନଙ୍କ ମଧ୍ୟରୁ କେତେକ ବଡ଼ ପାଟିରେ ମନାକଲେ । କିନ୍ତୁ ତାଙ୍କ କଥାକୁ ଶୁଣୁଛି କିଏ ? କେତେକ କ୍ଷମାମୀ ବୃଦ୍ଧ କହିଲେ, ହଇହେ ! ସେମାନେ କ'ଣ ଦୌଡ଼ୁଛନ୍ତି; ତାଙ୍କର ବୟସ ତାଙ୍କୁ ଦଉଡ଼ଉଛି । ଆମେ

ଯେତେବେଳେ ଯୁବକ ଥିଲୁ ସେତ୍ତଭଳି କ'ଣ ଦୌଡ଼ୁ ନ ଥିଲୁ । ବୟସ ଗ୍ଭଲଗଲା ପରେ ଆଉ କ'ଣ ପାରୁଛୁ !

ବଡ଼ଦାଣ୍ଡ ଲୋକାରଣ୍ୟ । ସିଂହଦ୍ୱାରଠାରୁ ଏଭଳି ଭିଡ଼ ହୋଇ-ଆସିଥାଏ ଯେ, ତା' ମଧ୍ୟକୁ ଆଉ ଜଣେ ପଶିବା ସମ୍ଭବ ହେଉ ନ ଥାଏ । ସମସ୍ତେ ଲକ୍ଷ୍ୟ କରଥା'ନ୍ତି ରାଜନବର ଆଡ଼କୁ । ରାଜନବରରୁ ଗଜପତି ମହାରାଜା ଆସିଲା ମାତ୍ରେ ଘୋଷକ ଘୋଷଣା କରିବେ କାର୍ଯ୍ୟସୂଚୀ । ତା'ପରେ ପରୀକ୍ଷା ଆରମ୍ଭ ହୋଇଯିବ । ପ୍ରମାଣିତ ହେବ, ମୁକ୍ତିମଣ୍ଡପର ପଣ୍ଡିତମାନେ ଯାହା କହୁଛନ୍ତି ତାହା ଠିକ୍ ନା ଗାଉଁଲି ଚଷା ଯାହା କହୁଛି ତାହା ଠିକ୍ ! ଯଦି ଗାଉଁଲି ଲୋକଟି ତା' ମତକୁ ପ୍ରତିପାଦିତ କରିପାରିବ ଏବଂ ମହାପ୍ରଭୁ ଜଗନ୍ନାଥ ସେଠାରେ ଉପସ୍ଥିତ ହୋଇ ତାକୁ ଅନୁମୋଦନ କରିବେ । ଦେବତାମାନଙ୍କ ଭାଷା ବଦଳରେ ମଣିଷର ଭାଷା ସାରା ଓଡ଼ିଶାରେ ପ୍ରଚଳିତ ହେବ ।

ଜଣେ ବୁଢ଼ା ବ୍ରାହ୍ମଣ ତାଙ୍କ ମୁଣ୍ଡକୁ ହଲାଇ କହିଲେ, ହଇହେ ! ଏହା କ'ଣ କେବେ ସମ୍ଭବ ହେବ... ? ନିଜେ ଜଗନ୍ନାଥ ଆସି କହିବେ, ଗାଁ-ଗହଳର ଚଷା, ଗଉଡ଼ କହୁଥିବା ଭାଷା ଜାତିର ଭାଷା ହେବ ? ପୁଣି ଜଗନ୍ନାଥ ବଳଭଦ୍ର ଏକ ହୋଇଯିବେ ? ଦେଖିବ ! ଏଗୁଡ଼ାକ ତୁଚ୍ଛା ତାହା ମିଛ । ଶେଷରେ ଆମେ ଯେତେ ପିମ୍ପୁଡ଼ି ଭଳି ଧାଇଁଛୁ ଅଫୁଆ ହୋଇ ଫେରିବୁ । ଯାହା ଯେ କହୁ ନା କାହିଁକି, ବେଦର ଯେ ପରଂବ୍ରହ୍ମ ସେ ବଡ଼ଦାଣ୍ଡକୁ ଆସିବେ କହିବାକୁ—ଏ ଚଷା, ଗଉଡଙ୍କ ଭାଷା ଦେବଭାଷା ହେବ, ଆଉ ସେହି ଭାଷାରେ ପୁରାଣ ଲେଖା ହେଲେ ବ୍ରାହ୍ମଣ ବୈଷ୍ଣବଙ୍କ ସହିତ ଦେବତାମାନେ ବି ଶୁଣିବେ !

ଆହେ କହିବେ କ'ଣ ? ପରା କୁଆଡ଼େ କହି ସାରିଛନ୍ତି । ତାଙ୍କର ଆଦେଶ ମୁତାବକ ରାମାୟଣ, ମହାଭାରତ କୁଆଡ଼େ ଲେଖା ହୋଇସାରିଛି । ଆଉ ଏଣିକି ମହାପ୍ରଭୁଙ୍କ ପୂଜା କାଲିବେଳକୁ ଆଉ ବେଦର ପୁରୁଷ ମନ୍ତ୍ର ପାଠ କରାଯିବ ନାହିଁ ଯେ, ଯେତେବେଳେ ଓଡ଼ିଆ ଭାଷାରେ ପୁରାଣ ଲେଖା ହେବ; ପୁଣି ତାକୁ ଚଷା, ଗଉଡ଼େ ଲେଖିବେ ଆଉ ବେଦର ପରଂବ୍ରହ୍ମ

ପୁରୁଷଙ୍କ ମୁଖରୁ ଜନ୍ମ ହୋଇଥିବା ବ୍ରାହ୍ମଣ ପଢ଼ିବେ, ସେତେବେଳେ ବେଦ ମନ୍ତ୍ରର କିବା ପ୍ରୟୋଜନ ?

ହଁ···, ସେଇଆ ନୁହେଁ ତ ଆଉ କ'ଣ ? ହଇହେ ! ବେଦ ମନ୍ତ୍ର ପଢ଼ା ନ ହେଲେ ଜଗନ୍ନାଥେ ମନ୍ଦିରରେ ରହିବେ ତ ? ଲକ୍ଷ୍ମୀ ଠାକୁରାଣୀ ରନ୍ଧନ ଶାଳାରେ ପଶି ମହାପ୍ରସାଦର ଯୋଗାଡ଼ କରିବେ ତ ? ହେଉ, ଗୁଲ ଦେଖିବା କ'ଣ ହେଉଛି ? ଶୁଦ୍ର ମୂର୍ଖ ସିଦ୍ଧିଆର ମହାଭାରତକୁ ମୁକ୍ତି-ମଣ୍ଡପର ପଣ୍ଡିତେ ଅନୁମୋଦନ କରୁଛନ୍ତି କି ନା ?

ହଠାତ୍ ଘାର-କାହାଳୀ ବାଜିଉଠିଲା । ଘାର-କାହାଳୀ ବାଜିବା ମାନେ ଜଣାପଡ଼ିଲା ଉତ୍କଳର ପ୍ରାତଃ ସ୍ମରଣୀୟ ଗଜପତି ମହାରାଜା କପିଳେନ୍ଦ୍ରଦେବ ବିଜେକଲେ । ତାଙ୍କ ସହିତ ମନ୍ତ୍ରୀ, ସେନାପତି ଓ ଅନ୍ୟାନ୍ୟ ରାଜପରିଷଦ ଉପସ୍ଥିତ ହୋଇଥା'ନ୍ତି । ଶ୍ରୀଜଗନ୍ନାଥଙ୍କର ବାଇଶି-ପାହାଚ ତଳେ, ସିଂହଦ୍ୱାର ଆଗରେ ଏକ କାଠର ମଞ୍ଚ ନିର୍ମାଣ କରାଯାଇଥିଲା । ସେହି ମଞ୍ଚରେ ସମସ୍ତେ ଦେଖିଲା ଭଳି ସ୍ଥାପିତ ହୋଇଥିଲା ଏକ ଉଚ୍ଚ ଆସନ । ସେହି ଆସନରେ ମହାରାଜ ଉପବେଷନ କରିଥିଲେ । ତାଙ୍କ ପାଖକୁ ବସିଥିଲେ କେତେଜଣ ମୁକ୍ତିମଣ୍ଡପର ମୁଖ୍ୟ ପଣ୍ଡିତ ।

ଗଜପତି ମହାରାଜା କପିଳେନ୍ଦ୍ରଦେବ ମଞ୍ଚ ଉପରେ ବିଜେକଲା ପରେ ଥରେ ଚୌଆଡ଼କୁ ଦୃଷ୍ଟିପାତ କଲେ । ତା'ପରେ ସେ ଯାହା କହିଲେ, ଜଣେ ଡାକୁଆ ଉଚ୍ଚ କଣ୍ଠରେ ବିଜ୍ଞାପିତ କଲା– "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ ଉତ୍କଳ ବର୍ଗେଶ୍ୱର ଅଭିରାଏ ଭୁତବୈରବ ଦୁଃସହ ଦୁଃଶାସନ ଅନକରଣେ ରାଉତରାଏ ଅତୁଳବଳ ପରାକ୍ରମ ସଂଗ୍ରାମ ସହସ୍ର ବାହୁ ଧୂମକେତୁ ଶ୍ରୀ ଶ୍ରୀ ଶ୍ରୀ କପିଳେଶ୍ୱର ଦେବ ମହାରାଜା ଘୋଷଣା କରୁଛନ୍ତି, ଓଡ଼ିଆ ଜାତିର ସ୍ୱତନ୍ତ୍ର ଭାଷା ଦେଶରେ ପ୍ରଚଳନ ହେବ । ସେଥିପାଇଁ ପ୍ରଥମେ ସିଦ୍ଧେଶ୍ୱର ଦାସ ଜଙ୍ଘେରପୁରର (ଝଙ୍କଡ଼) ଅଧିଷ୍ଠାତ୍ରୀ ଦେବୀ ଶାରଳାଙ୍କ ଅନୁଗ୍ରହରେ ଶ୍ରୀଜଗନ୍ନାଥଙ୍କ ଅନୁମୋଦନରେ ଓଡ଼ିଆରେ ମହାଭାରତ ରଚନା କରିଛନ୍ତି । ସେହି ମହାଭାରତକୁ ମହାରାଜାଙ୍କ ନିବେଦନରେ ମୁକ୍ତିମଣ୍ଡପର ପଣ୍ଡିତମାନେ ପାଠକରି କେତୋଟି ତ୍ରୁଟି

ଦର୍ଶାଇଛନ୍ତି । ସେହି ତ୍ରୁଟି ମଧ୍ୟରେ ପ୍ରଧାନ ତ୍ରୁଟି ହେଉଛି ଉଦ୍‌ଯୋଗ ପର୍ବର ଶୁଭସ୍ତମ୍ଭ ସ୍ଥାପନ ଅଧ୍ୟାୟରେ 'ହାତୀବାର ଜୁଣ ଆବର ଘଣ୍ଟି ବାରଜୁଣ' କଥା । ହାତୀ ଯଦି ବାରଜୁଣ ହୁଏ, ତାଙ୍କ କଣ୍ଠରେ ଘଣ୍ଟି ବାରଜୁଣ କପରି ହେବ ।"

ସମ୍ମୁଖରେ ଉପସ୍ଥିତ ଲୋକମାନଙ୍କ ମଧ୍ୟରେ ମଠା ଲୁଗା ପିନ୍ଧି ଜଣେ ଯଜ୍ଞୋପବୀତଧାରୀ ବ୍ରାହ୍ମଣ କହିଲେ, "ପଣ୍ଡିତମାନେ ଯେଉଁ ଭୁଲ୍ ନିର୍ଣ୍ଣୟ କରିଛନ୍ତି ତାହା ଯଥାର୍ଥ ।"

ମହାମନ୍ତ୍ରୀ କହିଲେ, "ମହାଶୟ ! ଆପଣ ସମସ୍ତ ଘୋଷଣାଟି ଶୁଣିସାରିଲା ପରେ ମତାମତ ବ୍ୟକ୍ତ କଲେ ଭଲ ହୁଅନ୍ତା । ଅଧା କଥା ଶୁଣି ମତବ୍ୟକ୍ତ କରିବା ବିଜ୍ଞତାର ପରିଚାୟକ ନୁହେଁ । ପୁଣି ଆପଣମାନଙ୍କୁ ଡକା ହୋଇନାହିଁ କୌଣସି ମନ୍ତବ୍ୟ ଦେବାପାଇଁ । ଯେଉଁଠି ମୁକ୍ତିମଣ୍ଡପର ପଣ୍ଡିତମାନେ ବସିଛନ୍ତି ଓ ଏ ଦେଶର କର୍ଣ୍ଣଧାର ମହାପ୍ରଭୁଙ୍କ ରାଉତ କପିଳେଶ୍ୱରଦେବ ବିଜେ କରିଛନ୍ତି, ସେଠାରେ ଅଯଥା କଥା କହି ସମୟ ନଷ୍ଟ କରିବା ଉଚିତ ନୁହେଁ ।"

ଡାକୁଆ କହିଲା, "ପଣ୍ଡିତମାନଙ୍କର ସଂଶୟ ମୋଚନପାଇଁ କବି ସିଦ୍ଧେଶ୍ୱରଙ୍କୁ ପ୍ରଶ୍ନ ହେବାରୁ ସିଦ୍ଧେଶ୍ୱର କହିଲେ, ଏ ମହାକାବ୍ୟର ସ୍ରଷ୍ଟା ସେ ନୁହନ୍ତି । ଶ୍ରୀଜଗନ୍ନାଥଙ୍କ ନିର୍ଦ୍ଦେଶରେ ଶାରଳା ଠାକୁରାଣୀ ଯାହା କୁହନ୍ତି, ସେ ପ୍ରଭାତ ସମୟରେ ଲେଖନ ପତ୍ରରେ ଧରି ଲେଖିଯା'ନ୍ତି । ତେଣୁ ପଣ୍ଡିତଙ୍କ ପ୍ରଶ୍ନ ଶୁଣି ସେ ଧ୍ୟାନଦ୍ୱାରା ଶାରଳା ଠାକୁରାଣୀଙ୍କୁ ଜଣାଇବାରୁ ତାଙ୍କୁ ଠାକୁରାଣୀ ସେଠାରେ 'ହାତୀ ବାରଜୁଣ ଓ ଘଣ୍ଟି ବାରଜୁଣ'ର ଅର୍ଥ କ'ଣ ତାହା ଲେଖିବାକୁ ଆଦେଶ ଦେଲେ । ସେହି ଉତ୍ତର ପଣ୍ଡିତମାନେ ଶୁଣି ନିରୁତ୍ତର ହେଲେ ମଧ୍ୟ ସ୍ୱତଃ ପ୍ରଶ୍ନ ଉଠେ ଶାରଳା ଠାକୁରାଣୀ ଯେ ତୁମକୁ ଏକଥା କହୁଛନ୍ତି, ଏହାର ପ୍ରମାଣ କ'ଣ ? ବିଶେଷତଃ ତୁମେ ଆଦ୍ୟପର୍ବରେ କହିଛ ପୂର୍ବେ ଶିବଙ୍କ ଦ୍ୱାରପାଳ ନନ୍ଦୀ ଥିଲ, ତାହାର ଉଚିତ୍ ପ୍ରମାଣ ଦର୍ଶାଇବ କି ? ଏ ପ୍ରଶ୍ନ କେବଳ ମୁକ୍ତିମଣ୍ଡପ ପଣ୍ଡିତମାନଙ୍କର ନୁହେଁ; ମଣିମାଙ୍କର ମନେହେଉଛି, ସମସ୍ତ ଓଡ଼ିଆଙ୍କର ଏ ପ୍ରଶ୍ନ ।"

ବଡ଼ଦାଣ୍ଡ ଫାଟିପଡୁଥାଏ ଲୋକ ଗହଳରେ । ହେଲେ ଟିକିଏ ହେଲେ ଶବ୍ଦ ନ ଥାଏ । ସମସ୍ତେ ନୀରବ । ଏଭଳି କି ପତରଟିଏ ପଡ଼ିଲେ ବି ସମସ୍ତଙ୍କ କାନକୁ ଶୁଭିବ । ଯେତେବେଳେ ପ୍ରବଳ ପ୍ରତାପୀ ଓଡ଼ିଶାର ଗଜପତି ମହାରାଜା ସମ୍ମୁଖ ଭାଗରେ ଉପବେଶନ କରିଛନ୍ତି, ସେତେବେଳେ କିଏ ତାଙ୍କ ଆଗରେ କ'ଣ କହିବ ? ସେ ବ୍ରାହ୍ମଣଙ୍କୁ ଶ୍ରଦ୍ଧା କରନ୍ତି ଓ ଭକ୍ତି କରନ୍ତି । ତେଣୁ ବ୍ରାହ୍ମଣମାନଙ୍କ ମଧ୍ୟରୁ କିଏ କ'ଣ କହିପାରନ୍ତା; ମନ୍ତ୍ରୀ ମହାମନ୍ତ୍ରୀ କାଶୀନାଥ ସନ୍ଧିବିଗ୍ରହିକ ମହାପାତ୍ର ସମ୍ମୁଖ ଭାଗରେ ଛିଡ଼ା ହୋଇଥିବା ଜଣେ ଯୁବ ବ୍ରାହ୍ମଣଙ୍କ ଉତ୍ତର ଦେଲାପରେ ଆଉ କେହି କିଛି କହିବାକୁ ସାହସ କରୁ ନ ଥାନ୍ତି । ସମଗ୍ର ଦାକ୍ଷିଣାତ୍ୟ ଜୟକରି ଯେଉଁ କପିଳେଶ୍ୱରଦେବ ଶ୍ରୀଜଗନ୍ନାଥଙ୍କର ବିଜୟ ଧ୍ୱଜା ଉଡ଼ାଇ ଫେରିଛନ୍ତି, ତାଙ୍କ ଆଗରେ କିଏ କ'ଣ କହିବ ? ପୁଣି ଅନଙ୍ଗଭୀମଦେବ ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶା ମୁଲକର ରାଜା କହିଲେ ନିଜେ ତାଙ୍କର ରାଉତ ବୋଲି ବିଜ୍ଞାପିତ କଲେ । ସେହି ସମୟରୁ ସେ ସୁନାର ବିଭିନ୍ନ ଅଳଙ୍କାରରେ ଜଗନ୍ନାଥଙ୍କୁ ସଜାଇ ରାଜା ବେଶ କରି ଯାଉଛନ୍ତି । କପିଳେଶ୍ୱରଦେବ ଦାକ୍ଷିଣାତ୍ୟ ବିଜୟକୁ ଗଲାବେଳେ ମନାସି କରି ଯାଇଥିଲେ । ଯଦି ଏ ବିଜୟ ସଫଳ ହୁଏ, ତେବେ ଶ୍ରୀଜଗନ୍ନାଥଙ୍କୁ ସୁନା ବେଶ କରାଇ ସୁନାର ହାତ-ଗୋଡ଼ ଖଞ୍ଜିବେ । ତାଙ୍କ ମାନସିକ ମହାପ୍ରଭୁ ପୂରଣ କରିଛନ୍ତି । ତେଣୁ ଦାକ୍ଷିଣାତ୍ୟ ବିଜୟ କରି ଫେରିଲା ପରେ ଆଷାଢ଼ ଶୁକ୍ଳପକ୍ଷ ଏକାଦଶୀ ଦିନ ସେ ରଥ ଉପରେ ତିନି ଠାକୁରଙ୍କୁ ସୁନାର ହାତ-ଗୋଡ଼ ଲଗାଇ ସୁନା ବେଶ କରି ତାଙ୍କ ଆଗରେ ଲମ୍ବ ହୋଇ ଶୋଇ ନିଜକୁ ସମର୍ପଣ କରିଦେଇଛନ୍ତି ।

ଶ୍ରୀଜଗନ୍ନାଥ ଯାହାର ସହାୟ ତା'ର ଭୟ କାହାକୁ ? ଓଡ଼ିଶାର ଲୋକେ ତ ଜଗନ୍ନାଥଙ୍କ ଭରସା କରି ପଡ଼ିଛନ୍ତି । କେଶରୀ ବଂଶର ରାଜା ଶ୍ରୀଜଗନ୍ନାଥଙ୍କ ନିମିତ୍ତ ବିରାଟ ମନ୍ଦିର ନିର୍ମାଣ କରିବାକୁ କହିଲା ମାତ୍ରେ, ଓଡ଼ିଶାର ସବୁ ଅଞ୍ଚଳରୁ ଲୋକେ ସ୍ୱଇଚ୍ଛାରେ ଧାଇଁଆସିଲେ ମନ୍ଦିର ନିର୍ମାଣ-ପାଇଁ । କିନ୍ତୁ ସୁବର୍ଣ୍ଣକେଶରୀ ମନ୍ଦିର ନିର୍ମାଣରେ ଅବହେଳା କରିବାରୁ ଓଡ଼ିଶାର ଲୋକେ କଳିଙ୍ଗରାଜଙ୍କ ଅନୁମତି ନେଇ ଦକ୍ଷିଣରୁ ଚୋଳଗଙ୍ଗଙ୍କୁ ଡାକି ଆଣିଲେ । ସେ ଓଡ଼ିଶାର ରାଜା ହେଉ ହେଉ ପ୍ରଥମେ ଜଗନ୍ନାଥଙ୍କ ଅସମ୍ପୂର୍ଣ୍ଣ ମନ୍ଦିରକୁ ପୂର୍ଣ୍ଣ କରି ମନ୍ଦିରକୁ ଲାଗି ନୃସିଂହ ମନ୍ଦିର ନିର୍ମାଣ କଲେ । ମାତ୍ର ସେହି

ବଂଶର ନିଶଙ୍କଭାନୁ ଗୌଣ ହେବା ହେତୁ ଓ ତାଙ୍କର ପୁଅ କେହି ନ ଥିବାରୁ କପିଳେଶ୍ୱରଙ୍କୁ ଓଡ଼ିଶା ମୁକୁଳର ରାଜା କରାଇଲେ । ରାଜା ହେବା ଦିନଠାରୁ କପିଳେଶ୍ୱର ଶ୍ରୀଜଗନ୍ନାଥଙ୍କପାଇଁ—ଶ୍ରୀଜଗନ୍ନାଥଙ୍କ ଦେଶପାଇଁ ଏଭଳି କାର୍ଯ୍ୟ କରୁଛନ୍ତି ଯଦ୍ଦ୍ୱାରା ସମଗ୍ର ଓଡ଼ିଶାର ଲୋକେ ଆନନ୍ଦ ଏବଂ କୃତକୃତ୍ୟ ।

ଡାକୁଆ କହିସାରିଲା ପରେ ମହାମନ୍ତ୍ରୀଙ୍କ ନିର୍ଦ୍ଦେଶରେ ସିଦ୍ଧେଶ୍ୱର ଉଠି ଛିଡ଼ା ହେଲେ । ସେ ପ୍ରଥମେ ଶ୍ରୀଜଗନ୍ନାଥ ମନ୍ଦିର ଆଡ଼କୁ ଅନାଇ ନମସ୍କାର କଲେ । ତା'ପରେ ତାଙ୍କର ଇଷ୍ଟ ଶାରଳା ଠାକୁରାଣୀଙ୍କୁ ସ୍ମରଣ କରି କପିଳେଶ୍ୱରଦେବଙ୍କୁ ପ୍ରଣାମ କଲେ । ଶେଷରେ ମଞ୍ଚ ଉପରକୁ ଉଠି ସମଗ୍ର ଜନତାକୁ ହାତ ଯୋଡ଼ି ଜୁହାର ହେଲେ । ତାଙ୍କର ବିନୟୀ ଭାବ ଦେଖି ଉପସ୍ଥିତ ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ତାଙ୍କପ୍ରତି ସହାନୁଭୂତିଶୀଳ ହୋଇ-ପଡ଼ିଲେ କେତେକ ଲୋକ କହିଲେ, "ଆହା..., କିବ କେତେ ବିନୟୀ !

ଲୋକମାନଙ୍କ ମଧ୍ୟରେ ଛିଡ଼ା ହୋଇଥିବା ଜଣେ ମୋଟା ହାଡ଼ୁଆ ବୁଢ଼ା ଲୋକ କହିଲେ—"ଆରେ......ଯେ ତ ଆମର ଯୁଦ୍ଧ ବାହିନୀର ସିଦ୍ଧେଶ୍ୱର । ମଣିମାଙ୍କ ଆଦେଶରେ ସୈନ୍ୟମାନଙ୍କୁ ଅସ୍ତ୍ରାଗାରରୁ ଅସ୍ତ୍ରଶସ୍ତ୍ର ଯୋଗାଉଥିଲେ । ସେ ନିଜେ ମଧ୍ୟ ଅନେକ ଥର ଅସ୍ତ୍ରଶସ୍ତ୍ର ଧରି ଶତ୍ରୁ ସୈନ୍ୟ ସଂହାର କରିଛନ୍ତି । ଦକ୍ଷିଣର ବାହମାନୀ ଦୁର୍ଗ ଦଖଲ କଲାବେଳେ ତାଙ୍କର ଯୁଦ୍ଧ ଖୁବ୍ ଚିତାକର୍ଷକ ହୋଇଥିଲା । ଏକାକୀ ସେ ଖଣ୍ଡା ଧରି ବାହାମାନୀ ରଣକ୍ଷେତ୍ରରେ ଶତ୍ରୁ ବ୍ୟୁହ ଭେଦ କରିଥିଲା ।

ବୁଢ଼ା ଲୋକଟି ସିଦ୍ଧେଶ୍ୱରଙ୍କ ବିଷୟରେ କହୁ କହୁ ପାଖ ଲୋକେ କହିଲେ, "ତାହା ହେଲେ ସେ କ'ଣ ଆମ ପାଇକମାନଙ୍କ ମଧ୍ୟରୁ ଜଣେ ?"

ବୁଢ଼ାଟି କହିଲା—"ଜଣେ ମାନେ...ସେ ଜଣେ ପ୍ରଧାନ ଯୋଦ୍ଧା । କପିଳେଶ୍ୱର ମହାରାଜା ଯେତେବେଳେ ତାଙ୍କୁ ସେନାପତି ପଦ ଦେବାପାଇଁ ଇଚ୍ଛା କଲେ, ସେ ହାତ ଯୋଡ଼ି କହିଲେ, ମଣିମା ! ମୁଁ ଉଚ୍ଚ ପଦବୀ ଗ୍ରହଣ କରିବାକୁ ଚାହେଁ ନାହିଁ । ମହାପ୍ରଭୁ ଜଗନ୍ନାଥଙ୍କ ରାଜ୍ୟ ରକ୍ଷା କରିବାପାଇଁ ଯଦି ଜୀବନ ଯାଏ, ତେବେ ହସି ହସି ମୁଁ ଜୀବନ ଦେବାକୁ ପ୍ରସ୍ତୁତ । ମୁଁ ଦେଖୁଛି ଆମ

ଅସ୍ତାଗାରରେ ଯେଉଁ ଅସ୍ତ୍ରଗୁଡ଼ିକ ଅଛି, ତା' ମଧ୍ୟରୁ କେତେକ ଯୁଦ୍ଧୋପଯୋଗୀ ହୋଇନାହିଁ । ଫଳରେ ସେହି ଅନୁପଯୁକ୍ତ ଅସ୍ତ୍ରଗୁଡ଼ିକ ନେଇ ଯୁଦ୍ଧ କରିବା-ଦ୍ୱାରା ସୈନ୍ୟମାନେ ଅସୁବିଧା ଭୋଗୁଛନ୍ତି । ଯଦି ଆପଣ ଇଚ୍ଛା କରନ୍ତି, ତେବେ ସେହି ଭାର ଦେଲେ ମୁଁ ଅସ୍ତ୍ର-ଶସ୍ତ୍ରଗୁଡ଼ିକୁ ସର୍ବଦା ଯୁଦ୍ଧୋପଯୋଗୀ କରି ରଖିବି ।

କପିଳେଶ୍ୱରଦେବ ସେହି ମୁହୂର୍ତ୍ତରେ ତାଙ୍କୁ ଅସ୍ତ୍ରାଗାରର ଦାୟିତ୍ୱ ଦେଇଥିଲେ । ସେହି ସିଦ୍ଧେଶ୍ୱର ଯେ ଓଡ଼ିଆରେ ମହାଭାରତ ଲେଖିଛନ୍ତି, ଏହା କମ୍ କଥା ନୁହେଁ ।

ଏତିକିବେଳେ ସିଦ୍ଧେଶ୍ୱର ମଞ୍ଚ ଉପରେ ଛିଡ଼ାହୋଇ କହିଲେ, ମୁଁ ମୋର ବଡ଼ିମାପାଇଁ ମୋଟେ ମିଛ କହୁନାହିଁ । ଶ୍ରୀଜଗନ୍ନାଥଙ୍କ ନିର୍ଦ୍ଦେଶରେ ମୋ ଘରର ଇଷ୍ଟଦେବୀ ଶାରଳା ଠାକୁରାଣୀ ମୋତେ ଆଦେଶ ଦେଇ କହିଲେ, ମହାପ୍ରଭୁ ଜଗନ୍ନାଥ ଆଦେଶ କରିଛନ୍ତି ତୋତେ ଓଡ଼ିଶା ଦେଶର କଥିତ ଭାଷାରେ ପୁରାଣ ଲେଖିବାକୁ ହେବ । ସେତେବେଳେ ମୁଁ ତାଙ୍କୁ କହିଲି ଯଶୋବନ୍ତର ପୁଅ ସିଦ୍ଧେଶ୍ୱର ଗଣ୍ଡ ମୂର୍ଖ । ସେ ପୁଣି ଓଡ଼ିଆ ଭାଷାରେ କି ପୁରାଣ ଲେଖିବ ବୋଲି କହୁଛନ୍ତି । ଦେବୀ କହିଲେ—ମୁଁ ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ । ଏ ଦେଶର ଜାତିର ଇଷ୍ଟ ଜଗନ୍ନାଥଙ୍କ ନିର୍ଦ୍ଦେଶ କ୍ରମେ ମୁଁ ତୋ ଉପରେ ପ୍ରସନ୍ନା । ଓଡ଼ିଆ ଜାତିର ଇତିହାସ ପୁରାଣ ରୂପେ ମୁଁ ତୋତେ କହିବି । ରାତିରେ ମୁଁ ତୋତେ ଯାହା କହିଯିବି, ପ୍ରଭାତ କାଳରେ ତୁ ତାହା ତାଳପତ୍ର ଲେଖନୀରେ ଲେଖିଯିବୁ । ତୁ ପୂର୍ବେ କପିଳାସର ଦ୍ୱାରପାଳ ନନ୍ଦୀ ଥିଲୁ । ମୁଁ ପାର୍ବତୀ ରୂପେ ଶିବଙ୍କ ସହିତ ଅବସ୍ଥାନ କରିଥିଲି । ଶିବ ଜାଣିଶୁଣି ମୋ ବକ୍ଷରେ କର ଦେଇଥିଲେ । ତୁ ବିକାରଗ୍ରସ୍ତ ହୋଇ ଅଜ୍ଞାନଙ୍କ ଭଳି ସେହି କଥା ଗଣେଶଙ୍କୁ କହିବାରୁ ଗଣେଶ ଅଭିଶାପ ଦେଲେ, ତୁ ମର୍ତ୍ତ୍ୟରେ ମଣିଷ ରୂପେ ଜନ୍ମ ହୁଅ । ପରେ ତୋ'ଠାରୁ ମୁଁ ସମସ୍ତ କଥା ଶୁଣି ଶିବଙ୍କୁ କହିବାରୁ ଶିବ କହିଲେ, ସେ ଲୋକଙ୍କୁ ମୁକ୍ତି ଦେବାପାଇଁ ଈଶ୍ୱରୀୟ ଗାଥା ଲେଖିବା ନିମିତ୍ତ ମୁଁ ଏ କୂଟ କରିଛି । ତା' ସହିତ ସରସ୍ୱତୀଦେବୀ ରୂପେ ତୁମେ ମଧ୍ୟ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୁଅ । ତେଣୁ ସେ ଶାରଳା ମାତା ମୋତେ ଯାହା କହନ୍ତି, ମୁଁ ତାହା

ଲେଖେ । ସେଥିପାଇଁ ଆପଣ ଯଦି ପ୍ରମାଣ ଗୃହାନ୍ତି ତେବେ କି ପ୍ରମାଣ ବା ଆପଣଙ୍କୁ ମୁଁ ଦେଇପାରିବି ?

ହଠାତ୍ ଜଣେ ମୁକ୍ତିମଣ୍ଡପର ପଣ୍ଡିତ ଛିଡ଼ା ହୋଇଗଲେ । ମହାମନ୍ତ୍ରୀ ହାତ ଉଠାଇ ତାଙ୍କୁ ବସିପିବାକୁ କହିଲେ । ତା'ପରେ ମହାମନ୍ତ୍ରୀ କହିଲେ—"ମୁଁ ମଣିମାଙ୍କ କଥା ଜଣାଇବାକୁ କହୁଛି, ସିଦ୍ଧେଶ୍ୱର ଯାହା କହିଲେ ତାହା ସତ୍ୟ ହୋଇପାରେ । ମାତ୍ର ଏଠାରେ ତୁମକୁ ପ୍ରମାଣ ଦେବାକୁ ପଡ଼ିବ ! ବିନା ପ୍ରମାଣରେ ତୁମର କୌଣସି କଥା କେହି ଗ୍ରହଣ କରିବେ ନାହିଁ ।"

ସଙ୍ଗେ ସଙ୍ଗେ ମଞ୍ଚରେ ଆସୀନ କେତେକ ପଣ୍ଡିତ ତାଳମାରି ମହାମନ୍ତ୍ରୀଙ୍କ କଥାକୁ ସମର୍ଥନ କଲେ । ପଣ୍ଡିତଙ୍କ ତାଳି ମାରିବା ଦେଖି ଉପସ୍ଥିତ ଜନତା ମଧ୍ୟ ତାଳି ମାରିବାକୁ ଲାଗିଲେ ।

—ଦେଖନ୍ତୁ ! ଧର୍ମ ଭକ୍ତି ହେଉଛି ମଣିଷର ବିଶ୍ୱାସର କଥା । ତଥାପି ଯେତେବେଳେ ମଣିମାଙ୍କର ଅବିଶ୍ୱାସ ହେଉଛି, ସେତେବେଳେ ମୁଁ ରତ୍ନସିଂହାସନ ଉପରେ ଉପବିଷ୍ଟ ସେହି ହରିହର ଏକ ଆତ୍ମାଙ୍କୁ ଜଣାଉଛି, ପ୍ରକୃତରେ ମୁଁ ଯଦି ଶିବଙ୍କ ଦ୍ୱାରପାଳ ନନ୍ଦୀ- ଗଣେଶଙ୍କ ଅଭିଶାପରେ ମଣିଷ ରୂପେ ଜନ୍ମ ହୋଇଥାଏ, ତେବେ ମୋର ଅସ୍ତ୍ର ଏହିଠାରେ ମୋତେ ମିଳୁ ।"

ସିଦ୍ଧେଶ୍ୱରଙ୍କ ମୁହଁରୁ କଥା ସରୁ ନ ସରୁଣୁ ଶୂନ୍ୟରୁ ଶୁଣାଗଲା— "ସିଦ୍ଧେଶ୍ୱର ! ତୁମେ ଶିବଙ୍କ ଦ୍ୱାରପାଳ ନନ୍ଦୀ ହୋଇ ସେହି ଦ୍ୱାରକୁ ସୁବର୍ଣ୍ଣ ମାର୍ଜ୍ଜନୀରେ ପରିଷ୍କାର କରୁଥିଲ ଓ ଶୂଳ ହସ୍ତରେ ଦଣ୍ଡାୟମାନ ହେଉଥିଲ ! ବର୍ତ୍ତମାନ ତାହା ତୁମେ ଗ୍ରହଣ କର !"

ସିଦ୍ଧେଶ୍ୱର ଦୁଇ ହାତ ଉପରକୁ ଟେକିଦେଲେ ସଙ୍ଗେ ସଙ୍ଗେ ତାଙ୍କ ହାତକୁ ଗୋଟିଏ ସୁନାର ଚୋକେଇ, ସୁନାର ଝାଡ଼ୁ ଓ ଶୂଳଟିଏ ଆସି ଲାଗିଗଲା । ସେହି ଶୂଳ, ଚୋକେଇ ଓ ଝାଡ଼ୁକୁ ସିଦ୍ଧେଶ୍ୱର ପ୍ରଥମେ କପିଳେଶ୍ୱର ମହାରାଜାଙ୍କୁ ଦେଖାଇ ମୁକ୍ତିମଣ୍ଡପର ପଣ୍ଡିତମାନଙ୍କୁ ତଥା ଉପସ୍ଥିତ ଲୋକମାନଙ୍କୁ ଦେଖାଇଲେ ।

ଏ ଅଦ୍ଭୁତ କଥା ଦେଖି ଲୋକମାନେ ଆନନ୍ଦିତ ହୋଇ ତାଳି ମାରିବାକୁ ଲାଗିଲେ । ତାଳି ଶବ୍ଦରେ କମ୍ପି ଉଠିଲା ବଡ଼ଦାଣ୍ଡ । ସ୍ତ୍ରୀଲୋକ-ମାନେ ଭକ୍ତିର ବିଜୟରେ ଆତ୍ମହରା ହୋଇ ହୁଳହୁଳି ଧ୍ୱନି ଦେଲେ । ସଙ୍ଗେ ସଙ୍ଗେ 'ଜୟ ଜଗନ୍ନାଥ' ଶବ୍ଦରେ କମ୍ପି ଉଠିଲା ସିଂହଦ୍ୱାର ।

—ମହିମା ! ସିଦ୍ଧେଶ୍ୱର କମିଆଁ ଜାଣନ୍ତି । ତାଙ୍କ ମହାଭାରତରେ ଗାରୁଡ଼ ମନ୍ତ୍ରଠାରୁ ମୋହିନୀ, ଏଭଳିକି କବାଟ ଫିଟା ମନ୍ତ୍ର ପର୍ଯ୍ୟନ୍ତର ଅବତାରଣା କରାଯାଇଛି । ତେଣୁ ଏ ଯେଉଁ ତିନୋଟି ଦ୍ରବ୍ୟ ସେ ଦେଖାଇଲେ ତାହା ଇନ୍ଦ୍ରଜାଲ ବିଦ୍ୟା ଛଡ଼ା ଅନ୍ୟ କିଛି ନୁହେଁ ।

ମଞ୍ଚ ଉପରେ ମହାମନ୍ତ୍ରୀ ଛିଡ଼ାହୋଇ କହିଲେ—"ମୁକ୍ତିମଣ୍ଡପର ଜଣେ ପଣ୍ଡିତ ସିଦ୍ଧେଶ୍ୱର ଏ ଯେଉଁ ଅଦ୍ଭୁତ କଥା ଦେଖାଇଲେ ତାହା ସତ୍ୟ ନୁହେଁ ବୋଲି ଅବତାରଣା କରୁଛନ୍ତି । ଏହିଭଳି ବହୁ ସ୍ଥାନରେ ବହୁ ଲୋକ ଦେଖାଇବାର ଦୃଷ୍ଟାନ୍ତ ରହିଛି । ଶ୍ରୀଜଗନ୍ନାଥଙ୍କ ନିର୍ଦ୍ଦେଶରେ ଶାରଳା ଠାକୁରାଣୀ ରାତିରେ ସିଦ୍ଧେଶ୍ୱରଙ୍କୁ ମହାଭାରତ କହିଦିଅନ୍ତି, ଏହାର ଉପଯୁକ୍ତ ପ୍ରମାଣ ଏଠାରେ କିଏ ଦେଇପାରିବେ କି ? ମହାପ୍ରଭୁ ଆଦେଶ ଦେଇଛନ୍ତି—ଏହା ଯଦି ପ୍ରମାଣିତ ହୁଏ ତେବେ ସିଦ୍ଧେଶ୍ୱରଙ୍କ ମହାଭାରତ ବିଷୟରେ ଆଉ କାହାର କୋଣସି ଆପତ୍ତି ଶୁଣାଯିବ ନାହିଁ ।"

ମହାମନ୍ତ୍ରୀ କହିସାରି ବସିପଡ଼ିଲା ପରେ ସିଦ୍ଧେଶ୍ୱର କିଛି ପ୍ରମାଣ ଦେବେ କି ନାହିଁ ସେ ବିଷୟରେ କିଛି କହିବାକୁ ଉଠି ଛିଡ଼ା ହେଲେ ନାହିଁ । ପରିବେଶ ସମ୍ପୂର୍ଣ୍ଣ ନୀରବ । ଗଜପତି ମହାରାଜା ସିଦ୍ଧେଶ୍ୱରଙ୍କ ଆଡ଼କୁ ଅନାଇଲେ । ସେଥିପ୍ରତି ସିଦ୍ଧେଶ୍ୱର ମଧ୍ୟ ସାମାନ୍ୟ ଦୃଷ୍ଟିପାତ କଲେନାହିଁ । କେତୋଟି ମୁହୂର୍ତ୍ତ ସେହିଭଳି ଗତ ହୋଇଗଲା । ଶେଷରେ ମହାମନ୍ତ୍ରୀ ଉଠି କହିଲେ, ଏ ଦେଶର ଜାତିର ଇଷ୍ଟ ଜଗନ୍ନାଥଙ୍କ ନିର୍ଦ୍ଦେଶରେ ଶାରଳା ଠାକୁରାଣୀଙ୍କ ଶ୍ରୀମୁଖ ବାଣୀ ଯେ ସିଦ୍ଧେଶ୍ୱର ଲେଖନ-ପତ୍ରରେ ଲେଖିଛନ୍ତି, ଏହାର ଯଥାଯଥ ପ୍ରମାଣ ସିଦ୍ଧେଶ୍ୱର ବୋଧେ ଦେଇପାରିବେ ନାହିଁ । ତେଣୁ ସେ ନୀରବ ରହିବାକୁ ଉଚିତ ମନେକରୁଛନ୍ତି । ଏହା ହିଁ ତାଙ୍କ ମୌନ ଭାବରୁ ଜଣାପଡ଼ୁଛି ।

ମହାମନ୍ତ୍ରୀ ତାଙ୍କର କଥା କହି ବସି ପଡ଼ୁ ନ ପଡ଼ୁଣୁ ସିଦ୍ଧେଶ୍ୱର ଛିଡ଼ାହେଲେ । ତାଙ୍କ ଛିଡ଼ାହେବା ଭଙ୍ଗୀରୁ ଜଣାପଡୁଥାଏ ସତେ ଯେପରି ସେ ନିର୍ଭୟ । ସେ ମହାରାଜାଙ୍କ ଆଡ଼କୁ ଟିକିଏ ହେଲେ ନ ଚାହିଁ କହିଲେ— "ଓଡ଼ିଶାର ପ୍ରାତଃ ସ୍ମରଣୀୟ ମହାରାଜା ପ୍ରବଳ ପ୍ରତାପୀ କପିଳେଶ୍ୱରଦେବ ବୋଧେ ଏ ପ୍ରଶ୍ନ ପଚାରିନାହାନ୍ତି । କାହିଁକି ନା ମୁଁ ଶ୍ରୀଜଗନ୍ନାଥଙ୍କ ଦ୍ୱାରା ସ୍ୱପ୍ନାଦିଷ୍ଟ ହୋଇଛି, ସେ ନିଜେ ମହାରାଜାଙ୍କୁ ଆଦେଶ ଦେଇଛନ୍ତି ମୋ ଲିଖିତ ମହାଭାରତ ଅନୁମୋଦନ କରିବାକୁ । ଏଠାରେ ମହାମନ୍ତ୍ରୀ ଯାହା କହିଲେ, ସେଥିରୁ ମୁଁ ବୁଝୁଛି ନିଜେ ଶ୍ରୀଜଗନ୍ନାଥ ଓ ମହାଦେବୀ ଶାରଳା ସାକ୍ଷ୍ୟ ଦେବାକୁ ଏଠାକୁ ଆସିବା ଦରକାର । ତା' ନ ହେଲେ ସେ କହିଛନ୍ତି, ଏହା କିପରି ପ୍ରମାଣିତ କରିବି ? ଏ ଜାତିର, ଏ ଦେଶର, ଆମ ସମସ୍ତଙ୍କର ଇଷ୍ଟ ତଥା ମୁକ୍ତିଦାତା ପ୍ରମାଣିତ କରିବାକୁ ଏଠାକୁ ଆସିବେ, ଏହା ମୁଁ ତାଙ୍କୁ ଅନୁରୋଧ କରିବି ନାହିଁ । ସେ ଯଦି ସ୍ୱତଃପ୍ରବୃତ୍ତ ହୋଇ ଆସନ୍ତି ତେବେ ତାହା ଭିନ୍ନ କଥା । ମୁଁ ବ୍ରାହ୍ମଣ ନୁହେଁ; ସଂସ୍କୃତ ଭାଷାରେ ମଧ୍ୟ ମୁଁ ପୁରାଣ ରଚନା କରିନାହିଁ । ସେଥିପାଇଁ ମୋ ଅଞ୍ଚଳ ଜଙ୍ଘେରପୁରର ଶାସନୀ ବ୍ରାହ୍ମଣମାନେ ମୋ ଉପରେ ଅତ୍ୟାଚାର କରିଛନ୍ତି । କେତେଥର ମୋ ଲିଖିତ ଗ୍ରନ୍ଥ ଛଡ଼ାଇ ନେଇଛନ୍ତି । ତାଙ୍କ ଭୟରେ ମୁଁ ଆସନ ପାତିଛି ଅରଣ୍ୟ ପରିପୂର୍ଣ୍ଣ ବୁଢ଼ା ନଦୀ କୂଳରେ । ହିଂସ୍ରଜନ୍ତୁଙ୍କ ଭୟରେ ସେଠାକୁ ଶାସନୀ ବ୍ରାହ୍ମଣମାନେ ଯିବାକୁ ଭୟ କରୁଥିବା ହେତୁ ମୁଁ ମୋ ପୁରାଣକୁ ସମ୍ପୂର୍ଣ୍ଣ କରିପାରିଛି । ମହାପ୍ରଭୁ ଜଗନ୍ନାଥ ଓ ଜନନୀ ଶାରଳାଙ୍କ ଆଦେଶରେ ମୁଁ ଏଠାକୁ ମୋ ଲିଖିତ ଖେଦାଗୁଡ଼ିକ ଧରି ଆସିଥିଲି; ଏଠାରେ ମଧ୍ୟ ବ୍ରାହ୍ମଣମାନେ, ପଣ୍ଡିତମାନେ ମୋ ଲିଖିତ ଗ୍ରନ୍ଥକୁ ମିଥ୍ୟା ବୋଲି କହି ଯଦି ମୋତେ ଅପମାନିତ କରିବେ, ତେବେ ଶ୍ରୀଜଗନ୍ନାଥଙ୍କର ଚଳନ୍ତିପ୍ରତିମା ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ ଉତ୍କଳ ବର୍ଗେଶ୍ୱର ଅଭିରାଏ ଭୂତ ଭୈରବ ଦୁଃସହ ଦୁଃଶାସନ ଅନିକରଣେ ରାଉତରାୟ ଅତୁଳବଳ ପରାକ୍ରମ ସଂଗ୍ରାମେ ସହସ୍ର ବାହୁ ଧୂମକେତୁ ଶ୍ରୀ ଶ୍ରୀ ଶ୍ରୀ କପିଳେଶ୍ୱରଦେବ ମହାରାଜାଙ୍କୁ ମୋର ଅସହାୟତା ଜଣାଇ ଇଷ୍ଟଙ୍କର ତଥା ଜାତିର ବଡ଼ଦାଣ୍ଡରୁ ମୋ ପୋଥିଗୁଡ଼ିକ ଧରି ବାହୁଡ଼ିଯିବା ଛଡ଼ା ମୋର ଅନ୍ୟ ଉପାୟ ନାହିଁ ।

ଜଣେ ପଣ୍ଡିତ ଉଠି କହିଲେ—"ମୂର୍ଖ ଶୂଦ୍ର ସିଦ୍ଧେଶ୍ୱର ବ୍ରାହ୍ମଣମାନଙ୍କ ପ୍ରତି, ପଣ୍ଡିତମାନଙ୍କ ପ୍ରତି ଯେଉଁ ଅଭିଯୋଗ କଲେ ମୁଁ ମଣିମାଙ୍କ ପାଖରେ ତା'ର ପ୍ରତିବାଦ କରୁଛି । ଶୂଦ୍ରମାନେ ଯଦି ପୁରାଣ ଲେଖିବେ ଆଉ ତାକୁ ବ୍ରାହ୍ମଣମାନେ ଦେବତା ମନ୍ଦିରରେ ଶାସନ ଚୌପାଢ଼ିରେ ବସି ପଢ଼ିବେ, ତେବେ ଏ ଦେଶର ଏ ଜାତିର ଧର୍ମ ରହିବ ତ ? ମୁଁ ମଣିମାଙ୍କୁ ନିବେଦନ କରୁଛି, ସେ ସିଦ୍ଧେଶ୍ୱରଙ୍କୁ ଆଦେଶ କରନ୍ତୁ ଯଦି ମହାପ୍ରଭୁଙ୍କ ଆଦେଶରେ ସେ ଏ ଗ୍ରନ୍ଥ ଲେଖିଛନ୍ତି ତେବେ ବଡ଼ଦାଣ୍ଡ ମଝିରେ ବହିଯାଉଥିବା ବାଙ୍କିମୁହାଁଣ ନଈ ପୋତି ହୋଇଯିବ । ଫଳରେ ରଥଯାତ୍ରା ସମୟରେ ନଈର ଏ ପାଖରେ ତିନୋଟି ଏବଂ ଆର ପାଖରେ ତିନୋଟି ରଥ ହେଉଛି, ତାହା ଆଉ ହେବନାହିଁ । ତାହାହେଲେ ପ୍ରମାଣିତ ହେବ ଯେ, ସିଦ୍ଧେଶ୍ୱର ଶୂଦ୍ର ହେଉ ନା କାହିଁକି ସେ ଯାହା ଲେଖିଛି ତାହା ବ୍ରାହ୍ମଣର ପଠନଯୋଗ୍ୟ ।"

ଏଥର ମହାରାଜା କପିଳେଶ୍ୱରଦେବ ତାଙ୍କ ଆସନରୁ ଉଠି ଛିଡ଼ାହେଲେ । ସେ କହିଲେ—"ମୁଁ ମହାପ୍ରଭୁଙ୍କ ଆଦେଶ ଦ୍ୱାରା ଏକଦା ସ୍ୱପ୍ନାଦିଷ୍ଟ ହେଲି, ସିଦ୍ଧେଶ୍ୱର ଯେଉଁ ପୁରାଣ ଲେଖି ଆଣିବ ତାହାକୁ ତୁ ଅନୁମୋଦନ କରିବୁ । ଓଡ଼ିଶାର ଲୋକେ ସଂସ୍କୃତ ବୁଝି ପାରୁନାହାନ୍ତି । ତେଣୁ ସେମାନଙ୍କୁ ଶାସ୍ତ୍ରଜ୍ଞ କରାଇବାପାଇଁ ମୁଁ ଜଙ୍ଘେରପୁରର ଦେବୀ ଶାରଳାଙ୍କୁ ଆଦେଶ କରିଛି । ସେ ସିଦ୍ଧେଶ୍ୱର ଦ୍ୱାରା ପୁରାଣ ଲେଖାଉଛନ୍ତି । ତୁ ଏଥିକୁ ଦୃଷ୍ଟି ଦେବୁ । ତା' ନ ହେଲେ ଗୋଟାଏ ସମୃଦ୍ଧ ଜାତିର ଭାଷା କେବଳ କଥିତ ଭାବେ ରହିଯିବ । ତେଣୁ ସିଦ୍ଧେଶ୍ୱର କଥାକୁ ମୁଁ ଅସ୍ୱୀକାର କରୁନାହିଁ । ପଣ୍ଡିତମାନେ ସିଦ୍ଧେଶ୍ୱରଙ୍କ ଗ୍ରନ୍ଥ ପଢ଼ି ତାଙ୍କୁ ଯଦି ମୂର୍ଖ-ଶୂଦ୍ର କହିବେ, ତେବେ ପଣ୍ଡିତ କାହାକୁ କୁହାଯିବ ? ତଥାପି ମୁଁ ମହାକବି ଭକ୍ତ ସିଦ୍ଧେଶ୍ୱରଙ୍କୁ ଅନୁରୋଧ କରୁଛି, ସେ ମହାପ୍ରଭୁଙ୍କୁ ପ୍ରାର୍ଥନା କରନ୍ତୁ ଏବଂ ଜଙ୍ଘେରପୁରର ଅଧିଷ୍ଠାତ୍ରୀ ଦେବୀ ଶାରଳାଙ୍କୁ ଜଣାନ୍ତୁ—ବଡ଼ଦାଣ୍ଡ ମଝିରେ ପ୍ରବାହିତ ନଈଟି ପୋତି ହୋଇଯାଉ । ତହାହେଲେ ସେହି ବାଲି କାଳକାଳକୁ ସିଦ୍ଧେଶ୍ୱରଙ୍କ ଇଷ୍ଟଦେବୀ ଶାରଳାଙ୍କ ନାମରେ ନାମିତହୋଇ ରହିବ ।"

ମହାରାଜ କପିଳେଶ୍ୱରଦେବ କହିସାରିଲା ପରେ ସମସ୍ତେ ନୀରବ ହୋଇଗଲେ । କବି ସିଦ୍ଧେଶ୍ୱର କ'ଣ ଉତ୍ତର ଦେବେ ଠିକ୍ କରିପାରିଲେ

ନାହିଁ । ସେ ଆଖି ବୁଜି ତାଙ୍କର ଇଷ୍ଟଦେବୀଙ୍କୁ ଚିନ୍ତା କଲେ । ତା' ନ ହେଲେ ଏ ପରୀକ୍ଷାରୁ କିଏ ତାଙ୍କୁ ଉଦ୍ଧାର କରିବ ?

ପଣ୍ଡିତମାନେ ତାଙ୍କୁ ମୂର୍ଖ, ଶୂଦ୍ର କହିବାଦ୍ୱାରା ସେ ତିଳେମାତ୍ର ବିରକ୍ତ ବା ବ୍ୟଥିତ ନୁହନ୍ତି । ସେ ଜାଣନ୍ତି, ଜଗନ୍ନାଥ ସବୁ ସହନ୍ତି କିନ୍ତୁ କାହାର ଗର୍ବ ସହନ୍ତି ନାହିଁ । ତେଣୁ ସେ ଗର୍ବଶୂନ୍ୟ ହୋଇ ନିଜକୁ ମୂର୍ଖ ଅପଣ୍ଡିତ କହିଛନ୍ତି । ପୁଣି ନିଜେ ବରିନେଇଛନ୍ତି ଶୂଦ୍ରମୁନି ନାମ । ସେ ଜାଣନ୍ତି, ବ୍ରାହ୍ମଣଙ୍କ ବ୍ୟତୀତ ଅନ୍ୟମାନଙ୍କୁ ଶୂଦ୍ର କୁହାଯାଏ ଯେ ମୌନବ୍ରତ ଆଚରଣ କରି କିଛି କରେ, ସେ ହିଁ ମୁନି । ତେଣୁ ସେ ତାଙ୍କ ଲେଖାର ସ୍ତରେ ସ୍ତରେ ନିଜକୁ ଶୂଦ୍ର ମୁନି ବୋଲି ଅବହିତ କରିଛନ୍ତି । ସେ ଶାରଳାଙ୍କର ଦାସ—ସେହି ଶାରଳା ଯଦି କୃପା ନ କରନ୍ତି, ତେବେ ବଡ଼ଦାଣ୍ଡ ମଧ୍ୟରେ ପ୍ରବାହିତ ବାଙ୍କି ମୁହାଣ ନଦୀ କିପରି ପୋତି ହୋଇଯିବ ?

—"ହେ ମା' ଶାରଳା ! ତୁ ଏକମାତ୍ର ଭରସା । କ୍ଷେତ୍ରମାନଙ୍କ ମଧ୍ୟରେ ଶ୍ରୀକ୍ଷେତ୍ର ହେଉଛି ଶ୍ରେଷ୍ଠ କ୍ଷେତ୍ର । ସଚରାଚର ଈଶ୍ୱର ନିଜେ ଜଗନ୍ନାଥ ଏ କ୍ଷେତ୍ରରେ ଆସନ ପାରି ବସିଛନ୍ତି । ତୁ ଯାହା କହିଦେଉ ମୁଁ ତାହା ଲେଖିଇ—ସର୍ବଦା ସିଦ୍ଧେଶ୍ୱର ମୂରୁଖ ଅଟଇ । ଏ ଅବସ୍ଥାରେ ତୁ ନଦୀକୁ ଯଦି ପୋତି ନ ଦେବୁ ତେବେ ଚିରଦିନ ପାଇଁ ତୋତେ ନିନ୍ଦା ହେବ । ମୁଁ ତ ନିତ୍ୟାନ୍ତ ଅକିଞ୍ଚନ; କବି ବୋଲି ନିଜକୁ ମୁଁ କେବେ ଗର୍ବ ଅନୁଭବ କରୁନାହିଁ; ସବୁ ହୋଇଛି ତୋହରିପାଇଁ—ମହାପ୍ରଭୁ ଜଗନ୍ନାଥଙ୍କ ପାଇଁ । ଆଜି ମହାରାଜା ମୋତେ କବି ବୋଲି ସ୍ୱୀକାର କରିଛନ୍ତି । ହେଲେ ସେ ମଧ୍ୟ ବ୍ରାହ୍ମଣ ପଣ୍ଡିତଙ୍କ କଥାକୁ ନିଜ ମୁଖରେ କହିବାକୁ ଦ୍ୱିଧାବୋଧ କରିନାହାନ୍ତି । ତେଣୁ ତୁ ତୋ'ର ମହିମା ପ୍ରକାଶ ପାଇଁ ନଦୀକୁ ବାଲିରେ ପୋତିପକା । ସମସ୍ତେ ଦେଖନ୍ତୁ······ଜାଣନ୍ତୁ, ଶ୍ରୀଜଗନ୍ନାଥ ଯେଉଁଭଳି ଇଚ୍ଛାମୟ, ସେହିଭଳି ତୁ ହେଉଛୁ ଇଚ୍ଛାମୟୀ । ହୋଇପାରେ ଜୟ ହେବ ଶ୍ରୀଜଗନ୍ନାଥଙ୍କର—ପକ୍ଷାନ୍ତରେ ତୋ'ର ।

ସମୟ ଗଡ଼ି ଚାଲିଥାଏ । ନୀରବରେ ଛିଡ଼ା ହୋଇଥିବା ଲୋକ-ମାନଙ୍କର ଧୈର୍ଯ୍ୟ ମଧ୍ୟ ଧୀରେ ଧୀରେ କମି କମି ଆସୁଥାଏ । ତେଣୁ ସେମାନଙ୍କ ଆଡ଼ୁ ବିଭିନ୍ନ ଚୁପା ସ୍ୱର ଶୁଣାଗଲାଣି ।

ଶୂନ୍ୟରୁ ହଠାତ୍ ଶୁଣାଗଲା—"କପିଳେଶ୍ୱର ! ଏ ଦେଶ ତଥା ଜାତିର ପ୍ରଭୁ ଜଗନ୍ନାଥଙ୍କ ନିର୍ଦ୍ଦେଶରେ ସିଦ୍ଧେଶ୍ୱର ପୁରାଣ ରଚନା କରିଛି । ପ୍ରାକୃତ ଭାଷାରେ ସମ୍ପୂର୍ଣ୍ଣ ମହାଭାରତ ରଚନା କରିବାରେ ସିଦ୍ଧେଶ୍ୱର ପ୍ରଥମ । ତା'ର ପୂର୍ବଜନ୍ମର ସୁକୃତିରୁ ସେ ଓଡ଼ିଶାର ଆଦିକବି ଭାବେ ସମ୍ମାନିତ ହେବ । ଏହାର ପ୍ରମାଣ ସ୍ୱରୂପ ନୀଳଚକ୍ରକୁ ଲକ୍ଷ୍ୟକର ! ନିଜେ ଶ୍ରୀଜଗନ୍ନାଥ ନୀଳଚକ୍ରରେ ଉଭାହୋଇ ଏହାର ସାକ୍ଷ୍ୟ ଦେଉଛନ୍ତି । ସେ ଯଦି ଅନୁମତି ଦିଅନ୍ତି, ତେବେ ବଡ଼ଦାଣ୍ଡକୁ ଦୁଇଭାଗରେ ବିଭକ୍ତ କରି ବହିଯାଉଥିବା ନଦୀଟି ଶୁଖିଯିବ ଓ ରଥଯାତ୍ରାବେଳେ ମହାପ୍ରଭୁଙ୍କ ରଥ ସିଂହଦ୍ୱାରରୁ ବାହାରି ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ଯାଇପାରିବ ।"

ଖାଣ୍ଟି ଓଡ଼ିଆରେ ସ୍ତ୍ରୀ କଣ୍ଠରୁ ଶୂନ୍ୟବାଣୀ ଉପଗତ ସମସ୍ତଙ୍କୁ ଶୁଭିଲା । ଗଜପତି ମହାରାଜାଙ୍କ ସହିତ ସେଠାରେ ଉପସ୍ଥିତ ଲୋକମାନେ ନୀଳଚକ୍ରକୁ ଲକ୍ଷ୍ୟ କଲେ । ନୀଳଚକ୍ର ଦେହରେ ମହାପ୍ରଭୁଙ୍କର କଳାଶ୍ରୀମୁଖ ଦାଉ ଦାଉ ହୋଇ ଦେଖାଯାଉଥାଏ । ସେ ମୁଖରେ ଗମ୍ଭୀରତାର ଆଭାସ । ସତେ ଯେପରି ଜଗନ୍ନାଥ ଗମ୍ଭୀର ହୋଇ କହୁଛନ୍ତି—"ଶେଷରେ କ'ଣ ମୋତେ ସାକ୍ଷ୍ୟ ଦେବାପାଇଁ ଆସିବାକୁ ହେଲା ?"

ଜୟ ଜଗନ୍ନାଥ ଧ୍ୱନିରେ ସିଂହଦ୍ୱାର ଓ ବଡ଼ଦାଣ୍ଡ କମ୍ପି ଉଠିଲା । ଉପସ୍ଥିତ ଲୋକେ ସେହିଠାରେ ଲମ୍ବ ହୋଇ ପ୍ରଣାମ ଜଣାଇଲେ ଶ୍ରୀଜଗନ୍ନାଥଙ୍କୁ । ପ୍ରଣାମ କରିସାରି ଉଠି ନୀଳଚକ୍ରକୁ ଅନାଇ ଦେଖିଲେ ଆଉ ମହାପ୍ରଭୁ ସେଠାରେ ଦେଖାଯାଉନାହାଁନ୍ତି ।

ମହାରାଜା କପିଳେଶ୍ୱର ମୁକ୍ତିମଣ୍ଡପର ପଣ୍ଡିତମାନଙ୍କୁ ଅନାଇଲେ । ସେମାନେ ନୀରବ । ସାକ୍ଷ୍ୟ ଦେବାକୁ ନିଜେ ଶ୍ରୀଜଗନ୍ନାଥ ଆସିନାହାଁନ୍ତି—ଏହା ସିଦ୍ଧେଶ୍ୱରର କମିଆଁ ; ଏଭଳି କେହି ଭୁଲ୍‌ରେ ବି କହିଲେ ନାହିଁ । ବରଂ ସେମାନଙ୍କ ଭିତରେ ଅଜଣା ଭୟ ଦେଖାଦେଲା ।

ଗଜପତି ମହାରାଜା କପିଳେଶ୍ୱରଦେବ କହିଲେ—"ଆଜି ଜୟ ହୋଇଛି ଓଡ଼ିଆ ଜାତିର, ଓଡ଼ିଶା ଦେଶର । ମହାପ୍ରଭୁଙ୍କ ନିର୍ଦ୍ଦେଶରେ ଓଡ଼ିଆ ଭାଷାର ଆଦିଗ୍ରନ୍ଥ ଏଠାରେ ଅନୁମୋଦିତ ଓ ଉନ୍ମୋଚିତ ହେଲା ।

ଶହ ଶହ, ହଜାର ହଜାର ବର୍ଷ ଧରି ଦେଶର କଥିତ ଭାଷା ଆଜି ଗ୍ରନ୍ଥରୂପେ ଆତ୍ମପ୍ରକାଶ କଲା । ମହାପ୍ରଭୁଙ୍କ ଆଦେଶରେ ଶାରଳାଙ୍କ ବରପୁତ୍ର ହିସାବରେ ସିଦ୍ଧେଶ୍ୱର ଆଜିଠାରୁ 'ଶାରଳା ଦାସ' ନାମରେ ପରିଚିତ ହେବେ । ଜାତିର କବିଭାବେ ସମଗ୍ର ଦେଶ ତାଙ୍କୁ ସମ୍ମାନିତ କରିବ ।"

—"କପିଳେଶ୍ୱର ! ମୁଁ ଜଙ୍ଘେଶ୍ୱରପୁର ଶାରଳା କହୁଛି । ସିଦ୍ଧେଶ୍ୱର ମୋର ପୁତ୍ର । ତା' ରଚିତ ଗ୍ରନ୍ଥ ଜାତିର ମହାକାବ୍ୟ । ଏହାକୁ ଯେ ଅବମାନନା କରିବ ସେ ମହାପ୍ରଭୁଙ୍କର ଦେଉଳେହା ହେବ । କାଳକାଳକୁ କଥା ରହିବାପାଇଁ ଆଜି ରାତିରେ ବଡ଼ଦାଣ୍ଡକୁ ଦୁଇଭାଗ କରି ବହିଯାଉଥିବା ବାଙ୍କି ମୁହାଣ ନଦୀ ପୋତି ହୋଇଯିବ । ସେହି ବାଲି ଶାରଦା ବାଲି ରୂପେ ନାମିତ ହେବ ।"

ଠିକ୍ ଏତିକିବେଳେ ଶୂନ୍ୟରୁ ବିଭିନ୍ନ ବାଦ୍ୟଗୋଳ ବାଜିଉଠିଲା । ସତେ ଯେପରି ବିବୁଧେ ଘଣ୍ଟ, ଘଣ୍ଟା, ତୂରୀ, ଭେରୀ ମର୍ଦ୍ଦଳ ବଜାଇ ଆନନ୍ଦ ପ୍ରକାଶ କରୁଛନ୍ତି । ଭକ୍ତିବିଭୋର ହୋଇପଡ଼ିଲେ ଉପସ୍ଥିତ ଲୋକେ । ସେମାନେ ମସ୍ତକ ଅବନତ କରି ଦେବୀ ଶାରଳାଙ୍କୁ ଓ ମହାପ୍ରଭୁ ଜଗନ୍ନାଥଙ୍କୁ ପ୍ରଣାମ କଲେ ।

ମହାରାଜା କପିଳେଶ୍ୱରଦେବ ଶ୍ରୀଜଗନ୍ନାଥଙ୍କ ଉଲଗି ଫୁଲମାଳ ସିଦ୍ଧେଶ୍ୱରଙ୍କ ବେକରେ ଲମ୍ବାଇଦେଇ ରାଜକୀୟ ପାଟ ଜୋଡ଼ା ଓ ସୁବର୍ଣ୍ଣ କୁଣ୍ଡଳରେ ତାଙ୍କୁ ଭୂଷିତ କଲେ । ସେତେବେଳେ ସିଦ୍ଧେଶ୍ୱରଙ୍କ ଆଖି ଲୁହରେ ଛଳ ଛଳ ହୋଇଉଠିଥିଲା । ନିଜେ କପିଳେଶ୍ୱର କହିଲେ — "ଓଡ଼ିଆ ଜାତିର, ଓଡ଼ିଆ ଭାଷାର ଜୟ ହେଉ ……… ମହାକବି ଶାରଳା ଦାସଙ୍କର ଜୟ ହେଉ ।"

—:*:—

---

ସେହିଦିନ ରାତିରେ ବାଙ୍କି ମୁହାଣ ନଦୀ ପୋତି ହୋଇଯାଇଥିଲା ଓ ସେହି ବାଲି ଶାରଦା ଠାକୁରାଣୀଙ୍କ ନାମାନୁଯାୟୀ ଶାରଦା ବାଲି ଭାବେ ପ୍ରସିଦ୍ଧି ଲାଭ କଲା । ପରେ ସେହି ଶାରଦା, ଶରଧା ନାମରେ ନାମିତ ହୋଇଛି । ଏହି କଥା ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ 'ଶାରଳା ଚରିତ'ରେ ଲେଖାଅଛି । ମହାଭାରତ, କମ୍ବଦଳୀ ଓ ଶାରଳା ଚରିତ ଅନୁସରଣରେ ଏହି କାହାଣୀ ଲେଖାଯାଇଛି ।

# ଜୟ ଶ୍ରୀ ନୀଳାଦ୍ରି ବିହାରୀ

—"ପ୍ରଭୁ ! ମୁଁ ତୁମ୍ଭଙ୍କ ମନୋହିପାଇଁ ଅନ୍ନ, ଡାଲି, ଶାକର, ବେସର, ମହୁର ଆଦି ରାନ୍ଧି ଦେଇ ସାରିଛି । ସୁଆରମାନେ ସେହି ସବୁ ସାମଗ୍ରୀକୁ ରୋଷଶାଳରୁ ବୋହି ଆଣୁଛନ୍ତି ରତ୍ନସିଂହାସନ ତଳକୁ । ପୂଜାପଣ୍ଡାମାନେ ଭୈରବୀ ଚକ୍ର ଆଙ୍କି ବସିଲେଣି । ନୈବେଦ୍ୟ ସାମଗ୍ରୀ ଆସିସାରିଲା ପରେ ମନ୍ତ୍ରରାଜ ଦ୍ୱାବିଂଶାକ୍ଷରୀ ନୃସିଂହ ମନ୍ତ୍ରରେ ପ୍ରୋକ୍ଷିତ ହେବ । ଗୋବିନ୍ଦଙ୍କର ଅଷ୍ଟାଦଶ ଅକ୍ଷର ମନ୍ତ୍ରରେ ହେବ ନିବେଦିତ । ତା'ପରେ ସେହି ପ୍ରସାଦକୁ ଭୈରବୀ ବିମଳାଙ୍କୁ ସମର୍ପିତ ହୋଇ ମହାପ୍ରସାଦ ରୂପେ ପରିଗଣିତ ହେବ । ପୁଣି ଅବଶେଷାନ୍ନ ବଣ୍ଟା ହୋଇଯିବ ଅଷ୍ଟସାତ୍ତ୍ୱିକ ବୈଷ୍ଣବମାନଙ୍କୁ । ଠିକ୍ ଏହି ସମୟରେ ଆପଣ କେଉଁଆଡ଼େ ଚାଲିଗଲେ ହେବ କିପରି ? ଆପଣ କ'ଣ ଦେଖୁନାହାଁନ୍ତି, ଆପଣଙ୍କ ପ୍ରିୟ ସେବକ ଶାବରୀୟମାନେ, ତାନ୍ତ୍ରିକଗଣ, ବିଭିନ୍ନ ସମ୍ପ୍ରଦାୟର ବୈଷ୍ଣବ ସବୁ ଏବଂ ଅନ୍ୟାନ୍ୟ ଭକ୍ତମାନେ କିପରି ଅପେକ୍ଷା କରିଛନ୍ତି ସେହି ମହାପ୍ରସାଦକୁ ଗ୍ରହଣ କରି ଧନ୍ୟ ହେବାକୁ । ଆପଣ ଅଳ୍ପ ସମୟ ସ୍ଥିର ହୋଇ ବସନ୍ତୁ । ପୂଜାପଣ୍ଡା ତାଙ୍କ ଚକ୍ଷୁରେ ଆପଣଙ୍କୁ ଦର୍ଶନ କରି ଚକ୍ଷୁ ବୁଲାଇଦେଲା ପରେ ଯୁଆଡ଼େ ଯାଇପାରିବେ ! ତାହା ନ ହେଲେ ପୂଜାପଣ୍ଡାମାନେ ଘଣ୍ଟି ବଜାଇ ବଜାଇ ଥକିବେ ସିନା, କିନ୍ତୁ ନୈବେଦ୍ୟ ସାମଗ୍ରୀକୁ ନିବେଦିତ କରିପାରିବେ ନାହିଁ ।"

—"ମୁଁ ଜାଣୁଛି ଲକ୍ଷ୍ମୀ ! ମାତ୍ର ମୋତେ ଅଳ୍ପ ସମୟପାଇଁ ବାହାରକୁ ଯିବାକୁ ପଡ଼ିବ । ବେଶି ଦୂର ନୁହେଁ, ମାତ୍ର ଚାରିକୋଶ ଦୂରରେ ଅଲାଲ୍‌ଖ ବ୍ରାହ୍ମଣର ପୁଅ ମୋତେ ପାୟସ ସମର୍ପଣ କରୁଛି । ଅଲାଲ୍‌ଖର ପାୟସ ଅତି ସୁମଧୁର । ସେ ତାହା ନିଷ୍ଠାର ସହିତ ମୋ'ପାଇଁ ରନ୍ଧନ କରେ । ତା'ର ଭକ୍ତି ଆଉ ସରଳତାରେ ଏତେ ମୁଗ୍‌ଧ ଯେ, ତା'ର ଆହ୍ୱାନକୁ ମୁଁ ଏଡ଼ିଦେଇ ପାରେନାହିଁ । ଆଜ ଅଲାଲ୍‌ଖଙ୍କୁ ଜ୍ୱର ହୋଇଛି । ସେ ନିଜେ ମୋତେ ପାୟସ ସମର୍ପଣପାଇଁ ଯିବେ ନାହିଁ । ତାଙ୍କର ପାଞ୍ଚବର୍ଷର ଶିଶୁପୁତ୍ରକୁ

ପାୟସ ଦେଇ ପଠାଇଛନ୍ତି । କୁହ ଲକ୍ଷ୍ମୀ ! ମୁଁ ସେ ପିଲାଟିଠାରୁ ପାୟସ ଗ୍ରହଣ ନ କଲେ କ'ଣ ଭଲ ହେବ ?"

—"ପ୍ରଭୋ ! ଅଲାଲ ତ ଆପଣଙ୍କୁ ପୂଜା କରୁନାହିଁ । ସେ ପଥରରେ ନିର୍ମିତ ହୋଇଥିବା ଏକ କମନୀୟ ମୂର୍ତ୍ତିଙ୍କୁ ନୀଳମାଧବ ନାମରେ ଉପାସନା କରୁଛି । ଏ ବିଶ୍ୱରେ ସମସ୍ତ ସ୍ୱରୂପର ଏକ ସାରଭୂତ ରୂପରେ ଆପଣ ବିରାଜମାନ କଲେ ମଧ୍ୟ ଆପଣ ଓ ତାଙ୍କ ମଧ୍ୟରେ ପ୍ରଭେଦତା ଦେଖୁଛି । ସେ ଯେ ଆପଣଙ୍କୁ ଡାକୁଛି ଏବଂ ଆପଣଙ୍କୁ ପାୟସ ସମର୍ପଣ କରୁଛି, ଏ କଥା ଆପଣ ଭାବୁଛନ୍ତି କାହିଁକି ?"

—"ଲକ୍ଷ୍ମୀ ! ତୁମେ ଭୁଲିଯାଇଛ ତ୍ରେତୟା ପରେ ଦ୍ୱାପରର କଥା । ଯେତେବେଳେ କଂସ ସ୍ପର୍ଦ୍ଧାରେ ଫାଟିପଡ଼ିଲା ଏବଂ ଦେବତା, ଋଷିମାନଙ୍କୁ ସମ୍ମାନ ଦେଲାନାହିଁ, ସେତେବେଳେ ମୁଁ ମୋ ଭିତରେ ଥିବା ଅବତାର ପୁରୁଷଙ୍କୁ ଡାକି କହିଲି, ତୁମେ ଶୀଘ୍ର ଯାଇ କଂସର ବନ୍ଦୀଶାଳାରେ ଦେବକୀ ଗର୍ଭରୁ କୃଷ୍ଣ ନାମରେ ଅବତୀର୍ଣ୍ଣ ହୁଅ । ସେତେବେଳେ ସେ ବିନୟର ସହିତ ଜଣାଇଲେ, ମହାପ୍ରଭୁ ! ଆପଣ କ'ଣ ଭୁଲିଗଲେଣି ଏହି ଅଳ୍ପ କେତେଦିନର କଥା ? ରାବଣର ଅତ୍ୟାଚାରରେ ଦେବତାମାନେ ଭୀତତ୍ରସ୍ତ; ସେତେବେଳେ ଆପଣ ମୋତେ ପଠାଇଲେ ଅଯୋଧ୍ୟାର ରାଜା ଦଶରଥଙ୍କ ପାଟରାଣୀ କୌଶଲ୍ୟାଙ୍କ ଗର୍ଭରୁ ସର୍ବଗୁଣସମ୍ପନ୍ନ, ଅପରିମିତ ପରାକ୍ରମର ଆଶ୍ରୟ, କୃତଜ୍ଞ, ଧର୍ମଜ୍ଞ, ଦୃଢ଼ବ୍ରତ, ସତ୍ୟବାକ୍, ସଚ୍ଚରିତ୍ର, ସକଳ ପ୍ରାଣୀଙ୍କ ହିତକାରୀ ରୂପେ ଜନ୍ମ ହେବାକୁ । ଜନ୍ମ ପରେ ଅଳ୍ପ ବୟସରୁ ସମସ୍ତେ ଯେପରି ଅନୁଭବ କରିବେ ବିଦ୍ୱାନ, ଦକ୍ଷ, ଧୀର, ପ୍ରିୟଦର୍ଶନ, ଜିତକ୍ରୋଧ, ଦ୍ୟୁତିମାନ ଓ ଅନସୂୟକ ରୂପେ ମୋ'ଠାରୁ ଅନ୍ୟ କେହି ନାହିଁ । ଠିକ୍ ଆପଣଙ୍କ କଥାକୁ ଅକ୍ଷରେ ଅକ୍ଷରେ ପାଳନ କରି ମୁଁ ସମସ୍ତଙ୍କର ପ୍ରିୟ ହୋଇଥିଲି । ଏତେ ଗୁଣସମ୍ପନ୍ନ ହେଲେ ମଧ୍ୟ ଜୀବନରେ ସୁଖ ବୋଲି କିଛି ନ ଥିଲି । ବହୁ ଦିନ ବଣ-ଜଙ୍ଗଲରେ ବୁଲି ଫଳମୂଳ, ପୋଡ଼ା ମାଂସ ଖାଇ କଟାଇଲି । ଶେଷରେ ଯେତେବେଳେ ବାହୁଡ଼ି ଆସି ଆପଣଙ୍କ ଭିତରେ ଲୀନ ହେଲି ସେତେବେଳେ ଦେବତାମାନେ କହିଲେ, ରାବଣ, କୁମ୍ଭକର୍ଣ୍ଣ ଥିଲେ ବ୍ରହ୍ମର୍ଷିର ପୁତ୍ର । ତାଙ୍କୁ ବଧ କରିଥିବାରୁ ମୁଁ ବ୍ରହ୍ମହତ୍ୟା ଦୋଷରେ ଦୋଷୀ । ତେଣୁ ଦେବତାଙ୍କ

ପ୍ରିୟ କାର୍ଯ୍ୟ କରି ମୁଁ ଶେଷରେ ଯଦି ଦୋଷୀ ହୁଏ, ତେବେ ସେ ଦୋଷ କ'ଣ ଆପଣଙ୍କୁ ସ୍ପର୍ଶ କରୁନାହିଁ ? ତେଣୁ ଆପଣ କାହିଁକି ସେ କାର୍ଯ୍ୟ କରିବାପାଇଁ ମନ ବଳାଉଛନ୍ତି ଓ ଦୋଷୀ ହେଉଛନ୍ତି ?

କିନ୍ତୁ ଲକ୍ଷ୍ମୀ ! ସେତେବେଳେ ମୁଁ ତାଙ୍କୁ କହିଥିଲି, ଏଥର ତୁମକୁ କେହି ଦୋଷ ଦେବେ ନାହିଁ । ତୁମର ମନେରଖିବା ଦରକାର ମୁଁ ହେଉଛି ନିରାକାର । ତୁମେ ସେହି ନିରାକାର ମଧ୍ୟରୁ ସାକାର ରୂପେ ଆତ୍ମପ୍ରକାଶ କରୁଛ; ପୁଣି କାର୍ଯ୍ୟ ସାରି ନିରାକାର ହୋଇ ମୋ ଭିତରେ ଲୀନ ହୋଇ-ଯାଉଛ । ଏଥର ବଣ-ଜଙ୍ଗଲରେ ତୁମେ ବାସ କରିବ ନାହିଁ; ମଥୁରାରେ ଜନ୍ମ ହୋଇ ଗୋପରେ ବଢ଼ିବ । ପ୍ରଚୁର ପରିମାଣରେ ଦଧି-ଲବଣୀ ଖାଇ ହୃଷ୍ଟପୁଷ୍ଟ ହେବ । ମୋ'ଠାରୁ ଗୋଟିଏ କଳା ଯାଇ ଶ୍ୱେତକୃଷ୍ଣ ରୂପେ ଅବତୀର୍ଣ୍ଣ ହେଲେ ମଧ୍ୟ ଷୋଳ କଳାର ଦେବତା ଭଳି ଲୀଳା କରିବ । ଶେଷରେ ଯୁଦ୍ଧକ୍ଷେତ୍ରରେ ଅଜ୍ଞାନକୁ ଜ୍ଞାନ ପରିବେଷଣ କରି ଶ୍ରେଷ୍ଠ ପୁରୁଷ ରୂପେ ସମଗ୍ର ବିଶ୍ୱରେ ବିଦିତ ହେବ ।

ଶେଷରେ ସେ ପ୍ରାର୍ଥନା କରିଥିଲେ, 'ମହାପ୍ରଭୁ ! ମୋ'ପ୍ରତି ଆଉ ଟିକିଏ ସଦୟ ହୋଇ ଆଜ୍ଞା କର, ମୋର ସେହି ଅପୋଡ଼ା ପିଣ୍ଡ ଦାରୁରୂପେ ଭାସିଆସି ଆପଣଙ୍କ ନିରାକାର ରୂପରେ ଚିତ୍ରିତ ହୋଇ ପୁରୁଷୋତ୍ତମରେ ପୂଜା ପାଇବ । ସକଳ ଲୋକେ ଆପଣଙ୍କ ସହିତ ମୋତେ ଅଭିନ୍ନ କରି ତୋଳିବେ । ମୁଁ ବଂଶୀଧାରୀ-ଚକ୍ରଧାରୀ ରୂପେ ଲୋକ ସମାଜରେ ଆରାଧିତ ହେଲେ ମଧ୍ୟ ଆପଣ ଓ ମୁଁ ଏକ ବୋଲି ପ୍ରତିପାଦିତ ହେବ ।' ସେତେବେଳେ ମୁଁ ତାଙ୍କ କଥାକୁ ଅଙ୍ଗୀକାର କରିଥିଲି । ତେଣୁ ଶ୍ରୀକୃଷ୍ଣ, ମାଧବ ଆଦି ପ୍ରତ୍ୟେକ ମୋ'ଠାରୁ ଅଭିନ୍ନ ବୋଲି ଧାରଣା କର ।"

ଲକ୍ଷ୍ମୀ କହିଲେ, "ପ୍ରଭୋ ! ମୋର ସେତେବେଳ କଥା ମନେ ନ ଥିଲା । ମାତ୍ର ଆପଣ ଅଲକ୍ଷ୍ୟ ଘରୁ ଶୀଘ୍ର ଫେରି ନ ଆସିଲେ ଭକ୍ତମାନେ ଉପବାସ ରହିଯିବେ । ବର୍ତ୍ତମାନ ନୈବେଦ୍ୟ ସାମଗ୍ରୀ ବୁହା ହେଲାଣି; ବୁହା ସରିବା ସଙ୍ଗେ ସଙ୍ଗେ ଆପଣ ଯେପରି ଶ୍ରୀକ୍ଷେତ୍ରକୁ ଫେରିଆସନ୍ତି, ଏତିକି ପ୍ରାର୍ଥନା କରୁଛି ।"

ମହାପ୍ରଭୁ ଅଳ୍ପ ହସି କହିଲେ, "ତାହା ହିଁ ହେବ ଲକ୍ଷ୍ମୀ ! ମୁଁ ଯଥାଶୀଘ୍ର ଫେରିବି । ଏଭଳି କି, କେହି ଜାଣିପାରିବେ ନାହିଁ ଯେ ମୁଁ ରତ୍ନସିଂହାସନ ତ୍ୟାଗକରି କେଉଁଠିକି ଯାଇଥିଲି ବୋଲି ।"

ମହାପ୍ରଭୁ ଜଗନ୍ନାଥ ଗରୁଡ଼ ଉପରେ ବସି ଶ୍ରୀକ୍ଷେତ୍ରର ପଶ୍ଚିମକୁ ଗ୍ରରକୋଶ ଦୂରରେ ଥିବା ଅଲାଖ ବ୍ରାହ୍ମଣ ଘରେ ଉପସ୍ଥିତ ହେଲେ । ଅଲାଖଙ୍କୁ ଜ୍ୱର ହୋଇଥିବାରୁ ତା'ର ସ୍ତ୍ରୀ ଯତ୍ନର ସହିତ ପାୟସ ରନ୍ଧନ କରି ତା'ର ବାଳୁତ ପୁତ୍ର ହାତରେ ଠାକୁରଙ୍କୁ ସମର୍ପଣ କରିବାକୁ ପଠାଇଲା । ପିଲାଟି ପାୟସ ଧରି ଯାଇ ମହାପ୍ରଭୁଙ୍କୁ କହିଲା, "ମହାପ୍ରଭୁ ! ବାପାଙ୍କ ଦେହ ଭଲ ନାହିଁ । ଖୁବ୍ ଜ୍ୱର ହୋଇଥିବାରୁ ଆପଣଙ୍କୁ ପ୍ରସାଦ ନିବେଦିତ କରିବାକୁ ଆସି ପାରିଲେ ନାହିଁ । ମୁଁ ପ୍ରସାଦପାଇଁ ପାୟସ ଧରି ଆସିଛି; ଅନୁଗ୍ରହ କରି ଏହି ପାୟସକୁ ଗ୍ରହଣ କରନ୍ତୁ ।"

ପିଲାଟି ଠାକୁରଙ୍କ ଆଗରେ ପାୟସ ଥୋଇଦେଇ କବାଟଟିକୁ ଆଉଜେଇ ଆଣିଲା । ଖୁବ୍ ଅଳ୍ପ ସମୟ···ଖୁବ୍ ଅଳ୍ପ ସମୟ ପରେ କବାଟ ଫିଟାଇ ଦେଖିଲା ଠାକୁରଙ୍କ ଆଗରେ ପାୟସ ରଖିଥିବା ଭଣ୍ଡାଟି ଶୂନ୍ୟ ହୋଇଯାଇଛି । ଏପରିକି, ଟିକିଏ ହେଲେ ପାୟସ ତା' ଦେହରେ ଲାଗିନାହିଁ । ସତେ ଯେପରି ଠାକୁରେ ପୋଛିପାଛି ସବୁ ଖାଇଦେଇଛନ୍ତି । ତେଣୁ ଖାଲି ଭଣ୍ଡାଟି ଧରି ସେ ମନଖୁସିରେ ଘରକୁ ବାହୁଡ଼ିଲା ।

ଭକ୍ତ ଅଲାଖ ତାଙ୍କ ପତ୍ନୀଙ୍କୁ ଡାକି କହିଲେ, "ତୁମେ ସିନା ପାୟସ ରାନ୍ଧିଦେଲ ମାତ୍ର ଠାକୁରଙ୍କୁ ତାହା ନିବେଦନ କରିବ କିଏ ? ମୁଁ ତ ଭୟଙ୍କର ଜ୍ୱରରେ ପଡ଼ିଛି; ଦ'ଖୋଜ ବି ଯାଇପାରିବି ନାହିଁ । ଏହା ବୋଲି ଠାକୁରେ କ'ଣ ଆଜି ଉପାସ ରହିବେ ?"

ପତ୍ନୀ କହିଲେ—"ଠାକୁରଙ୍କ କଥା ତୁମେ କିଛି ଚିନ୍ତା କରନାହିଁ ! ମୁଁ ପାୟସ ପୁଅ ହାତରେ ତାଙ୍କୁ ନିବେଦନ କରିବାପାଇଁ ପଠାଇଛି ।"

—"ଏଁ···ଏ କ'ଣ କହୁଛ ତୁମେ ? ପୁଅକୁ ମାତ୍ର ପାଞ୍ଚବର୍ଷ; ପାଞ୍ଚବର୍ଷର ପିଲା ଠାକୁରଙ୍କୁ କିପରି ପ୍ରସାଦ ନିବେଦନ କରିବ ? ସେ ଘ୍ରେଟ

ପିଲା, କିଛି ଜାଣିନାହିଁ । ବରଂ ପାୟସତକ ଖାଇଦେଇ ଭୁଚ୍ଛା ପାତ୍ର ଧରି ଘରକୁ ଫେରିବ । ତୁମେ ଦେଖ ସେ କ'ଣ କରୁଛି !"

ସତେ ତ..., ତା'ର ମୋଟେ ମନେନାହିଁ । ପିଲାଟା ନିହାତି ଛୋଟ—ତା'ର ହିତାହିତ ଜ୍ଞାନ ନାହିଁ । ଠାକୁରଙ୍କୁ ନିବେଦନ କରିବାକୁ ଯାଇ ଯଦି ନିଜେ ଖାଇଦେଲା ତେବେ କଥା ସରିଲା । ଏହାଦ୍ୱାରା ଠାକୁର ମଧ୍ୟ ରୁଷ୍ଟ ହେବେ । ପିଲାଟିକୁ ଏକୁଟିଆ ପଠାଇ ସେ ଭୁଲ୍ କରିଛି । ତା' ସହିତ ନିଜେ ଯାଇଥିଲେ ସବୁଠାରୁ ଭଲ ହୋଇଥା'ନ୍ତା ।

ସେ ଧାଇଁଲେ ପୁଅ କ'ଣ କରୁଛି ଦେଖିବାକୁ । ଅଳ୍ପବାଟ ଯିବା-ପରେ ସେ ପୁଅକୁ ଦେଖିବାକୁ ପାଇଲେ । ସେ ଶୂନ୍ୟ ଘଣ୍ଟିଟି ଧରି ମନ ଆନନ୍ଦରେ ଖେଳି ଖେଳି ଆସୁଛି ।

ଏଁ...ଏ କ'ଣ ସେ କଲା ? ପିଲାଟା କିଛି ଜାଣିନାହିଁ, ତା' ହାତରେ ପାୟସ ପଠାଇବା ଭୁଲ୍ ହୋଇଛି । ସେ ପାୟସତକ ଖାଇଦେଇ ଖାଲିଘଣ୍ଟିଟି ଧରି ଫେରୁଛି । ଠାକୁରଙ୍କୁ ନିବେଦନ କରି ପ୍ରସାଦତକ ଧରି ଫେରିଥା'ନ୍ତା; ଏ ତ ଖାଲିଘଣ୍ଟି ଧରି ଫେରୁଛି ।

ସଙ୍ଗେ ସଙ୍ଗେ ଯାଇ ସ୍ୱାମୀଙ୍କୁ ସବୁକଥା ଜଣାଇଲେ । ଶୁଣି ଶୁଣି ସ୍ୱାମୀ ତାଙ୍କର ବ୍ୟଗ୍ର ହୋଇପଡ଼ିଲେ । ପ୍ରକୃତରେ ପିଲାଟା ହାତରେ ପାୟସ ନ ପଠାଇବା ଉଚିତ୍ ଥିଲା । ଆଜି ଠାକୁର ତ ଉପାସ ରହିଲେ; ପୁଣି ସବୁଠାରୁ ଖରାପ କଥା ହେଲା, ଅମୁଣିଆ ଦ୍ରବ୍ୟତକ ପୁଅ ଖାଇଦେବା । ଯେତେହେଲେ ସେ ପିଲା—ସେ ବା କ'ଣ ଜାଣେ !

ଭକ୍ତ ଅଲାଖି ବ୍ୟସ୍ତହୋଇ ନାନାପ୍ରକାର ଚିନ୍ତା କରୁ କରୁ ପୁଅ ଶୂନ୍ୟ ଘଣ୍ଟିଟି ଧରି ସେଠାରେ ପହଞ୍ଚିଲା । ତାକୁ ଦେଖୁ ଦେଖୁ ପିତା ଅଲାଖି ପଚାରିଲେ—"ଆରେ ପୁଅ ! ପାୟସତକ ଧରି ତୁ ଭୋଗ ଲଗାଇବାକୁ ଝିଅଁଙ୍କ ପାଖକୁ ଗଲୁ ଯେ, ସେ ଭୋଗ କ'ଣ ହେଲା ?"

ପୁଅ କହିଲା—"ତାକୁ ପରା ଠାକୁରେ ଖାଇଦେଲେ ।"

—"ଏଁ..., କ'ଣ କହୁଛୁ ତୁ ? ଠାକୁରେ ତାକୁ ଖାଇଦେଲେ ! ତୁ ଦେଖିଛୁ ଠାକୁର ତାକୁ ଖାଉଥିଲେ ? ନା ତୁ ତାକୁ ଖାଇଦେଇଛୁ ?"

—"ନା, ମୁଁ କାହିଁକି ଖାଇବି ? ନିଜେ ପରା ଠାକୁର ତାହା ଖାଇଦେଲେ । ତୁମେ ଯାଇ ପଚ୍ଚରନା ଠାକୁରଙ୍କୁ । ସେ ନିଜେ ଖାଇ କ'ଣ ନାହିଁ କରିବେ ଖାଇନାହାଁନ୍ତି ବୋଲି !"

ପୁଅକୁ ଆଉ କିଛି କହିଲେ ନାହିଁ । ମାତ୍ର ସେ ବିଶ୍ୱାସ କଲେନାହିଁ ପୁଅ କଥାକୁ । କିପରି ବା ବିଶ୍ୱାସ କରିବେ ? ସେ ନିଜେ ପ୍ରତିଦିନ ପାୟସ ଠାକୁରଙ୍କୁ ଭୋଗ ଲଗାଇଛନ୍ତି, କେବେ ତ ଠାକୁରେ ଖାଇଯିବାର ସେ ଦେଖିନାହାଁନ୍ତି । ମଣିଷଙ୍କ ଭଳି ଠାକୁର ପ୍ରସାଦ ଖାଇବା ନୂଆକଥା । ତାହାହେଲେ କ'ଣ ବିଲେଇଟାଏ ମନ୍ଦିର ଭିତରେ ଥିଲା, ସେ ଖାଇଦେଲା ?

ସେ ଦିନଟି ବଡ଼ ସନ୍ଦେହରେ କଟିଲା ଅଲାଖଙ୍କର । ତା' ଆରଦିନ ମଧ୍ୟ ତାଙ୍କୁ ଜ୍ୱର ସମ୍ପୂର୍ଣ୍ଣରୂପେ ଛାଡ଼ିଲା ନାହିଁ । ସେଦିନ ମଧ୍ୟ ଦିଅଁଙ୍କପାଇଁ ତାଙ୍କ ସ୍ତ୍ରୀ ପାୟସ ପ୍ରସ୍ତୁତ କଲେ । ତା'ପରେ ପୁଅକୁ କହିଲେ, ପାୟସ ନେଇ ଠାକୁରଙ୍କୁ ଭୋଗ ଲଗାଇଦେବୁ ଓ ଟିକିଏ କବାଟ ଆଉଜେଇ ଆଣିବୁ ! ଗତକାଲି ଯେଉଁଭଳି ଭାବରେ ପୁଅ ପ୍ରସାଦ ନୈବେଦ୍ୟ ଦେଇଥିଲା, ଠିକ୍ ସେହିଭଳି କଲା । ପାୟସପୂର୍ଣ୍ଣ ପାତ୍ରଟି ନେଇ ଦିଅଁଙ୍କ ଆଗରେ ଥୋଇଦେଇ କହିଲା, "ଠାକୁରେ ! ଆଜି ବି ବାପାଙ୍କୁ ଜ୍ୱର ଛାଡ଼ିନି, ତେଣୁ ମୁଁ ତୁମପାଇଁ ପାୟସ ଧରି ଆସିଛି । ତୁମେ ଏହି ପାୟସତକ ଖାଇଦିଅ ।"

ମନ୍ତ୍ର ନାହିଁ, ପୂଜା ନାହିଁ, ଚନ୍ଦନ ଫୁଲ ଦିଆଇନାହିଁ—କେବଳ ସେତିକି କହିଦେଇ କବାଟଟିକୁ ବନ୍ଦକରି ଆଣିଲା । ଦେହରେ ଅଳ୍ପ ଅଳ୍ପ ଜ୍ୱର ଥିଲେ ମଧ୍ୟ ଭକ୍ତ ଅଲାଖ ପୁଅ ପଛେ ପଛେ ଲୁଚି ଲୁଚି ଯାଇଥିଲେ । ପୁଅ ଦିଅଁଙ୍କୁ ସମ୍ବୋଧନ କରି କହି କବାଟ ଆଉଜେଇ ଆଣିଲାବେଳେ କବାଟ ଫାଙ୍କରେ ସେ ସ୍ପଷ୍ଟ ଦେଖିଲେ, ନିଜେ ଠାକୁର ପ୍ରସନ୍ନ ବଦନରେ ପାୟସତକ ଖାଉଛନ୍ତି । ସେ ନିଜର ଦୁଇହାତକୁ ଯୋଡ଼ି ଦେବତାଙ୍କୁ ସ୍ତୁତି କରି କହିଲେ, "ହେ ନୀଳଶୈଳନିଳୟ୍ୟାଚ୍ୟୁତ ଦୀନବନ୍ଧୁ ; ହେ ନୀଳମାଧବ କୃପାମ୍ବୁନିଧେ ! ମୋର ସମସ୍ତ ଅପରାଧ କ୍ଷମାକର । ମୋ'ପ୍ରତି ପ୍ରସନ୍ନ ହୁଅ ! ମୋର ସାମାନ୍ୟ ପ୍ରସାଦ ଗ୍ରହଣକରି ମୋତେ କୃତାର୍ଥ କର !"

ମାନବ ସ୍ୱରରେ ମାଧବ କହିଲେ—"ହେ ବ୍ରାହ୍ମଣ ! ନୀଳାଚଳରେ ଲୋକଗହଳି ବଢ଼ିବାରୁ ଗୁପ୍ତରେ ମୁଁ ତୁମ ଘରେ ଆସି ଅବସ୍ଥାନ କରୁଛି । ମୁଁ ତୁମର ଭକ୍ତିରେ, ଉପାସନାରେ ସନ୍ତୁଷ୍ଟ । ମୋତେ ଏହିପରି ଲୁଚାଇ ରଖ । ତୁମେ ବଞ୍ଚିଥିବା ପର୍ଯ୍ୟନ୍ତ ମୁଁ ଏହିଠାରେ ରହିବି । ଏହାପରେ ଏଠାରୁ ପୂର୍ବକୁ ପନ୍ଦର କୋଶ ଦୂରରେ ପ୍ରାଚୀ ନଦୀ କୂଳରେ ଥିବା ନିଆଳିରେ ରହିବି । ନୀଳାଚଳରେ ମୋର ଯେଉଁଭଳି ଯାତ୍ରା ହେଉଛି ସେଠାରେ ମଧ୍ୟ ସେହିଭଳି ହେବ । ତୁମ ବଂଶୀୟ ବ୍ରାହ୍ମଣ ସେଠାରେ ମୋତେ ପୂଜା କରିବେ । କିଛି କାଳ ସେଠାରେ ପୂଜା ପାଇଲା ପରେ ଅଠେଇଶି କୋଶ ପଶ୍ଚିମକୁ ଚିତ୍ରୋତ୍ପଳାର ଦକ୍ଷିଣ କୂଳରେ ମଣିନାଗୋତ୍ତର ପ୍ରଦେଶରେ ମୁଁ କଳ୍ପାବଧି-କାଳ ରହିବି । ମହାନଦୀ କୂଳରେ ସ୍ନାନ କରି ମାଘ ଶୁକ୍ଳ ଏକାଦଶୀରେ ଯେ ମୋତେ ଦର୍ଶନ କରିବ ସେ ଅନ୍ତେ ମୋ ସାନ୍ନିଧ୍ୟ ଲାଭ କରିବ । ଯେ ମୋତେ ଉପାସନା କରିବ ସେ ନୀଳାଦ୍ରିବିହାରୀଙ୍କ ଉପାସନାରେ ଫଳ ପାଇବ । ମୁଁ ଏବଂ ନୀଳାଦ୍ରିବିହାରୀ—ଏକ ଓ ଅଭିନ୍ନ ।"

ମହାପ୍ରଭୁ ତାଙ୍କ କଥା କହିସାରିବା ମାତ୍ରେ ବ୍ରାହ୍ମଣ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

× × ×

ଏଣେ ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ବଢ଼ାଯାଇଛି । ପୂଜାପଣ୍ଡା ଚକ୍ଷୁ ଧରି ଘଣ୍ଟି ବଜାଇ ବଜାଇ ଥକିଗଲେଣି । ଏ କ'ଣ···, ସବୁଦିନେ ମଧ୍ୟାହ୍ନ ଧୂପରେ ମହାପ୍ରଭୁ ଚକ୍ଷୁରେ ଦର୍ଶନ ଦେବାକୁ ବିଳମ୍ବ କରୁଛନ୍ତି କାହିଁକି ? ଆଜି ମଧ୍ୟ ବହୁ ସମୟ ଚକ୍ଷୁ ଧରି ବସିଲେ ବି ଦର୍ଶନ ମିଳୁନାହିଁ କାହିଁକି ? କ'ଣ ହେଉଛି ମହାପ୍ରଭୁଙ୍କର ? ମଧ୍ୟାହ୍ନ ଧୂପ ଗ୍ରହଣ କରିବାକୁ ଡେରି କରିବାର କାରଣ କ'ଣ ?

ଉତ୍ତର ଦେବ କିଏ ତାଙ୍କୁ ? ଯେଉଁଠି ମହାଲକ୍ଷ୍ମୀ ବୈଷ୍ଣବାଗ୍ନିରେ ରାନ୍ଧୁଛନ୍ତି—ମହାସୁଆରମାନେ ରତ୍ନସିଂହାସନ ପାଖକୁ ବୋହି ଆଣୁଛନ୍ତି—ଭୈରବୀ ଚକ୍ରରେ ନିବେଦିତ ହେଉଛି ଏବଂ ସେହି ନିବେଦିତ ସାମଗ୍ରୀକୁ ଭୈରବୀ ବିମଳା ମହାପ୍ରସାଦ ବୋଲି ଅନୁମୋଦିତ କରୁଛନ୍ତି, ତା'ର ମହିମା

ବିଷୟରେ କିଏ ବା କ'ଣ କହିବ ? ତଥାପି ଏହି କେତେ ଦିନ ହେବ ତାହା ଗ୍ରହଣ କରିବାରେ ମହାପ୍ରଭୁ ବିଳମ୍ବ କରୁଛନ୍ତି କାହିଁକି ?

ଅପେକ୍ଷା କରିଛନ୍ତି ଶୈବ, ଶାକ୍ତ, ବୈଷ୍ଣବାଦି ବିଭିନ୍ନ ପନ୍ଥୀମାନେ । ଅପେକ୍ଷା କରିଛନ୍ତି ସିଦ୍ଧମାନେ ଦେବତାମାନେ । କେତେବେଳେ ମଧ୍ୟାହ୍ନ ଧୂପ ସରିବ, ସେମାନେ ମହାପ୍ରସାଦ କଣିକାଏ ଲେଖାଁ ଗ୍ରହଣ କରି ନିଜକୁ ଧନ୍ୟ ମନେକରିବେ । କିନ୍ତୁ ମହାପ୍ରଭୁ ତାହା ଗ୍ରହଣ କଲେପରେ ତ ?

ଶୂନ୍ୟରେ ବୃଷଭ ଉପରେ ବସି ଶିବ ବଜାଉଛନ୍ତି ଡମ୍ବରୁ, ନାରଦ ବଜାଉଛନ୍ତି ବୀଣା, ବ୍ରହ୍ମା ଏକ ପରେ ଏକ ବୈଦିକ ମନ୍ତ୍ର ପଢ଼ି ଚାଲିଛନ୍ତି, ବିଷ୍ଣୁ ଛିଡ଼ା ହୋଇଛନ୍ତି କରପଦ୍ମ ଯୋଡ଼ି, ଗାଉଛନ୍ତି ଅପ୍‌ସରା, ଗନ୍ଧର୍ବଗଣ କହିଚାଲିଛନ୍ତି ମହାପ୍ରଭୁଙ୍କର ଦିବ୍ୟସ୍ତୁତି । ଆସ ମହାପ୍ରଭୁ ! ଗ୍ରହଣ କର ନୈବେଦ୍ୟ ସାମଗ୍ରୀ ମଧ୍ୟାହ୍ନ ଧୂପର ।

× × ×

ବ୍ରାହ୍ମଣ ଅଳାଖି ପ୍ରଣିପାତ କରି ଉଠି ଦେଖେ ତା'ର ମହାପ୍ରଭୁ ମାଧବ ଆଉ ସେଠାରେ ନାହାଁନ୍ତି । ଗୋଟିଏ ମୁହୂର୍ତ୍ତରେ ସେ ଉଭା ହୋଇ-ଯାଇଛନ୍ତି । ଖାଲି ଛିଡ଼ା ହୋଇଛନ୍ତି ପଥରର ମାଧବ ମୂର୍ତ୍ତି ।

× × ×

ହଠାତ୍ ଶ୍ରୀମନ୍ଦିରର ପୂଜାପଣ୍ଡାଙ୍କ ଚକ୍ଷୁରେ ଦେଖାଦେଲେ ମହାପ୍ରଭୁ । ସଙ୍ଗେ ସଙ୍ଗେ ସେ ତାହା ବୁଲାଇଦେଲେ । ଗ୍ରହଣ କଲେ ବିଶ୍ୱର ମଣିମା ନୈବେଦ୍ୟ ସାମଗ୍ରୀ । ଯେ ପର୍ଯ୍ୟନ୍ତ ମହାପ୍ରଭୁ ନୈବେଦ୍ୟ ଗ୍ରହଣ କରିନାହାଁନ୍ତି, ସେ ପର୍ଯ୍ୟନ୍ତ ଟେରା ପଡ଼ିଥାଏ । ଗରୁଡ଼ ସ୍ତମ୍ଭର ଆଗରେ ପଛରେ ଭକ୍ତମାନେ ଛିଡ଼ା ହୋଇଥା'ନ୍ତି; ସେମାନେ ଶୁଣୁଥା'ନ୍ତି ପୂଜାପଣ୍ଡାଙ୍କ ଘଣ୍ଟିର ଶବ୍ଦ । କେହି ବଡ଼ପାଟିରେ ତ କେହି ମନେ ମନେ ବୋଲି ଚାଲିଥା'ନ୍ତି ମହାପ୍ରଭୁଙ୍କ ସ୍ତବ-ସ୍ତୁତି ।

ବିଶ୍ୱର ମଣିମା ନୈବେଦ୍ୟ ଗ୍ରହଣ କରୁନାହାଁନ୍ତି କାହିଁକି ? ସେ କ'ଣ ଶ୍ରୀମନ୍ଦିରରେ ନାହାଁନ୍ତି ? ହେ ମହାପ୍ରଭୁ ! କୋଟି ଜଗତର ତୁମେ ହେଉଛ

ଈଶ୍ୱର । ଆମର ଭାଗ୍ୟ, ତୁମେ ନୀଳାଚଳରେ ବିଜେକରି ଲୀଳା ଲଗାଇଛ । ସବୁ ଧର୍ମର ଲୋକେ ତୁମରି ପାଖକୁ ଆସି ତୁମଠାରେ ତାଙ୍କ ଇଷ୍ଟଙ୍କୁ ଦର୍ଶନ କରି କୃତକୃତ୍ୟ ହୋଇ ଫେରିଯାଉଛନ୍ତି । ଗ୍ରହଣ କର ମହାପ୍ରଭୁ ! ଗ୍ରହଣ କର ମଧ୍ୟାହ୍ନ ଧୂପର ନୈବେଦ୍ୟ ।

ପୂଜାପଣ୍ଡାମାନେ ନୈବେଦ୍ୟ ସାମଗ୍ରୀକୁ ନିବେଦିତ କରିସାରିଲା ପରେ ଘଣ୍ଟି ବାଦନ ବନ୍ଦ କରିଦେଲେ । ମହାପ୍ରଭୁ ଗ୍ରହଣ କରିଛନ୍ତି ନୈବେଦ୍ୟ ସାମଗ୍ରୀ ଏହା ଜାଣି ଭକ୍ତମାନେ ଆନନ୍ଦରେ ପ୍ରଣିପାତ କଲେ । ଏକ ସମୟରେ ହଜାର ହଜାର ଭକ୍ତ ନିଜକୁ ଲୋଟାଇଦେଲେ ମହାପ୍ରଭୁଙ୍କ ପଦତଳେ । ସେତେବେଳେ ମହାପ୍ରଭୁଙ୍କ କଳା ଶ୍ରୀମୁଖରେ ହସ ଫୁଟିଉଠୁଥିଲା । ଝରି-ପଡ଼ୁଥିଲା ତାଙ୍କ ଅଧରରୁ କେରି କେରି ହୋଇ ପ୍ରଶାନ୍ତ ହାସଛଟା ।

ଏତିକବେଳେ କିଏ ଜଣେ ସୁଲଳିତ କଣ୍ଠରେ ଭକ୍ତ ଜୟଦେବଙ୍କ ରଚିତ ଗୀତଗୋବିନ୍ଦର ପଦଗୁଡ଼ିକ ଗାଇଉଠୁଥିଲେ "ଜୟ ଜଗଦୀଶ ହରେ ।"





# ଶ୍ରୀଜଗନ୍ନାଥ

—"ମଣିମା ! ଆଦେଶ କରନ୍ତୁ, ଆମ ସୈନ୍ୟ ସୁଲତାନ୍‌ଙ୍କ ସୈନ୍ୟଙ୍କୁ ଆକ୍ରମଣ କରିବେ । ତା' ନ ହେଲେ ଆମ ସୈନ୍ୟ ଅସୁବିଧାରେ ପଡ଼ିଯାଇ ପାରନ୍ତି । ଯଦି ଗୌଡ଼ର ସୁଲତାନ୍‌ଙ୍କ ସହାୟ୍ୟ କରିବା ପାଇଁ ଅନ୍ୟ କେଉଁ ପଡ଼ୋଶୀ ରାଜ୍ୟ ସୈନ୍ୟ ପଠାଏ ତେବେ ଗୁରୁତର ପରିସ୍ଥିତି ହେବ ।"

—"ଏହାଦ୍ୱାରା ଆମ ସୈନ୍ୟମାନଙ୍କ ମନରେ ଗ୍ଲାନି ଆସିବ-ନାହିଁ ତ ମହାସେନାପତି ? ଯେ ପର୍ଯ୍ୟନ୍ତ ମୁସଲମାନ ସୈନ୍ୟମାନେ ଆମକୁ ଆକ୍ରମଣ କରିନାହାଁନ୍ତି, ସେ ପର୍ଯ୍ୟନ୍ତ ଆମେ ତାଙ୍କୁ ଆକ୍ରମଣ କରିବା ନୀତିବିହୀନ କାର୍ଯ୍ୟ ବୋଲି ସୈନ୍ୟମାନେ ଭାବିବେ ନାହିଁ ତ ?"

—"ମଣିମା ! ସେଥିପାଇଁ ମୁଁ ମହାପ୍ରଭୁ ଜଗନ୍ନାଥଙ୍କ ଆରତି ସମୟରେ ଧର୍ମପତ୍ର ଚଢ଼ାଇଥିଲି । ସେହି ସମୟରେ ସେନାପତି, ମହାପଣ୍ଡିତ, ସାହାସ ମଲ୍ଲ ପ୍ରଭୃତି ଉପସ୍ଥିତ ଥିଲେ । ସମସ୍ତଙ୍କ ସମକ୍ଷରେ ଦେଖାଗଲା, ମହାପ୍ରଭୁଙ୍କ ଦକ୍ଷିଣକରରୁ ଆମେ ପ୍ରଥମେ ଆକ୍ରମଣ କରିବା ଚିଠାଟି ଫୁଲମାଳ ସହିତ ଖସିପଡ଼ିଲା । ସେଠାରେ ଉପସ୍ଥିତ ଥିବା ଆମ ସାମରିକ ସେନାପତିମାନେ ଓ ସୈନ୍ୟମାନେ ଜୟ ଜଗନ୍ନାଥ ଧ୍ୱନିରେ ସ୍ୱମତ ପ୍ରକାଶ କରିଥିଲେ । ତାହାପରେ ପ୍ରତି ସୈନ୍ୟଗୁଉଣୀରେ ଯେତେବେଳେ ଏହି କଥା ପ୍ରଚାର ହେଲା, ସେତେବେଳେ ସୈନ୍ୟମାନେ ଉଲ୍ଲସିତ ହୋଇ ଶ୍ରୀଜଗନ୍ନାଥଙ୍କ ଜୟ-ଜୟକାର ଧ୍ୱନି ଦେଇ ନାଚିଉଠିଥିଲେ । ଏହିସବୁ ଦେଖିସାରିଲା ପରେ ମୁଁ ମଣିମାଙ୍କୁ କେବଳ ସମ୍ବାଦ ଦେବାକୁ ଆସିଲି । ମୁଁ ଜାଣିଛି କଳିଙ୍ଗ ସେନାବାହିନୀଙ୍କ ମନୋଭାବ । କଳିଙ୍ଗର ସମ୍ରାଟ ମଣିମା ନୁହଁନ୍ତି; ସମ୍ରାଟ ହେଉଛନ୍ତି ତ୍ରିଭୁବନର ଅଧିକାରୀ ମହାପ୍ରଭୁ ଜଗନ୍ନାଥ । ମହାପ୍ରଭୁଙ୍କ ବିନା ଇଚ୍ଛାରେ ଆମ ସୈନ୍ୟମାନେ ଆଙ୍ଗୁଳେ ମଧ୍ୟ ଆଗେଇବେ ନାହିଁ, ଏହା ମୁଁ ଜାଣେ ।"

—"ମହାସେନାପତି ଶ୍ରୀକରଣ ସୁରୁ ! ପ୍ରକୃତରେ କ'ଣ ଶ୍ରୀଜଗନ୍ନାଥଙ୍କ ଶ୍ରୀକରରୁ ଆଜ୍ଞାପତ୍ର ଖସିପଡ଼ିଥିଲା ? ତୁମେ କେହି ସେଥିପାଇଁ କିଛି ଗୁପ୍ତ ବ୍ୟବସ୍ଥା କରି ନ ଥିଲ ?"

—"ନା ମଣିମା ! ସେଭଳି ଅନ୍ୟାୟ କାର୍ଯ୍ୟ କେହି କରିନାହାଁନ୍ତି । କେତେଦିନ ହେବ ଆମ ସୈନ୍ୟ ଓ ସୁଲତାନଙ୍କ ସୈନ୍ୟ ମୁହାଁମୁହିଁ ହୋଇ ରହିବା ପରେ କ'ଣ କରାଯିବ ତାହା ଚକ୍ରାକର ମହାପ୍ରଭୁଙ୍କ ଆଦେଶକୁ ଅପେକ୍ଷା କଲୁ । ଆକ୍ରମଣ କରିବୁ କି ନାହିଁ, ସେ ବିଷୟରେ ଲେଖି ସମସ୍ତଙ୍କ ଆଗରେ ଶ୍ରୀଜଗନ୍ନାଥଙ୍କ ଦକ୍ଷ କରରେ ଚଢ଼ାଇ ଦେଇଥିଲୁ । ସେହିସବୁ ପତ୍ର ଉପରେ ପୁଷ୍ପ ରଖାଯାଇଥିଲା । ଠିକ୍ ଆରତି ସମୟରେ ଦେଖାଗଲା ହଠାତ୍ ଆମେ ଆକ୍ରମଣ କରିବା ପତ୍ରଟି ଖସିପଡ଼ିଲା ।"

—"ସାଧୁ ମହାସେନାପତି ଶ୍ରୀକରଣ ସୁରୁ ! ତୁମେ ଉପଯୁକ୍ତ ପନ୍ଥା ଅବଲମ୍ବନ କରିଛ । ସେଥିପାଇଁ କନକ ଦୁର୍ଗାଙ୍କ ପାଖରେ ଚଢ଼ା ହୋଇଥିବା ଖଡ୍ଗଟି ମୁଁ ତୁମକୁ ଦାନ କରୁଛି । ଆଚ୍ଛା, ସୁଲତାନଙ୍କ ସୈନ୍ୟ ଛାଉଣିର କୌଣସି ସମ୍ବାଦ ପାଇଛ କି ?"

—"ଏହିମାତ୍ର ସମ୍ବାଦ ଆସିଛି, କଳିଙ୍ଗର ସେନାବାହିନୀ ଯେ ପର୍ଯ୍ୟନ୍ତ ଆଗକୁ ଆଗେଇନାହାଁନ୍ତି ସେ ପର୍ଯ୍ୟନ୍ତ ସେମାନେ ନୀରବ ରହିବେ । କିନ୍ତୁ ଏହି କେତେଦିନ ହେବ ସେମାନେ ନୀରବ ରହିବାଦ୍ୱାରା ସୈନ୍ୟମାନଙ୍କର ମନୋବଳ କ୍ରମେ ହ୍ରାସ ପାଇଆସୁଛି ।"

—"ତାହାହେଲେ କାଲି ପ୍ରଭାତରେ ଆମ ସୈନ୍ୟମାନେ ଆକ୍ରମଣ କରନ୍ତୁ ।"

—"ତାହା ହିଁ ମୁଁ ସ୍ଥିର କରିସାରିଛି । କେବଳ ମଣିମାଙ୍କର ଅନୁମୋଦନ ପାଇଁ ଆସିଥିଲି ।"

—"ମୋର ପିତା ଅନଙ୍ଗଭୀମଦେବଙ୍କଠାରୁ କଳିଙ୍ଗ ଭୂଖଣ୍ଡର ରାଜା ହେଉଛନ୍ତି ମହାପ୍ରଭୁ ଜଗନ୍ନାଥ । ଆମେ ତାଙ୍କର ରାଉତ ମାତ୍ର । ଶ୍ରୀଜଗନ୍ନାଥଙ୍କ ରାଜ୍ୟକୁ ରକ୍ଷା କରିବା ପ୍ରତ୍ୟେକ କଳିଙ୍ଗଙ୍କ କର୍ତ୍ତବ୍ୟ । ମୁଁ

ରାଜତ ହୋଇ ମହାପ୍ରଭୁ ଜଗନ୍ନାଥଙ୍କ ଆଦେଶ କେବଳ ପ୍ରଚାର କରିବ । ମୋର ପିତା ଇହଧାମ ତ୍ୟାଗ ପୂର୍ବରୁ ମୋତେ କହିଯାଇଛନ୍ତି, 'କାହା ଆଗରେ ପ୍ରକାଶ କିମ୍ବା ଧାରଣା କରିବୁ ନାହିଁ କଳିଙ୍ଗ ଭୂଖଣ୍ଡର ରାଜା ତୁ ବୋଲି । ଯେଉଁଦିନ ଏ ଧାରଣା ତୋ'ର ଆସିବ, ସେଦିନ ଏ ଦେଶ ଆଉ ତୋ'ର ହୋଇ ରହିବ ନାହିଁ । ସଙ୍ଗେ ସଙ୍ଗେ ମହାପ୍ରଭୁ ଆଉ ଜଣକୁ ତାଙ୍କ ଦେଶରେ ରାଉତଭାବେ ନିଯୁକ୍ତ କରିବେ ।' ତେଣୁ ମହାପ୍ରଭୁ ଯେତେବେଳେ ଆଦେଶ ଦେଇଛନ୍ତି ସେତେବେଳେ ମୁଁ କ'ଣ ନାସ୍ତି କରିପାରିବି ? ଯାଅ ମହାସେନାପତି ! କାଲି ପ୍ରଭାତରେ ସୁଲତାନଙ୍କ ସେନାବାହିନୀକୁ ଆକ୍ରମଣ କର । ମୁଁ ମଧ୍ୟ ପ୍ରସ୍ତୁତ ହେଉଛି ତୁମ ସହିତ ଯୋଗ ଦେବାପାଇଁ ।"

× × ×

ଦିଲ୍ଲୀର ଶାସନକର୍ତ୍ତା ନାସିରୁଦ୍ଦିନଙ୍କ ମୃତ୍ୟୁ ପରେ ତାଙ୍କ କନ୍ୟା ରିଜିୟା ସୁଲତାନା ହୋଇ ଭାରତର ସାମ୍ରାଜ୍ଞୀ ହେଲେ । ସେ ଚାରିବର୍ଷ ଶାସନ କଲାପରେ ଆଲାଉଦ୍ଦିନ ମାମୁଦଶାହା ଶାସନ ଗାଦିରେ ବସିଲେ । ସେହି ସମୟରେ ବଙ୍ଗର ଶାସକରୂପେ ତୁଘାନ ଖାଁ' ରହିଥିଲେ । କଳିଙ୍ଗର ଉତ୍ତରରେ ବଙ୍ଗଦେଶ । କଳିଙ୍ଗ ଜଗନ୍ନାଥର ଦେଶ । ମନ୍ତ୍ରୀ ବାସୁଦେବ ବାହିନୀପତି ଚୋଳଗଙ୍ଗଦେବଙ୍କୁ ଡାକିଆଣି ଉତ୍କଳରେ ରାଜା କରାଇଥିଲେ । ଚୋଳଗଙ୍ଗ ମହାପ୍ରଭୁ ଜଗନ୍ନାଥଙ୍କ ଦୟାରୁ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଅଧିକାର କରିଥିଲେ । ମହାପ୍ରଭୁଙ୍କପାଇଁ ସେ ନିର୍ମାଣ କରିଥିଲେ ଏକ ବିରାଟ ମନ୍ଦିର । ତାଙ୍କ ପରେ ତାଙ୍କ ପୁଅ କାମାର୍ଣ୍ଣବ କଳିଙ୍ଗର ରାଜସିଂହାସନରେ ବସିଲେ ସେ ଦଶବର୍ଷ ରାଜା ହୋଇ ଇହଧାମ ତ୍ୟାଗ କଲାପରେ ତାଙ୍କ ପୁଅ ରାଘବଦେବ ଅପୁତ୍ରିକ ଅବସ୍ଥାରେ ମରିଯିବାରୁ ତାଙ୍କ ଭାଇ ରାଜ ରାଜ ଦ୍ୱିତୀୟ ରାଜା ହେଲେ ଓ ତାଙ୍କ ପରେ ଅନଙ୍ଗଭୀମ ଶାସନଭାର ଗ୍ରହଣ କରିଥିଲେ । ତା'ପରେ ରାଜ ରାଜ ତୃତୀୟ ଆଦିଙ୍କ ପରେ ଅନଙ୍ଗଭୀମ ଦ୍ୱିତୀୟଙ୍କ ପୁଅ ନରସିଂହଦେବ ଓଡ଼ିଶାର ରାଜା ହେଲେ । ନରସିଂହଦେବଙ୍କ ପୂର୍ବରୁ ଚୋଳଗଙ୍ଗଦେବ ଯଦିଓ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ, ମାତ୍ର ପରେ ପରେ ବଙ୍ଗଦେଶ ମୁସଲମାନଙ୍କ ଅଧିକୃତ

ହୋଇଥିଲା । ତେଣୁ ଆଉଥରେ ବଙ୍ଗଦେଶର ଶାସନକର୍ତ୍ତା ସୁଲତାନଙ୍କ ସହିତ ଶକ୍ତି ପରୀକ୍ଷାପାଇଁ ନରସିଂହଦେବ ବଙ୍ଗ ଆକ୍ରମଣରେ ବାହାରିଲେ । ନରସିଂହଦେବ ବଙ୍ଗ ବିଜୟ ଉଦ୍ଦେଶ୍ୟରେ ଆସୁଥିବା ସମ୍ବାଦ ପାଇ ବଙ୍ଗର ସୁଲତାନ ତୁଘାନ ଖାଁ ନିଜ ସୀମାରେ ସୈନ୍ୟ ସମାବେଶ କରି ଅପେକ୍ଷା କଲେ କଳିଙ୍ଗ ରାଜାଙ୍କ ଆକ୍ରମଣକୁ ।

ଚୋଳଗଙ୍ଗଦେବ ଗଙ୍ଗବଂଶୀୟ । ତତ୍କାଳୀନ ରାଜା କର୍ଣ୍ଣକେଶରୀଙ୍କୁ ପରାସ୍ତ କରି ଉତ୍କଳ ସିଂହାସନ ଆରୋହଣପାଇଁ ବାସୁଦେବ ବାହିନୀପତି ତାଙ୍କୁ ଡାକି ଆଣିଥିଲେ । ମାତ୍ର ଚୋଳଗଙ୍ଗଙ୍କ ପରେ ଉତ୍କଳର ଲୋକେ ଗଙ୍ଗବଂଶୀୟଙ୍କୁ ଯଥେଷ୍ଟ ସମ୍ମାନ ଦେବାକୁ କୁଣ୍ଠିତ ହେଲେ । ତେଣୁ ଅନଙ୍ଗଭୀମଦେବ ନିଃସଙ୍କୋଚରେ ପ୍ରଚାର କଲେ ଏ ରାଜ୍ୟର ରାଜା ସେ ନୁହଁନ୍ତି, ରାଜା ହେଉଛନ୍ତି ପୁରୀର ବଡ଼ ଦେଉଳରେ ବସିଥିବା ମହାପ୍ରଭୁ ଜଗନ୍ନାଥ । ଶ୍ରୀଜଗନ୍ନାଥଙ୍କ ରାଜ୍ୟକୁ ଯଦି ଓଡ଼ିଆ ରକ୍ଷା ନ କରନ୍ତି, ତେବେ ନିନ୍ଦା ହେବ ମହାପ୍ରଭୁଙ୍କର । ସେ ହେଉଛନ୍ତି ଶ୍ରୀଜଗନ୍ନାଥଙ୍କର ଜଣେ ରାଉତ । ଯେ କେହି ଓଡ଼ିଶାକୁ ଦଖଲ କଲେ ତାଙ୍କୁ ଯଦି ସେ ରାଜା ବୋଲି ସ୍ୱୀକାର କରନ୍ତି, ତେବେ ରାଉତ ଭଳି ରହିବାରେ କିଛି ଅସୁବିଧା ହେବନାହିଁ । ଫଳରେ ଓଡ଼ିଆଙ୍କ ମଧ୍ୟରେ ନୂତନ ଉତ୍ତେଜନା ଦେଖାଦେଲା ।

× × ×

ଦୀର୍ଘଦିନ ହେବ ଉଭୟ ସୈନ୍ୟବାହିନୀ ମୁହାଁମୁହିଁ ହୋଇଥିଲେ ମଧ୍ୟ କେହି କାହାକୁ ଆକ୍ରମଣ ନ କରିବାଦ୍ୱାରା ଧୀରେ ଧୀରେ ଉଭୟ ପକ୍ଷର ସୈନ୍ୟମାନେ ଶିଥିଳ ହୋଇପଡ଼ୁଥିଲେ । ମାତ୍ର ଯେତେବେଳେ ଓଡ଼ିଶାବାହିନୀଙ୍କ ପକ୍ଷରୁ ଆକ୍ରମଣପାଇଁ ସ୍ଥିର ହେଲା, ସେତେବେଳେ ତତ୍ପର ହୋଇଉଠିଲେ ସୈନ୍ୟମାନେ । ଏହି ନିଷ୍ପତ୍ତି ଦିବାବସାନ ପରେ ରାତିରେ ହୋଇଥିବାରୁ ସୁଲତାନ ତୁଘାନ ଖାଁଙ୍କ ସୈନ୍ୟମାନେ କିଛି ଜାଣିପାରିଲେ ନାହିଁ ।

ପ୍ରଭାତର ବହୁ ପୂର୍ବରୁ ଖୁବ୍ ସତର୍କତାର ସହିତ ଗୁପ୍ତରେ କଳିଙ୍ଗ ସୈନ୍ୟମାନେ ମାଡ଼ିଚାଲିଲେ ସୁଲତାନ୍ ସୈନ୍ୟଙ୍କ ଆଡ଼କୁ । ସେତେବେଳକୁ

କେବଳ ରାତିରେ ପ୍ରହରୀ ଦେଉଥିବା ଜଗୁଆଳ ବ୍ୟତୀତ ଆଉ କେହି ଚେଇଁ ନ ଥିଲେ । ଏକ ସମୟରେ ପଚିଶ ହଜାର ହାତୀ, ବହୁ ସହସ୍ର ଘୋଡ଼ାସବାର ଓ ଅସଂଖ୍ୟ ପଦାତିକ ବୀରଦର୍ପରେ ମାଡ଼ିଯିବା ଦ୍ୱାରା ସୁଲତାନଙ୍କ ସୈନ୍ୟ ଉପରେ ଛତ୍ରଭଙ୍ଗ ଦେଲେ । ଜୟ ଜଗନ୍ନାଥ ଧ୍ୱନିରେ ଆକାଶ ପବନ ନିନାଦିତ ହୋଇପଡ଼ୁଥାଏ । ଆଗେଇ ଚାଲିଥା'ନ୍ତି ଓଡ଼ିଆ ସୈନ୍ୟ ଶ୍ରୀଜଗନ୍ନାଥଙ୍କର ଜୟ-ଜୟକାର ଧ୍ୱନି ଦେଇ । କେହି ଜଣେହେଲେ ସୁଲତାନଙ୍କର ଜୟ ବୋଲି କହୁ ନ ଥାଏ ।

ଗ୍ରାମ, ନଗର, ପାଟଣା ଲୁଣ୍ଠନ ହେଉଥାଏ ଓଡ଼ିଆ ସୈନ୍ୟଙ୍କ ଦ୍ୱାରା ମାତ୍ର ତାହା ତ କିଛି ଅଳ୍ପ ଗ୍ରାମ କିମ୍ବା ବାଟ ନୁହେଁ; ସମଗ୍ର ଲକ୍ଷ୍ନୌର ଓ ଲକ୍ଷ୍ନୌଭିତ୍ତି ବିଜୟ କରିବା ସାଧାରଣ କଥା ନୁହେଁ । ତାହା ଗୋଟିଏ ଦୁଇଟି ଦିନରେ ମଧ୍ୟ ସମ୍ଭବ ହୋଇପାରିବ ନାହିଁ । ତଥାପି ଜଗନ୍ନାଥଙ୍କର ଜୟ-ଜୟକାର ଧ୍ୱନି ଦେଇ ଉତ୍କଳ ସୈନ୍ୟବାହିନୀ ଆଗେଇ ଚାଲିଥା'ନ୍ତି । ହଠାତ୍ କଟାସିନ୍ ଠାରେ ଦେଖାଗଲା ସୁଲତାନଙ୍କ ବିପୁଳ ସୈନ୍ୟବାହିନୀ ଛିଡ଼ା ହୋଇଛନ୍ତି । ସାଗର ଭଳି ମାଡ଼ିଆସୁଥିବା ଉତ୍କଳର ଜଗନ୍ନାଥ ବାହିନୀ ଗୋଟିଏ ବିରାଟ ସେତୁ ପାଖରେ ଧକ୍କା ଖାଇଲେ । ସେହି ଧକ୍କାରେ ସୁଲତାନଙ୍କ ବହୁ ସୈନ୍ୟ ତଳେପଡ଼ିଲେ ନିଜକୁ ମୃତ୍ୟୁମୁଖରୁ ବଞ୍ଚାଇ ନ ପାରି ।

ବିଶେଷ ବାଧା ନ ପାଇ ଓଡ଼ିଆ ସୈନ୍ୟମାନେ ଯେଉଁଭଳି ଭାବେ ଆଗେଇ ଯାଉଥିଲେ, କଟାସିନଠାରେ ତାଙ୍କର ସେ ଆଗେଇବା ହଠାତ୍ ବନ୍ଦ ହୋଇଗଲା । ଓଡ଼ିଆ ସୈନ୍ୟଙ୍କ ପରାହତ କରିବାପାଇଁ ସୁଲତାନଙ୍କର ବିପୁଳ ବାହିନୀ ଦଣ୍ଡାୟମାନ । ପୁଣି ସମ୍ବାଦ ଆସୁଥାଏ, ମାଡ଼ିଆସୁଛନ୍ତି ଦିଲ୍ଲୀର ବିପୁଳ ସୈନ୍ୟବାହିନୀ କଳିଙ୍ଗ ସେନାଙ୍କୁ ପରାସ୍ତ କରି ଲକ୍ଷ୍ନୌର ଓ ଲକ୍ଷ୍ନୌଭିତ୍ତି ନୁହେଁ—ସମଗ୍ର କଳିଙ୍ଗକୁ ଅଧିକାର କରିନେବା ନିମନ୍ତେ । ପ୍ରକୃତରେ ଯଦି ଦିଲ୍ଲୀ ବାଦଶାହ ବିପୁଳ ବାହିନୀ ପଠା'ନ୍ତି, ତେବେ କଳିଙ୍ଗକୁ ରକ୍ଷା କରିବା ଦୁଃସାଧ୍ୟ ହୋଇଯିବ । ଏହା ଶୁଣି କଳିଙ୍ଗ ସୈନ୍ୟଙ୍କର ମନୋବଳ ଊଣା ହୋଇଆସିଲା ।

ହେ ଜଗନ୍ନାଥ ! ତୁମେ ହିଁ ଭରସା । କଳିଙ୍ଗ ଦେଶର ତୁମେ ହେଉଛ ସମ୍ରାଟ । ନରସିଂହଦେବ ତୁମର ରାଉତ । ମୁସଲମାନବାହିନୀ ଯଦି

କଳିଙ୍ଗ ଅଧିକାର କରନ୍ତି, ତେବେ କାଳ କାଳକୁ ତୁମର ନିନ୍ଦା ହେବ । ଲୋକେ କହିବେ, ଯେ ତା'ର ନିଜ ରାଜ୍ୟକୁ ରକ୍ଷା କରିପାରିଲା ନାହିଁ, ସେ କ'ଣ ଅନ୍ୟଙ୍କୁ ରକ୍ଷା କରିବ ?

ପ୍ରବଳ ପ୍ରତାପୀ ମହାରାଜା ନରସିଂହଦେବ ଲମ୍ବ ହୋଇ ସାଷ୍ଟାଙ୍ଗ ପ୍ରଣିପାତ କରୁଥା'ନ୍ତି ମହାପ୍ରଭୁ ଜଗନ୍ନାଥଙ୍କୁ । ମହାରାଜ ଯେତେବେଳେ ଯୁଦ୍ଧକୁ ଆସିଲେ, ସେତେବେଳେ ତାଙ୍କ ସହିତ ଜଗନ୍ନାଥଙ୍କର ପ୍ରତିମୂର୍ତ୍ତି ଆଣିଥିଲେ । ଶ୍ରୀମନ୍ଦିର ଭଳି ତାଙ୍କର ମଧ୍ୟ ସୈନ୍ୟଗୁଡ଼ିକ ମଧ୍ୟରେ ପୂଜା ଆରାଧନା ହୁଏ । ମହାସେନାପତି, ସେନାପତି, ମହାପଶାୟତି, ପଶାୟତି ଆଦି ଉଚ୍ଚ ପଦବୀଧାରୀ ସେନାଧ୍ୟକ୍ଷଙ୍କଠାରୁ ସାଧାରଣ ପାଇକ ପର୍ଯ୍ୟନ୍ତ ତାଙ୍କୁ ଦର୍ଶନ କରନ୍ତି । ଓଡ଼ିଶା ମୁଲକ ଯେତେବେଳେ ଜଗନ୍ନାଥଙ୍କର, ସେତେବେଳେ ସମସ୍ତ ସୈନ୍ୟଙ୍କ ସହିତ ସେ ଆସିବେ ନାହିଁ କିପରି ? ସେ ନ ଆସିଲେ କ'ଣ କଳିଙ୍ଗ ସୈନ୍ୟବାହିନୀର ମନୋବଳ ଦୃଢ଼ ରହିବ ?

ହେ ଜଗନ୍ନାଥ ! ତୁମେ ଯେଉଁଭଳି ହିନ୍ଦୁର ଦେବତା, ସେହିଭଳି ମୁସଲମାନର । କିନ୍ତୁ ଏଠି ମୁସଲମାନ ବିରୁଦ୍ଧରେ ହିନ୍ଦୁ ଆସୁନାହିଁ । ଆସିଛନ୍ତି ତୁମ ବାହିନୀ ତୁମ ଦେଶପାଇଁ । ତୁମେ ମୁସଲମାନର ଦେବତା ଆଲ୍ଲା । ତା' ନ ହୋଇଥିଲେ, ମୁସଲମାନର ସେହି ପବିତ୍ର 'ଇଦ୍‌କାଗ୍ରନ୍ଥ' ତୁମ ମୁଖରେ ଅଧରରୂପେ ଚର୍ଚ୍ଚିତ ହୋଇ ନ ଥାନ୍ତା କିମ୍ବା ତୁମେ ମୁସଲମାନଙ୍କ ଭଳି ଫାଲ୍‌ଠା ମାରି ସିଂହାସନ ଉପରେ ବସନ୍ତ ନାହିଁ । ତଥାପି ତୁମେ ତୁମ ସୈନ୍ୟଙ୍କୁ ରକ୍ଷାକରି ବିଜୟୀ କର ' ଉତ୍କଳ ଦେଶ-ଜାତି ତୁମର; ତୁମେ ନ ରଖିଲେ ଆଉ କିଏ ରଖିବ ?

ଧାର ଧାର ହୋଇ ଲୁହ ବହିଯାଉଥାଏ ମହାରାଜା ନରସିଂହଦେବଙ୍କ ଆଖିରୁ । ସେ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ଆଗରେ ଲମ୍ବ ହୋଇ ଶୋଇଥା'ନ୍ତି । ତାଙ୍କର ମନ-ଧ୍ୟାନ ସବୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଅର୍ପିତ । ତା' ନ ହେଲେ ହାରିଯିବା ସାର ହେବ ।

ହଠାତ୍ ସେ ଶୁଣିଲେ, "ରେ ରାଉତ ! ମୁଁ ଯେତେବେଳେ ତୋ ସଙ୍ଗରେ ଅଛି ତୁ ଭୟ କରୁଛୁ କାହାକୁ ? ଯେ ପର୍ଯ୍ୟନ୍ତ ତୋ ସହିତ

ଓଡ଼ିଆ ଜାତି ମୋ ପାଖରେ ତୁମ ସମସ୍ତ ଅର୍ପଣ କରିଥିବ, ସେ ପର୍ଯ୍ୟନ୍ତ ସେ ଜାତିର କେଶ ପର୍ଯ୍ୟନ୍ତ କେହି ସ୍ପର୍ଶ କରିପାରିବ ନାହିଁ । କାଲି ମୁଁ ଓ ମୋ ବଡ଼ଭାଇ ଦୁହେଁ ଦୁଇଟି ଘୋଡ଼ା ଚଢ଼ି ଓଡ଼ିଆ ସୈନ୍ୟବାହିନୀର ଆଗରେ ଚାଲିବୁ । କାହାରି ସାଧ ନାହିଁ ଓଡ଼ିଆ ସୈନ୍ୟବାହିନୀର ଗତିକୁ ରୋକି ପାରିବ । ଏ ଯୁଦ୍ଧରେ ଗୌଡ଼ ଓ ରାଢ଼ ଏହି ଦୁଇ ଦେଶକୁ ଓଡ଼ିଆ ପାଇକମାନେ ଜୟ କରିବେ ।"

ତତ୍କ୍ଷଣାତ୍ ମୁଣ୍ଡଟେକି ଚାହିଁଲେ ଜଗନ୍ନାଥଙ୍କ ରାଉତ ନରସିଂହଦେବ । ତାଙ୍କ ସମ୍ମୁଖରେ ସ୍ୱର୍ଣ୍ଣ ସିଂହାସନ ଉପରେ ବାହୁ ପ୍ରସାରି ବସିରହିଛନ୍ତି ମହାପ୍ରଭୁ ଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରା । ତାଙ୍କୁ ଦର୍ଶନ କରି କଇଁ କଇଁ ହୋଇ କାନ୍ଦିଉଠିଲେ ସେ । "ହେ ମହାପ୍ରଭୁ ! ସତରେ କ'ଣ ତୁ ଓଡ଼ିଆ ସୈନ୍ୟବାହିନୀକୁ—ଓଡ଼ିଆ ଜାତିକୁ ବିଜୟୀ କରିବୁ ?"

ହଠାତ୍ ଶ୍ରୀଜଗନ୍ନାଥଙ୍କ ମୁଣ୍ଡରୁ ଖସିପଡ଼ିଲା ତୁଳସୀ ଗୁଚ୍ଛ । ମହାରାଜ ନରସିଂହଦେବ ତତ୍କ୍ଷଣାତ୍ ଧୀରେ ଉଠି ସେହି ତୁଳସୀ ଗୁଚ୍ଛକୁ ସମ୍ମାନର ସହିତ ହାତରେ ଧରି ମୁଣ୍ଡରେ ମାରିଲେ । "ହେ ମହାପ୍ରଭୁ ! ତୋ ରାଉତକୁ, ତୋ ଜାତିକୁ ତୁ ସଦୟ ହୁଅ । ବେଦର ତୁ ହେଉଛୁ ପୁରୁଷ—ବ୍ରହ୍ମ । ତନ୍ତ୍ରରେ ତୁ ଦକ୍ଷିଣ କାଳୀ, ବଳଭଦ୍ର ମହାସରସ୍ୱତୀ, ଦେବୀ ସୁଭଦ୍ରା ଲକ୍ଷ୍ମୀ । ଜୈନମାନେ ତୁମକୁ ଧାରଣା କରନ୍ତି, ସମ୍ୟକ ଜ୍ଞାନ, ସମ୍ୟକ ଚରିତ, ସମ୍ୟକ ଦୃଷ୍ଟି । ବୌଦ୍ଧମାନେ ତୁମକୁ ବୁଦ୍ଧ-ଧର୍ମ-ସଂଘ ବୋଲି ଭାବି ନତମସ୍ତକ ହୁଅନ୍ତି । ବଜ୍ରଯାନୀ ପ୍ରଚାର କରନ୍ତି ତୁମେ ତାଙ୍କର ପରମବଜ୍ରୀ, ବଜ୍ରୋଦକ, ବଜ୍ରେଶ୍ୱରୀ । ସେହିଭଳି ଶୈବମାନେ ତୁମକୁ ପ୍ରଣାମ ଜଣାନ୍ତି ତୁମେ ତାଙ୍କର ପଶୁ-ପଶୁପତି-ପାଶ । ଆଉ ଦଳେ ଶୈବ କହନ୍ତି ତୁମେ ତାଙ୍କର ଶିବ-ବିନ୍ଦୁ-ଶକ୍ତି । ବୈଷ୍ଣବମାନେ ଘୋଷଣା କରନ୍ତି ତୁମେ ଶ୍ରୀକୃଷ୍ଣ-ବଳରାମ-ସୁଭଦ୍ରା । ଗାଣପତ୍ୟମାନେ ତୁମକୁ ନମସ୍କାର କରନ୍ତି ଏବଂ ଗଜପତି-ହରିଦ୍ରା, ଗଣପତି-ମାତଙ୍ଗୀ ବୋଲି ସମ୍ବୋଧନ କରି । ସେହିଭଳି ତୁମେ ଉତ୍କଳର ଜଗନ୍ନାଥ, କଳିଙ୍ଗର ଗୋକର୍ଣ୍ଣେଶ୍ୱର, କୋଶଳର ସ୍ତମ୍ଭେଶ୍ୱରୀଙ୍କ ସମନ୍ୱୟ ଓ ବିବର୍ତ୍ତନ ।

ହେ ଜଗତର ନାଥ ଜଗନ୍ନାଥ ! ତୁମେ ସବୁ ଧର୍ମ ସବୁ ପନ୍ଥାର ଆଧାର । ତେଣୁ ସୌରମାନେ କହନ୍ତି, ତୁମେ ତାଙ୍କର ଦେବତା ସୂର୍ଯ୍ୟଙ୍କର ତ୍ରିକାଳ—ରାତ୍ରି-ଦିବସ-ସନ୍ଧ୍ୟା ରୂପେ ଅବସ୍ଥାନ କରନ୍ତ । ବ୍ରାହ୍ମଣ୍ୟ ଧର୍ମରେ ତୁମେ ସତ୍ତ୍ୱ-ରଜ-ତମ । ପୁଣି ସେମାନେ ତୁମକୁ ସୃଷ୍ଟି-ଲୟ-ସ୍ଥିତିର ପ୍ରତୀକ ରୂପେ ଧାରଣା କରନ୍ତି । ବେଦାନ୍ତର ତୁମେ ଜାଗ୍ରତ-ସ୍ୱପ୍ନ-ସୁଷୁପ୍ତି ଭାବେ ଓଁ-କାରର ଅ-ଉ-ମ ।

ମହାପ୍ରଭୁ ! ମୁଁ ତୋ'ର ଦେଶରେ ତୋର ପାଣି ପବନରେ ଜନ୍ମ । କେବେ କେଉଁ କାଳେ ଆମ ବଂଶ ଦକ୍ଷିଣ କଳଙ୍ଗରୁ ଆସିଥିଲେ । ସେହିଭଳି ଦେଖିଲେ ଶିକ୍ଷିତ ହିନ୍ଦୁଙ୍କ କଥାକୁ କିଏ ପଚାରେ । ଆଦିବାସୀମାନେ ମଧ୍ୟ ହଜାର ହଜାର ବର୍ଷ ପୂର୍ବରୁ ଆସି ଏ ଭୂଇଁରେ ବସତି ସ୍ଥାପନ କରିଛନ୍ତି । ତେଣୁ ମୋତେ ତୁ ତୋ ଦେଶର ଲୋକ ଭାବେ ଗ୍ରହଣ କରିବୁ । ମଣିଷ ମାନେ ହିଁ ଦୋଷ ରହିଛି । ସବୁ ଦୋଷକୁ କ୍ଷମା ଦେବୁ । କିଏ ତୋତେ ଚିହ୍ନୁ ବା ନ ଚିହ୍ନୁ ମୁଁ ଚିହ୍ନିଛି । ତୁ ସେହି ଶେଷଶାୟୀମାନଙ୍କର ଶ୍ରୀବିଷ୍ଣୁ-ଶେଷଦେବ-ଶ୍ରୀଦେବୀ । ଯୋଗୀମାନେ ଧାରଣା କରନ୍ତି, ତମେ ହେଉଛ ଇଡ଼ା-ପିଙ୍ଗଳା-ସୁଷୁମ୍ନା । ଅଣାକାର୍‌ବାଦୀମାନେ କହନ୍ତି, ତୁମେ ହେଉଛ ନିରଞ୍ଜନ-ଶୂନ୍ୟ-ଜ୍ୟୋତି । ଭଗବତ୍ ଗୀତା ପ୍ରଚାର କରେ, ତୁମେ ଉତ୍ତମ ପୁରୁଷ-ଅକ୍ଷର ପୁରୁଷ-କ୍ଷର ପୁରୁଷ ।

ମୋର...ତୋ ରାଜ୍ୟର ସମସ୍ତ ଅପରାଧ କ୍ଷମାକର ମହାପ୍ରଭୁ ! ସମସ୍ତ ଅପରାଧ କ୍ଷମାକର । ତୋ ଦେଶ ଜାତିକୁ ବଳଶାଳୀକର ବିଜୟୀ କର ।

ହଠାତ୍ ନରସିଂହଦେବ ଶୁଣିଲେ କିଏ ଜଣେ ତାଙ୍କର ସମ୍ମୁଖରୁ ଉଚ୍ଚ ସ୍ୱରରେ ଶଙ୍ଖ ବଜାଉଛନ୍ତି । ସେହି ନିନାଦ ତାଙ୍କ କର୍ଣ୍ଣରେ ପ୍ରବେଶ କଲା ମାତ୍ରେ ଦେହରେ ଭରିଯାଉଛି ଆନନ୍ଦ—ଅସୀମ ବଳ । ସେ ଆଖି ଖୋଲି ଅନାଇଲେ, ଆଉ କେହି ନାହାଁନ୍ତି । ସିଂହାସନ ଉପରେ ବସିଛନ୍ତି ଦେଶ ଜାତିର ରକ୍ଷକ ମହାପ୍ରଭୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ।

ହୃଦୟର ସମସ୍ତ ଦୁଃଖ, ସମସ୍ତ ଆବେଗ ପ୍ରକାଶ କରିସାରିଲା ପରେ ମହାରାଜା ନରସିଂହଦେବ ଉଠିଲେ । ଦ୍ୱାର ବନ୍ଦକରି ସେ ମହାପ୍ରଭୁଙ୍କୁ

ଦର୍ଶନ କରୁଥିଲେ । ବାହାରେ ଦ୍ୱାରକୁ ଜଗି ରହିଛନ୍ତି ପ୍ରହରୀ । ସେ ଦ୍ୱାର ଖୋଲିଦେଲେ । ଦ୍ୱାରଦେଶରେ କେବଳ ରକ୍ଷୀ ନୁହେଁ, ମହାସେନାପତିମାନେ ଉପସ୍ଥିତ । ଏକ ସ୍ୱରରେ ସମସ୍ତେ ବ୍ୟକ୍ତ କଲେ—"ଆମେ ସ୍ଥିର କରିଛୁ ସୁଲତାନଙ୍କ ସେନାବାହିନୀ ଉପରେ ଝାମ୍ପ ଦେବାପାଇଁ । ଦିଲ୍ଲୀରୁ କୌଣସି ସାହାଯ୍ୟ ଆସିବା ପୂର୍ବରୁ ଆମେ ଶେଷଥର ପାଇଁ ତାଙ୍କୁ ଆକ୍ରମଣ କରିବୁ ।"

କୌଣସି ଚିନ୍ତା ନ କର ନରସିଂହଦେବ କହିଲେ—"ଜଗନ୍ନାଥ ତୁମକୁ ଭରସା ହୁଅନ୍ତୁ, ତୁମେ ସଂଗ୍ରାମରେ ବିଜୟୀ ହୁଅ । ଜୟ...... ଜଗନ୍ନାଥଙ୍କର ଜୟ, ମହାପ୍ରଭୁ ବଳଦେବଙ୍କର ଜୟ, ମାତା ସୁଭଦ୍ରାଙ୍କର ଜୟ...... ।"

ଜଗନ୍ନାଥଙ୍କ ନାମ ଉଚ୍ଚାରଣ କରିବାଦ୍ୱାରା ଓଡ଼ିଆ ପାଇକର ଦେହରେ ଅସୀମ ବଳ ଖେଳିଗଲା । ସେମାନେ ମନେକଲେ ରାଢ଼ ଓ ଗୌଡ଼ ଦେଶର ସୈନ୍ୟମାନେ ତାଙ୍କ ପାଖରେ ସାମାନ୍ୟ ମାତ୍ର । ସମୁଦ୍ରର ଗୋଟିଏ ଲହରରେ, ଗୋଟିଏ ଧକ୍କାରେ ଯେପରି ବାଲି ବନ୍ଧ ନିଶ୍ଚିହ୍ନ ହୋଇଯାଏ, ସେହିଭଳି ଓଡ଼ିଆ ସୈନ୍ୟଙ୍କ ପ୍ରବଳ ଆକ୍ରମଣରେ ସୁଲତାନଙ୍କ ସୈନ୍ୟମାନେ ଧରାଶାୟୀ ହେବେ । କାହାର ସାଧ୍ୟ ନାହିଁ ତାଙ୍କୁ ଶ୍ରୀଜଗନ୍ନାଥଙ୍କ ସୈନ୍ୟବାହିନୀର କରାଳ କବଳରୁ ରକ୍ଷା କରିପାରିବ ।

ଉତ୍କଳୀୟ ସୈନ୍ୟମାନଙ୍କ ଜୟ ଜଗନ୍ନାଥ ଧ୍ୱନି ବଙ୍ଗ ସୁଲତାନଙ୍କ ସୈନ୍ୟମାନେ ଶୁଣିବାକୁ ପାଇଲେ । କେତେଦିନ ଧରି ମାଡ଼ି ଆସୁଥିବା ଉତ୍କଳୀୟ ସୈନ୍ୟବାହିନୀ ହଠାତ୍ ତାଙ୍କ ବାଧାରେ ଆଉ ଅଗ୍ରସର ହୋଇପାରି ନ ଥିଲେ । ଗୁପ୍ତଚର ସମ୍ବାଦ ଦେଇଥିଲା, ଉତ୍କଳୀୟ ସୈନ୍ୟ-ବାହିନୀରେ ପ୍ରସ୍ତୁର ହୋଇଯାଇଛି, ଦିଲ୍ଲୀର ବିପୁଳ ସୈନ୍ୟ ଗୌଡ଼ ଓ ରାଢ଼ ଦେଶକୁ ରକ୍ଷା କରିବାକୁ ମାଡ଼ି ଆସୁଛନ୍ତି । ଏହା ଶୁଣି ଉତ୍କଳୀୟ ସୈନ୍ୟମାନେ ପ୍ରମାଦ ଗଣୁଛନ୍ତି । ସମ୍ଭବତଃ ଦିନେ-ଦୁଇଦିନ ମଧ୍ୟରେ ସେମାନେ ଫେରିଯିବେ କଳିଙ୍ଗ । ଏ ସମ୍ବାଦ ପାଇ ତୁଘାନ ଖାଁ ଯେଉଁଭଳି ଆନନ୍ଦିତ ହେଲା, ସେହିଭଳି ଆନନ୍ଦିତ ହେଲେ ତାଙ୍କର ସୈନ୍ୟ ସେନାପତିମାନେ । ତଥାପି ଉତ୍କଳର ବିରାଟ ସୈନ୍ୟବାହିନୀକୁ ଆକ୍ରମଣ

କରିବାକୁ ସେମାନେ ଉଚିତ୍ ମନେକଲେ ନାହିଁ । ଯଦି ସେମାନଙ୍କ ଆଡ଼ୁ ଆକ୍ରମଣ ହୁଏ ତେବେ ଉଚିତ୍ ଜବାବ୍ ଦିଆଯିବ । ତାହାଛଡ଼ା ଦିଲ୍ଲୀର ବାଦ୍‌ଶାହଙ୍କ ପାଖକୁ ସମ୍ବାଦ ପଠାଯାଇଛି । ସେଠାରୁ ଯଦି କିଛି ସୈନ୍ୟ ଆସନ୍ତି ତେବେ ଉତ୍କଳୀୟ ସୈନ୍ୟଙ୍କୁ ଘଉଡ଼ାଇ ଦେବାରେ ବେଶୀ କିଛି ଅସୁବିଧା ହେବ ନାହିଁ । ସେଥିପାଇଁ ସେମାନେ ଧୈର୍ଯ୍ୟର ସହିତ ଅପେକ୍ଷା କରିଥିଲେ । କିନ୍ତୁ ହଠାତ୍ ଉତ୍କଳୀୟ ବାହିନୀର ଜୟ ଜଗନ୍ନାଥ ଧ୍ୱନି ତାଙ୍କୁ ବିବ୍ରତ କରିପକାଇଲା । ସମସ୍ତେ ଅନୁଭବ କଲେ ନିଶ୍ଚୟ ଉତ୍କଳରୁ ବିପୁଳ ସୈନ୍ୟ ଆସିଗଲେଣି ପ୍ରାୟ; ତେଣୁ ନରସିଂହଦେବଙ୍କ ସୈନ୍ୟବାହିନୀ ଜୟ ଜଗନ୍ନାଥ ଧ୍ୱନି ଦେଇ ଆନନ୍ଦିତ ହେଉଛନ୍ତି ।

ମୁସଲମାନ ସୈନ୍ୟମାନେ ପାଲଟା ଧ୍ୱନିରେ ଆଲ୍ଲାଙ୍କ ଜୟ-ଜୟକାର ମୁଖରେ ତୋଳନ୍ତେ, କିନ୍ତୁ ରାଢ଼ ଓ ଗୌଡ଼ ଦେଶର ବହୁ ହିନ୍ଦୁ ସେନା ସେମାନଙ୍କ ମଧ୍ୟରେ ଅଛନ୍ତି; ତେଣୁ ଆଲ୍ଲାଙ୍କ ନାମରେ ଧ୍ୱନି ଦେବା ଅସୁବିଧା । ଯଦି ପ୍ରକୃତରେ ଉତ୍କଳରୁ ବିପୁଳ ସୈନ୍ୟବାହିନୀ ମାଡ଼ିଆସୁଥିବେ, ତେବେ ତାଙ୍କୁ ପ୍ରତିରୋଧ କିଭଳି କରାଯିବ ସେ ବିଷୟରେ ଚିନ୍ତା କରିବାକୁ ଲାଗିଲେ ତୁଘାନ ଖାଁ ।

—"ହେ ଆଲ୍ଲା ! ତୁମେ ହିମତ୍ ଦିଅ । ଆମ ସୈନ୍ୟ ଉତ୍କଳୀୟ ସୈନ୍ୟବାହିନୀକୁ ପରାଭୂତ କରୁ । ତା' ନ ହେଲେ ଅପମାନ ହେବ ମୁସଲମାନ ଜାତିକୁ ।"

ନବାବ୍ ତୁଘାନ ଖାଁ' ଆଦେଶ ଦେଲେ ପ୍ରତ୍ୟେକ ପ୍ରସ୍ତୁତ ହୋଇ ରହିବାକୁ । ପ୍ରତ୍ୟୁଷରୁ ଯଦି ଉତ୍କଳୀୟ ବାହିନୀ ଆକ୍ରମଣ କରନ୍ତି, ତେବେ ମୁହୂର୍ତ୍ତେ ଡେରି ନ କରି ପ୍ରତିଆକ୍ରମଣ କରାଯିବ । ଖବରଦାର ! କେହି ଯେପରି ନିଜ କର୍ତ୍ତବ୍ୟରେ ଅବହେଳା ନ କରନ୍ତି । ଏଥର ନିଶ୍ଚିତଭାବେ କଳିଙ୍ଗବାହିନୀ ପରାସ୍ତ ହେବେ । ସେମାନଙ୍କର ମନୋବଳ ଭାଙ୍ଗି ଯାଇଛି । ବୋଧହୁଏ ନରସିଂହଦେବ ତାଙ୍କ ମନକୁ ଦୃଢ଼ କରିବାପାଇଁ ଜୟ ଜଗନ୍ନାଥ ଧ୍ୱନି ଦିଆଉଛନ୍ତି ।

ରାତି ପାହୁ ନ ପାହୁଣୁ ମୁସଲମାନ ସୈନ୍ୟମାନେ ନମାଜ କରିବାକୁ ବ୍ୟସ୍ତ ହୋଇପଡ଼ିଲେ; ଏହି ସମୟରେ ରାଢ଼ ଓ ଗୌଡ଼ ଦେଶର ହିନ୍ଦୁ ବାହିନୀ

ଜଗିରହିଲେ ଅସ୍ତ୍ର ଧରି । ମାତ୍ର କେତୋଟି ମୂହୂର୍ତ୍ତ କ'ଣ ସେମାନେ ସମ୍ଭାଳି ନେଇ ପାରିବେ ନାହିଁ ? ସେମାନେ କ'ଣ ଲଢ଼ି ପାରିବେ ନାହିଁ ଅଳ୍ପକାଳ ସମୟ କଳିଙ୍ଗବାହିନୀ ସହିତ ?

ମୁଲ୍ଲା ନମାଜ ଧ୍ୱନି ଧୀର ଗମ୍ଭୀର ସ୍ୱରରେ ଦେଇ ଓହ୍ଲାଇ ଆସୁଛନ୍ତି ଉଚ୍ଚ ସ୍ଥାନରୁ । ମୁସଲମାନ ସୈନ୍ୟମାନେ ନମାଜ କରୁଥା'ନ୍ତି ଆଲ୍ଲାଙ୍କ ନାମ କହି । ହଠାତ୍ ଜୟ ଜଗନ୍ନାଥ ଧ୍ୱନିରେ ମୁଖରିତ ହୋଇଗଲା କଟାସିନ ଯୁଦ୍ଧକ୍ଷେତ୍ର । ହଠାତ୍ ମହାସେନାପତି ପରମର୍ଦ୍ଦିଦେବ ଉତ୍କଳୀୟ ସୈନ୍ୟଙ୍କୁ କହିଉଠିଲେ—"ପାଇକମାନେ ! ବର୍ତ୍ତମାନ ଶତ୍ରୁପକ୍ଷ ତାଙ୍କ ଈଶ୍ୱରଙ୍କୁ ଆଖି ବୁଜି ଯୋଡ଼ହସ୍ତରେ ପ୍ରଣାମ କରୁଛି । ଏ ସମୟରେ ଆକ୍ରମଣ କରିବା କାପୁରୁଷତା ହେବ । ତେଣୁ ଅଳ୍ପ ସମୟ ଅପେକ୍ଷା କରାଯାଉ ।"

ପରମର୍ଦ୍ଦିଦେବ ଖାଲି ମହାସେନାପତି ନୁହନ୍ତି, ସେ ଅନଙ୍ଗଭୀମଦେବଙ୍କ ଜାମାତା । ତାଙ୍କ କଥାକୁ ଅବଜ୍ଞା କରିବା ଅପରାଧ । ନୀରବରେ ଛିଡ଼ାହୋଇଗଲେ ଅସ୍ତ୍ର ଧରି କଳିଙ୍ଗବାହିନୀ । ପ୍ରକୃତରେ ଭଗବାନଙ୍କୁ ପ୍ରାର୍ଥନା କରୁଥିବା ସମୟରେ ସେ ଯେ ହେଉ ନା କାହିଁକି, ତାକୁ ଆକ୍ରମଣ କରିବା କାପୁରୁଷତା । ମାତ୍ର ଗଡ଼ ସୈନ୍ୟବାହିନୀଙ୍କ ଆଡ଼ୁ ଛୁଟିଆସିଲା କେତୋଟି ଶର କଳିଙ୍ଗ ସେନାବାହିନୀଙ୍କ ଆଡ଼କୁ । ଆଗରେ ଗଜାରୋହୀ ଥିଲେ; ଗଜ ଉପରେ ବସିଥିବା ମହନ୍ତ ଓ ରାଉତଙ୍କ ଦେହରେ ସେହି ଶର ବସି କେତେକଙ୍କୁ ଧରାଶାୟୀ କଲା ଓ କେତେକଙ୍କୁ ଆଘାତ ଦେଲା ।

ଏହାସତ୍ତ୍ୱେ କ'ଣ କଳିଙ୍ଗବାହିନୀ ନୀରବରେ ଛିଡ଼ାହୋଇ ରହିବେ ? ହଜାର ହଜାର ଗଜାରୋହୀ ବାହିନୀ ମାଡ଼ିଗଲେ ଆଗକୁ । ଗଡ଼ ଓ ଗୌଡ଼ର କେତେ ହିନ୍ଦୁସେନା ଅଛନ୍ତି ଯେ ତାଙ୍କୁ ପ୍ରତିରୋଧ କରିବେ ?

ମୁସଲମାନ ସେନାଙ୍କର ନମାଜ ସରିଆସିଥିଲା । ଗଡ଼ ଓ ଗୌଡ଼ର ହିନ୍ଦୁମାନେ ପ୍ରାଣପଣେ ଚେଷ୍ଟା କରୁଥିଲେ କଳିଙ୍ଗସେନାଙ୍କ ଗତିରୋଧ କରିବା ନିମିତ୍ତ । ତାଙ୍କ ସହିତ ଯୋଗଦେଲେ ମୁସଲମାନ ବାହିନୀ । ଲାଗିଗଲା ତୁମୁଳ ଯୁଦ୍ଧ । କଳିଙ୍ଗବାହିନୀର ଗଜାରୋହୀମାନେ ଗଜକୁ ଅଙ୍କୁଶ ପ୍ରହାର କରି ଆଗେଇନେଲେ । ବଙ୍ଗ ସୁଲତାନଙ୍କର କେତୋଟି ମାତ୍ର ହାତୀ ଥିଲେ ।

ସେହି କେତୋଟି କ'ଣ ସମ୍ମୁଖୀନ ହୋଇପାରିବେ ବିପୁଳ ଗଜାରୋହୀଙ୍କ ଆଗରେ । ତେଣୁ ଆଗେଇଗଲେ ବଙ୍ଗ ନବାବଙ୍କ ବ୍ୟୂହ ଭେଦକରି କଳିଙ୍ଗବାହିନୀ ।

ଗଜାଧିରାଜବର ପରମ ବୈଷ୍ଣବ, ପରମ ସୌଗତ ନରସିଂହଦେବ ଦେଖିଲେ, ସୈନ୍ୟମାନଙ୍କ ଅଗ୍ରଭାଗରେ ଦୁଇଟି ଅଶ୍ୱାରୋହୀ ଖଡ୍ଗଦ୍ୱାରା ବଙ୍ଗ ସୁଲତାନଙ୍କ ସେନାମାନଙ୍କୁ ହତ୍ୟାକରି ଆଗେଇ ଚାଲିଛନ୍ତି । ସେହି ଦୁଇଜଣଙ୍କ ମଧ୍ୟରୁ ଜଣେ ଗୋରା ଅନ୍ୟଟି କାଳିଆ ।

ସ୍ୱତଃ ମହାରାଜଙ୍କ ଗଣ୍ଡ ପ୍ଲାବିତ କରି ଅଶ୍ରୁଧାର ବହିପଡ଼ିଲା ।

—"ହେ ମହାପ୍ରଭୁ ! ନରସିଂହଦେବ ତୋ ରାଉତ । ତୁ କଳିଙ୍ଗ ରାଜାଧିରାଜ ।"

ନଇଁଆସିଲା ତାଙ୍କ ମସ୍ତକ ନମ୍ରକୁ । ସେ ପ୍ରଣାମ କରିସାରି ଅନାଇଲାବେଳକୁ ସୈନ୍ୟମାନେ ବହୁ ବାଟ ଆଗେଇଯାଇଥିଲେ । ସେମାନଙ୍କ ଅଗ୍ରଭାଗରେ ଅଶ୍ୱାରୋହୀ ଦୁଇଜଣ ପବନ ଭଳି ଘୋଡ଼ା ଛୁଟାଇ କାହିଁ କେତେବାଟ ପଳାଇ ଯାଇଥିଲେ । ମହାରାଜାଙ୍କ ଆଖିକୁ ସେମାନେ ଦେଖା-ଯାଉଥିଲେ ଝାପ୍ସା ଝାପ୍ସା ହୋଇ । ଯେଉଁଠି ଖଡ୍ଗ ହସ୍ତରେ ମହାପ୍ରଭୁ ନିଜେ ଶତ୍ରୁ ସଂହାର କରିଚାଲିଛନ୍ତି, ସେଠି ବିଜୟ ବା କିବା ଛାର ।

କ୍ଷିପ୍ର ବେଗରେ ଆଗେଇ ଚାଲିଥିଲେ କଳିଙ୍ଗ ସୈନ୍ୟ ବିଜୟ ନିଶାରେ ମତ୍ତ ହୋଇ । ଘନ ଘନ ବୀର କାହାଳୀ ବାଜିଉଠୁଥିଲା । ଶୁଭୁଥିଲା କଳିଙ୍ଗ ସୈନ୍ୟମାନଙ୍କର ଆନନ୍ଦ-ଉଲ୍ଲାସର କୁହାଟ । ଶୁଭୁଥିଲା ମଧ୍ୟ ଶ୍ରୀଜଗନ୍ନାଥଙ୍କ ଜୟ-ଜୟକାର, ବଳଭଦ୍ରଙ୍କର ଜୟ-ଜୟକାର ।

—:*:—

---

ଏହି ଯୁଦ୍ଧ ଘଟିଥିଲା ଖ୍ରୀ: ୧୨୪୩ରେ । କଟାସିନ୍‌ଠାରେ ମୁସଲମାନ ସେନାଙ୍କୁ ପରାସ୍ତ କରି ଲକ୍ଷ୍ନୋର ଓ ଲକ୍ଷ୍ନୌତି କଳିଙ୍ଗବାହିନୀ ଅଧିକାର କରିଥିଲେ । ଏହି ଲକ୍ଷ୍ନୋର ଓ ଲକ୍ଷ୍ନୌତି ରାଢ଼ ଓ ଗୌଡ଼ ଦେଶ ଏବଂ ପରେ ତାହା ବଙ୍ଗଦେଶ ବୋଲି ନାମିତ ହୋଇଛି ।

# ଅଣାକାର ପୁରୁଷ

ଅଧା ଲଙ୍ଗଳା ଲୋକଙ୍କର ବିରାଟ ପଟୁଆର । ବିଭିନ୍ନ ବାଜା ବଜାଇ ସେମାନେ ଆଗେଇ ଚାଲିଛନ୍ତି ଆଗକୁ । ମନରେ ସେମାନଙ୍କର ଆନନ୍ଦ ଆଉ ଆଶଙ୍କା । ଆଶଙ୍କାପାଇଁ ସେମାନେ ଯେଉଁଭଳି ସତର୍କ, ସେହିଭଳି ଚିର ଆକାଙ୍‌କ୍ଷିତ ନୂତନ ବସ୍ତୁ ଆନନ୍ଦ ପାଇବାପାଇଁ ତାଙ୍କୁ ବିଭୋର କରିଥାଏ । ତେଣୁ ବାଦ୍ୟର ତାଳେ ତାଳେ ସେମାନେ ନାଚି ନାଚି ଚାଲିଥା'ନ୍ତି । ରାସ୍ତାକଡ଼ରେ ଥିବା ଗାଁ'ର ଲୋକମାନେ ସଡ଼କ ଉପରେ ଧାଡ଼ିଧରି ଛିଡ଼ାହୋଇଥା'ନ୍ତି ସେହିମାନଙ୍କୁ ଓ ସେହିମାନଙ୍କର ନାଚ ଦେଖିବାକୁ ।

ବେଳେ ବେଳେ ସେମାନେ ଖଞ୍ଜଣି ବଜାଇ ଶୂନ୍ୟ ଦେବତାର ଭଜନ ବୋଲନ୍ତି । ଏକ ସଙ୍ଗରେ ବହୁଲୋକ, ପିଣ୍ଡ ହେଉଛି ବ୍ରହ୍ମାଣ୍ଡ—ବ୍ରହ୍ମାଣ୍ଡରେ ଯାହା ଅଛି ତାହା ମଧ୍ୟ ପିଣ୍ଡରେ ରହିଛି ବୋଲି ସୁସ୍ୱରରେ ଗାଇ ଖଞ୍ଜଣି ବଜାଇ ଭେରାଏ ନାଚିଯା'ନ୍ତି । ଏକ ସଙ୍ଗରେ ଏକ ତାଳରେ ବାଜିଉଠୁଥାଏ ଶହେଟି ଖଞ୍ଜଣି । ଖଞ୍ଜଣି ବାଜୁଥିଲାବେଳେ ଚାଙ୍ଗୁ, ଡାବ, ନାଗରା ଆଦି ବାଜା ବାଜୁ ନ ଥାଏ । କିନ୍ତୁ ସମସ୍ତେ ଆନନ୍ଦରେ ବିଭୋର ହୋଇ ନାଚି ନାଚି ଆଗକୁ ଚାଲିଥା'ନ୍ତି । ପୁଣି କେତେବେଳେ ଭଜନ ବନ୍ଦହୋଇ ଆରମ୍ଭ ହୋଇଯାଏ ଅନ୍ୟାନ୍ୟ ବାଦ୍ୟରୋଳ । ସେ ବାଜା ଶବ୍ଦରେ ଚମକିଉଠେ ରାସ୍ତା-ଘାଟ । ପାଖ ଗାଁ'ର ଲୋକେ ମଧ୍ୟ ସେହି ବାଜା ଶୁଣି ଧାଇଁଆସନ୍ତି ତାଙ୍କ ପାଖକୁ ।

ସେମାନେ ଯାଉ ଯାଉ ତାଙ୍କ ମଧ୍ୟରୁ ଜଣେ କେହି ପାଟିକରିଉଠିଲା, 'ହେଇଟି......ଦେଖାଗଲା' । ସଙ୍ଗେ ସଙ୍ଗେ ସମସ୍ତେ ଛିଡ଼ା ହୋଇଗଲେ ସେହି ରାସ୍ତା ଉପରେ । ସମସ୍ତେ ଲକ୍ଷ୍ୟକରି ଦେଖିଲେ, ଶୂନ୍ୟକୁ ଭେଦି ଗୋଟିଏ ମନ୍ଦିର ଦେଖାଯାଉଛି । ବହୁ ଦୂରରେ ମନ୍ଦିରଟି ଥିବାରୁ ତାଙ୍କୁ ତାହା ଛୋଟ ଦିଶୁଥାଏ । ଦିଶୁଥାଏ ମଧ୍ୟ ମନ୍ଦିର ଉପରୁ ଫର୍ ଫର୍ ହୋଇ ଉଡ଼ୁଥିବା ନାଲି ପତାକା ।

ଅଳ୍ପ ସମୟ ପାଇଁ ସେମାନେ ସମସ୍ତେ ନୀରବରେ ଠିଆ ହୋଇଗଲେ । ତାପରେ ତଳେ ମୁଣ୍ଡ ଲଗାଇ ନମସ୍କାର କଲେ । ତା'ପରେ ବାଜିଉଠିଲା ବିଭିନ୍ନ ବାଦ୍ୟ । ଦ୍ୱିଗୁଣିତ ଆନନ୍ଦରେ ପୁଣି ସେମାନେ ନାଚି ନାଚି ଧାଇଁଲେ ଆଗକୁ । ବହୁ ବାଟ ଚାଲି ଚାଲି ଆସି ତାଙ୍କ ଗୋଡ଼ ଅବଶ ହୋଇପଡ଼ିଥିଲେ ମଧ୍ୟ ପୁଣି ସେ ଗୋଡ଼ରେ ଯେପରି ଅଧିକ ବଳ ସଞ୍ଚାର ହୋଇଗଲେ, ସେହିଭଳି ସେମାନେ ଦ୍ରୁତ ଗତିରେ ଧାଇଁ ଚାଲିଲେ । ସନ୍ଧ୍ୟା ପୂର୍ବରୁ ପହଞ୍ଚିବେ ଏହି ଧାରଣା ସେମାନଙ୍କର ହେଲା ।

ସୂର୍ଯ୍ୟ ପଶ୍ଚିମ ଆକାଶରୁ ତଳକୁ ତଳକୁ ଖସି ଚାଲିଥା'ନ୍ତି । ସନ୍ଧ୍ୟା ହେବାକୁ ଆଉ ବେଶୀ ଡେରି ନ ଥାଏ । ତଥାପି ସେମାନେ ଭାବୁଥା'ନ୍ତି ସନ୍ଧ୍ୟା ପୂର୍ବରୁ ଯେପରି ସେମାନେ ସେଠାରେ ପହଞ୍ଚିବେ । ଦର୍ଶନ କରିବେ ତାଙ୍କ ଠାକୁରଙ୍କୁ; ପବିତ୍ର କରିବେ ନିଜ ଆଖିକୁ— ମନକୁ । ତେଣୁ ସେମାନେ ତରତର ହୋଇ ଧାଇଁବାକୁ ଲାଗିଲେ । ଯେତିକି ଧାଇଁଲେ, ରାସ୍ତା ସେତିକି ଆଗକୁ ପଡ଼ୁଛି । ସତେ ଯେପରି ଅସରନ୍ତି ସେ ରାସ୍ତା । ତଥାପି ସନ୍ଧ୍ୟା ପୂର୍ବରୁ ସେଠାରେ ପହଞ୍ଚିବାକୁ ହେବ ।

ନା······ହେଲାନାହିଁ; ସୂର୍ଯ୍ୟ ପଶ୍ଚିମ ଆକାଶର ଗଛ-ବୁଦା ଆଡୁଆଳରେ ଲୁଚିଯାଉଛନ୍ତି । ହୋଇରେ ତ ଅନ୍ଧାର ମାଡ଼ିଆସିବ । ଅନ୍ଧାରରେ ସେଠାକୁ ଯିବା ସମ୍ଭବ ନୁହେଁ । କେଉଁଠି ପାଣିକୂଳରେ ରହିଯିବାକୁ ହେବ । ତାହାରି ପାଖରେ କାଠ ଯୋଗାଡ଼ କରି ଧୂନି ଜାଳିବେ । ତା'ପରେ ଆରମ୍ଭ ହେବ ଭଜନ । ଭଜନ ବୋଲୁ ବୋଲୁ ରାତି ପାହିଯିବ । ପୁଣି ଉଜଳା ହେଲାବେଳକୁ ସେମାନେ ଚାଲିବେ । ସକାଳ ହେଲାବେଳକୁ ସେମାନେ ପହଞ୍ଚିଯିବେ ସେଠାରେ ।

ପାଣି ବେଶୀ ଦୂରରେ ନ ଥାଏ—ନିକଟରେ ନଈ । ସେହି ନଈକୂଳରେ ସେମାନେ ସମସ୍ତେ ରହିଗଲେ । ଧୂନି ଜାଳିବାକୁ କାଠର ଅଭାବ ହେଲାନାହିଁ । ସେମାନେ ଯାହା ଖାଇବାକୁ ଆଣିଥିଲେ ସୂର୍ଯ୍ୟ ବୁଡ଼ିଯିବା ପୂର୍ବରୁ ତାହା ଖାଇ ଦେବତାଙ୍କ ଉପାସନା ଆରମ୍ଭ କରିଦେଲେ । ସେ ଉପାସନା ପ୍ରଣାଳୀ ପୁଣି ଅଦ୍ଭୁତ । ହାତ ଯୋଡ଼ି, ଠିଆହୋଇ, ବସି,

ଶୋଇ ସେମାନେ ଦେବତାଙ୍କୁ ପ୍ରଣାମ ଜଣାଇଲେ । ବେଳେ ବେଳେ ଅଲେଖ ନିରଞ୍ଜନ ବୋଲି ବଡ଼ ପାଟିରେ କହୁଉଠୁଥା'ନ୍ତି ।

ପ୍ରାର୍ଥନା ସାରି ଧୂନି ଜାଳିଲେ ସେମାନେ । ଧୂନିକୁ ଘେରି ସେମାନେ ବସିଗଲେ ଖଞ୍ଜଣି ଧରି; ତା'ପରେ ଚାଲିଲା ଭଜନ । ମୁଣ୍ଡ ହଲାଇ ଖଞ୍ଜଣି ଆ-ମାନେ ଖଞ୍ଜଣି ବଜାଇବାରେ ଯେଉଁଭଳି ବିଭୋର ହୋଇପଡ଼ିଲେ, ସେହିଭଳି ଭଜନିଆମାନେ ମଧ୍ୟ ଭଜନ ଗାଇ ଆତ୍ମହରା ହୋଇଗଲେ । ଦଳେ ବଜାନ୍ତି ଓ ଗାଆନ୍ତି, ଆଉ ଅନ୍ୟମାନେ ପାଳି ଧରନ୍ତି । ପୁଣି ଅନ୍ୟମାନେ ବଜାନ୍ତି ଓ ଗାଆନ୍ତି, ପୂର୍ବରୁ ବଜାଇଥିବା ଗାଉଥିବାବାଲା ପାଳି ଧରନ୍ତି । ଏହିଭଳି କୌଣସିମତେ ରାତି ପାହିଗଲେ ଗଲା । ରାତି ପାହୁ ନ ପାହୁଣୁ ସେମାନେ ସ୍ନାନ-ଶଉଚ ସାରି ଈଶ୍ୱରଙ୍କୁ ପ୍ରାର୍ଥନା କରିବେ ଓ ତା'ପରେ ଚାଲିବେ ।

କୌଣସିମତେ ରାତି ପାହି ଆସିଲା । ସେମାନେ ରାତି ପାହିବା ପୂର୍ବରୁ ନିଜର ନିତ୍ୟକର୍ମ ସାରି ଉପାସନା ଆରମ୍ଭ କରିଦେଲେ । ଉପାସନା ସରିଲା ପରେ ଧାଇଁଲେ ଆଗକୁ ।

ଧାଇଁ ଧାଇଁ ସେମାନେ ପହଞ୍ଚିଗଲେ ଶ୍ରୀମନ୍ଦିର ଆଗରେ । ସେତେବେଳକୁ ଖରା ଟିକିଏ ଟିକିଏ ପଡ଼ିଲାଣି । ଖୋଲା ହୋଇସାରିଥାଏ ଶ୍ରୀମନ୍ଦିରର ଦ୍ୱାର । ଦ୍ୱାରଦେଶରେ ଛିଡ଼ା ହୋଇଥା'ନ୍ତି ଶ୍ରୀମନ୍ଦିରର ରକ୍ଷାକାରୀ ନାୟକ ଓ ସେବକମାନେ । ସେମାନେ ଯେଉଁଭଳି ଭାବେ ଛିଡ଼ା ହୋଇଥା'ନ୍ତି ତାହା ଦେଖିଲେ ସ୍ୱତଃ ମନେହେବ, ସେମାନେ ଯେପରି ଦ୍ୱାରକୁ ଅବରୋଧ କରି ଦଣ୍ଡାୟମାନ । ସେମାନଙ୍କ ବ୍ୟତୀତ ବହୁ ଲୋକ ବଡ଼ଦାଣ୍ଡରେ ଆଟପଟାଳି ପ୍ରାପ୍ତ ଉଭା ।

ଆଗନ୍ତୁକମାନେ ଛିଡ଼ା ହୋଇଗଲେ ସିଂହଦ୍ୱାର ନିକଟରେ । ସେମାନଙ୍କ ସମ୍ମୁଖଭାଗକୁ ଜଣେ ଚାଲିଆସି ଖଞ୍ଜଣିଟିଏ ବଜାଇ ଆରମ୍ଭ କରିଦେଲା ଭଜନ—"ଉଠ ସ୍ୱାମୀ ବ୍ରହ୍ମାଣ୍ଡ ଠାକୁର ହେ, ବଜେକର ହେଉଛି ଉଚ୍ଛୁର ।" ସଙ୍ଗେ ସଙ୍ଗେ ଏକ ସଙ୍ଗରେ ଶତାଧିକ ନଙ୍ଗୁଳା ଆଗନ୍ତୁକ ଖଞ୍ଜଣି ବଜାଇ ପାଳି ଧରିଲେ । ସେମାନଙ୍କ କଣ୍ଠସ୍ୱରରେ ବଡ଼ଦାଣ୍ଡ ଫାଟିପଡ଼ିଲା । ସିଂହଦ୍ୱାରକୁ ଆବୋରି ଛିଡ଼ା ହୋଇଥିବା ଆରକ୍ଷୀ ଓ

ସେବକମାନେ ବିସ୍ମିତ ହୋଇ ଅନାଇଲେ ତାଙ୍କର ଆଡ଼କୁ । ସେମାନେ ସେହି ଗୋଟିଏ ସ୍ଥାନରେ ଛିଡ଼ାହୋଇ ପଦ ପରେ ପଦ ବୋଲି ଖଞ୍ଜଣି ବଜାଉଥା'ନ୍ତି । ଭଜନଟି ଶେଷ କରିବା ପୂର୍ବରୁ ଶେଷ ପଦଟି ବୋଲିଲେ—

ଯୋଗନିଦ୍ରା ତେଜ ଗୁରୁ, ଉଠ ଉଠ ଆସନରୁ,
ଦଣ୍ଡ ପ୍ରଳମ୍ବିତ ଦୂରୁ, ଥାଇ କବାଟ ଦୁଆରୁ
ଭଣେ ଖିମ ଅଜ୍ଞାନ ପାମର, ଉଠ ହେ ସ୍ୱାମୀ ବ୍ରହ୍ମାଣ୍ଡ ଠାକୁର ।

ଭଜନଟି ସରିଗଲା ପରେ ପ୍ରଥମେ ବୋଲୁଥିବା ଲୋକଟି କହିଲା—"ଆଜ୍ଞାମାନେ ! ଆମେ ବହୁ ଦୂରରୁ ଆସିଛୁ ପ୍ରଭୁଙ୍କ ଦର୍ଶନପାଇଁ । ଆମେ ବେଦ ଜାଣିନାହୁଁ; ତେଣୁ ଆମେ ନିବେଦିଆ । ଆମେ ଜାଣିଛୁ, ଆମ ଠାକୁର ହେଉଛନ୍ତି ବ୍ରହ୍ମାଣ୍ଡର ଈଶ୍ୱର । ସେ ଅଛନ୍ତି ଏହି ପଥର ମନ୍ଦିରରେ । ଆମେ ନିବେଦିଆମାନେ ତାଙ୍କୁ ଦର୍ଶନ କରି ଧନ୍ୟ ହେବାକୁ ଧାଇଁଆସିଛୁ । ଦୟାକରି ଆପଣମାନେ ଟିକିଏ ବାଟ ଛାଡ଼ନ୍ତୁ ।"

ଉତ୍ତରରେ ଜଣେ ବିରାଟ ବପୁଧାରୀ ସେବକ କହିଲେ--"କ'ଣ ହେଲା··· ! ତୁମେ ନିବେଦିଆ ଯିବ ମନ୍ଦିରକୁ ? ଆମେ ବେଦ ବିହିତ କର୍ମରେ ଯେଉଁ ମହାପ୍ରଭୁଙ୍କୁ ଉପାସନା କରୁଛୁ, ତୁମେ ନିବେଦରେ ତାହା କରିବ ? ତାହା କରିବାକୁ ଆମେ ପୁଣି ବାଟ ଛାଡ଼ିଦେବୁ ? ଆରେ ମୂଢ଼ ! ନିବେଦିଆଙ୍କ ଠାକୁର ଏ ମନ୍ଦିରରେ ନାହାଁନ୍ତି । ତୁମେ ସବୁ ଆଉ କେଉଁଠାକୁ ଯାଉ ଯାଉ ଭୁଲ୍‌ରେ ଏଠାକୁ ଚାଲିଆସିଛ । ଏ ମନ୍ଦିର ଭିତରକୁ ଯିବାକୁ ତୁମର ଅଧିକାର ନାହିଁ ।"

—"ଆଜ୍ଞାମାନେ ! ଆପଣ କ'ଣ ଜାଣିନାହାଁନ୍ତି, ଏ ମନ୍ଦିରରେ ଯେଉଁ ଦେବତା ପୂଜା ହେଉଛନ୍ତି ସେ ଦେବତାଙ୍କୁ ପ୍ରଥମେ ଶବରମାନେ ପୂଜା କରୁଥିଲେ । ଆମେ ସେହି ଶବରମାନଙ୍କର ବଂଶଧର । ଆମେ ଆମର ଠାକୁରଙ୍କର ଦର୍ଶନ କରିବାକୁ ଆସିଛୁ । ଅନୁଗ୍ରହ କରି ଟିକିଏ ବାଟ ଛାଡ଼ିଦିଅନ୍ତୁ ।"

—"ଆହେ ନବୌଦ୍ଧଆମାନେ ! ତୁମର ସବୁ ବୁଝିବା ଉଚିତ, ଏଠାରେ ତୁମର ଠାକୁର ନାହାଁନ୍ତି । ଶବର ପୂଜୁଥିବା ଦେବତା, ଏଠାରେ ଆର୍ଯ୍ୟମାନଙ୍କ ଦ୍ୱାରା ବୈଦିକ ମତରେ ଆରାଧିତ । ତେଣୁ ସେ ବେଦର ଦେବତା । ବେଦର ପରମ ମନ୍ତ୍ର ପୁରୁଷସୂକ୍ତରେ ସେ ଆରାଧିତ । ତେଣୁ ସେ ଯେତେବେଳେ ତୁମର ଦେବତା ନୁହନ୍ତି, ସେତେବେଳେ ତୁମେ ସେଠାକୁ ଯିବ କାହିଁକି ?"

—"ଏ କିପରି କଥା କହୁଛନ୍ତି ଆପଣ ! ପରଂବ୍ରହ୍ମଙ୍କୁ ମନ୍ଦିର ଭିତରେ ରଖି ପୂଜା କରୁଛନ୍ତି, ଏଣେ କହୁଛନ୍ତି ସେଠାକୁ ଯିବାପାଇଁ ଆମର ଅଧିକାର ନାହିଁ ? ଯେ ବ୍ରହ୍ମ, ସେ ସର୍ବତ୍ର ବିରାଜମାନ । ଆପଣ ମନ୍ଦିର ଭିତରେ ତାଙ୍କୁ ରଖିଲେ ବୋଲି କ'ଣ ତାଙ୍କୁ ଆମେ ଏଇଠି ଦେଖିପାରିବୁ ନାହିଁ । ମୁଁ ଖିମ କନ୍ଧ ହେଲେ ମଧ୍ୟ ଆପଣଙ୍କ ଠାକୁର ଯେତେବେଳେ ପରଂବ୍ରହ୍ମ, ତେବେ ସେ ନିଶ୍ଚୟ ଦର୍ଶନ ଦେବାକୁ ଏଠାକୁ ଆସିବେ । ମାତ୍ର ଏତେବଡ଼ ଠାକୁରଙ୍କୁ ଆମପାଇଁ ଏଠାକୁ ଆସିବାକୁ ଆମେ ଚାହୁଁନାହୁଁ । ଆମେ ଆସିଛୁ ତାଙ୍କ ପାଖକୁ; ସେ ଆମ ପାଖକୁ ଆସିବା ଉଚିତ ନୁହେଁ ।"

—"ହେଉ ହେଉ, ଆମେ ସେ ଫିସାଦଗୁଡ଼ାକ ଜାଣିଛୁ । ହଁ ପୋ... ଖିମାକନ୍ଧର ଏତେ ସିଦ୍ଧି ହେଲାଣି ଯେ, ତା' ପାଖକୁ କୁଆଡ଼େ ମହାପ୍ରଭୁ ଆସିବେ ! ଆଚ୍ଛା ଦେଖିବା, କିପରି ରତ୍ନସିଂହାସନ ଛାଡ଼ି ଜଗା ଏଠିକି— ଏହି କନ୍ଧ ଶବରଙ୍କ ପାଖକୁ ଆସିବ ଦେଖିବା ।"

—"ଆଜ୍ଞା ଗୋସେଇଁ ! ତିରଶଟି ଗ୍ରାମର ଲୋକଙ୍କୁ ଧରି ମୁଁ ମହାପ୍ରଭୁଙ୍କୁ ଦେଖିବା ଆଶାରେ ଏଠାକୁ ଆସିଛି । ଶୂନ୍ୟରୁ ମୁଁ ଶୁଣିଲି ଶୂନ୍ୟ ଦେବତା ହେଉଛନ୍ତି ନିଜେ ଜଗନ୍ନାଥ । ପ୍ରଥମେ ତାଙ୍କୁ ଆମ ନବୌଦ୍ଧଆମାନେ ଉପାସନା କରୁଥିଲେ । ବୈଦିକମାନେ ତାଙ୍କୁ ଯେତେ ଉପାସନା କରନ୍ତୁ ନା କାହିଁକି ସେ ଆମ ନବୌଦ୍ଧଆଙ୍କ ଉପାସନାକୁ ଅଧିକ ଲୋଡ଼ନ୍ତି । ପ୍ରତିବର୍ଷ ମାତ୍ର ପନ୍ଦର ଦିନ ସେ ଆମ ବଂଶଧରଙ୍କ ଦ୍ୱାରା ଉପାସିତ ହୁଅନ୍ତି । ତାହା ତାଙ୍କପାଇଁ ଯଥେଷ୍ଟ ନୁହେଁ, ସେଥିପାଇଁ ଆମେ ଧାଇଁଆସିଛୁ । ଏଥିରେ ଆପଣ ବାରଣ କରନ୍ତୁ ନାହିଁ ।"

ଆଉ ଜଣେ ଆଗକୁ ଆଗେଇଯାଇ ହାତ ଯୋଡ଼ି କହିଲେ—"ଗୋସେଇଁ ! ଆପଣମାନେ ନିଶ୍ଚୟ ଅଚ୍ୟୁତାନନ୍ଦଙ୍କୁ ଜାଣିଥିବେ । ତାଙ୍କର ଲେଖା ବି ପଢ଼ିଥିବେ । ସେ ଲେଖାରେ କ'ଣ ଦେଖିନାହାଁନ୍ତି, 'ରାଧା କନ୍ଧ-ଘରେ ଜନ୍ମହେବେ ଖିମଣ୍ଡେଇ ନାମରେ' । ଆପଣ ଯେଉଁ ଦେବତାଙ୍କୁ ଏତେ ବଡ଼ ଦେଉଳ ତୋଳି ପୂଜା କରୁଛନ୍ତି, ସେ ପରା କୁଆଡ଼େ କୃଷ୍ଣ । କୃଷ୍ଣଙ୍କ ପାଖକୁ ରାଧାଙ୍କ ଯିବାରେ ଆପତ୍ତି କ'ଣ ଅଛି ? ଆପଣମାନେ କାଠ ଗୁଣ୍ଡ ନାହାଁନ୍ତି କାହିଁକି ?"

—"ଆରେ ହେ, ଏ କନ୍ଧ କେଉଁ ପାହାଡ଼ ଜଙ୍ଗଲରୁ ଆସିଛନ୍ତି ଆମକୁ ଏଠି ପାଠ ପଢ଼ାଇବାକୁ । ଆମେସବୁ ମୂର୍ଖ ଆଉ ଏମାନେ ପଣ୍ଡିତ । ଆରେ ! ଯଦି ରାଧା ଆସିଥା'ନ୍ତେ, ତେବେ ତୁମେସବୁ ପୁରୀ ପଞ୍ଚକୋଶରେ ପହଞ୍ଚିବା ପୂର୍ବରୁ ଗଜପତି ମହାରାଜା ଦିବ୍ୟସିଂହଦେବଙ୍କୁ ଦିଅଁ ଘର ଡାକ କହିସାରନ୍ତେଣି ପାଲିଙ୍କିଟି ଆଣିବାକୁ । ଦ୍ୱାପର ଯୁଗର ରାଧା ବନୋଦିନୀ କୁଆଡ଼େ ଆଉ କେଉଁଠି ଜନ୍ମହେବାକୁ ସ୍ଥାନ ପାଇଲେ ନାହିଁ ଯେ, ବଣ ଜଙ୍ଗଲରେ କନ୍ଧ ଘରେ ଜନ୍ମ ହୋଇଥିଲେ । କାଳ ଆସି କ'ଣ ହେଲା, ଆମକୁ ପୁଣି କନ୍ଧେ ଆସିଲେ ବୁଦ୍ଧି ଶିଖେଇବାକୁ ?"

ଆଗରେ ଖିମକନ୍ଧ ନିଃଶଙ୍କରେ ଛିଡ଼ା ହୋଇଥାଏ । ତା'ର ମହାପ୍ରଭୁଙ୍କ ଉପରେ ବିଶ୍ୱାସ ଅଛି । ସେ ସ୍ପଷ୍ଟ ଶୁଣିଛି, ତା'ର ଶୂନ୍ୟ ଦେବତା ତାକୁ ଡାକି କହୁଛନ୍ତି, "ଖିମ ! ତୁ ପୁରୀ ଆ' । ଶ୍ରୀକ୍ଷେତ୍ରରେ ମୋତେ ଦର୍ଶନ କର ଏବଂ ତୋର ଗ୍ରାମବାସୀମାନଙ୍କୁ ଦର୍ଶନ କରାଇ ନିଜକୁ ଓ ସେ ସମସ୍ତଙ୍କୁ ପବିତ୍ର କର । ମୁଁ ତୋ'ର ସେହି ଶୂନ୍ୟବ୍ରହ୍ମ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ବୁଦ୍ଧ ବୈଷ୍ଣବ ରୂପେ ଆରାଧିତ ହେଉଛି । ତୁମେ ଶାବରୀପୁମାନେ ମୋର ଅତି ପ୍ରିୟ । ବର୍ଷରେ ପନ୍ଦର ଦିନ ମୋତେ ସ୍ନାନପୂର୍ଣ୍ଣିମାଠାରୁ ରଥଯାତ୍ରା ପର୍ଯ୍ୟନ୍ତ ଶବରଙ୍କ ବଂଶଧରମାନେ ପୂଜା କରନ୍ତି; ସେଥିରେ ମୁଁ ଖୁବ୍ ଆନନ୍ଦିତ । ଆଦିବାସୀଙ୍କ ସରଳ ପ୍ରେମରେ ମୁଁ ସଦା ବନ୍ଧା । ତେଣୁ ତୁ ଶ୍ରୀକ୍ଷେତ୍ର ଆ' ।"

ଶୂନ୍ୟବାଣୀ ଶୁଣି ଖିମଣ୍ଡେଇ ପଚାରିଲେ, "ମହାପ୍ରଭୁ ! ମୁଁ ଗଲେ ସେଠାରେ କିଛି ପ୍ରମାଦ ପଡ଼ିବ ନାହିଁ ତ ? ମୁଁ କେତେଜଣଙ୍କୁ ସାଙ୍ଗରେ ନେଇଗଲେ କିଛି ଅସୁବିଧା ହେବନାହିଁ ତ ?"

ଉତ୍ତରରେ ଶୁଣିବାକୁ ପାଇଲା, "ନାହିଁରେ, କିଛି ଅସୁବିଧା ହେବନାହିଁ । ଯେ ପର୍ଯ୍ୟନ୍ତ ତୋ ସହିତ ସେମାନେ ଥିବେ ସେ ପର୍ଯ୍ୟନ୍ତ କିଛି ଅସୁବିଧା ହେବନାହିଁ ।"

ଶୂନ୍ୟବାଣୀ ଶୁଣି ଭୀମଭୋଇ ଅନ୍ୟମାନଙ୍କୁ ସେକଥା କହିଲେ; ନିଜେ ଶୂନ୍ୟ ଦେବତା କହିଛନ୍ତି ଶ୍ରୀକ୍ଷେତ୍ର ଯିବାପାଇଁ । ଏକଥା ଶୁଣି ଶୁଣି ଗାଁ'ର ଲୋକମାନେ ତାଙ୍କ ସହିତ ଯିବାକୁ ରାଜି ହେଲେ । କେବଳ ତାଙ୍କର ଗାଁ'ର ଆଦିବାସୀମାନେ ନୁହଁନ୍ତି, ତାଙ୍କ ଆଖ-ପାଖ ଅନ୍ୟାନ୍ୟ ଗ୍ରାମର ଆଦିବାସୀମାନେ ମଧ୍ୟ ବାହାରିପଡ଼ିଲେ ଶ୍ରୀକ୍ଷେତ୍ର ଯିବାକୁ । ସେମାନେ ଜାଣନ୍ତି ଭୀମ ସାଧାରଣ ଲୋକ ନୁହେଁ । ପିଲାଦିନରୁ ସେ ଅନ୍ଧ ଥିଲେ ମଧ୍ୟ ଭଗବାନ ଗୁରୁଭାବେ ତା' ପାଖରେ ଉପସ୍ଥିତ ହୋଇ ତାକୁ ଚକ୍ଷୁ ଦାନକରି ସେହି ପରମପିତା ବୁଦ୍ଧଙ୍କ ମହିମା ଧର୍ମ ବିଷୟ ଗାଇବାକୁ କହିଗଲେ । ତା' ନ ହେଲେ ଗଜମୂର୍ଖ ଭୀମଭୋଇ କ'ଣ ଶୂନ୍ୟ ଦେବତାଙ୍କ ମହିମାଧର୍ମର ଗ୍ରନ୍ଥ ରଚନା କରିଥା'ନ୍ତା ?

ଭୀମଭୋଇଙ୍କ ସହିତ ତିରିଶିଟି ଗ୍ରାମର ଲୋକେ ଆସି ଛିଡ଼ା-ହୋଇଥା'ନ୍ତି ଶ୍ରୀମନ୍ଦିରର ସିଂହଦ୍ୱାରରେ । ଶ୍ରୀମନ୍ଦିରର ପଣ୍ଡାମାନେ—ଗୁମାସ୍ତାମାନେ ଭାରତର ସବୁଆଡ଼େ ବୁଲି ଜଗନ୍ନାଥଙ୍କ ମହିମା ପ୍ରଚାର କରିଥା'ନ୍ତି । ଓଡ଼ିଶାର ପଶ୍ଚିମ ମାଳଅଞ୍ଚଳ ରେଢ଼ାଖୋଲକୁ ଯାଇଥିବା ପଣ୍ଡା ଜାଣିବାକୁ ପାଇଲେ, ବହୁ ସଂଖ୍ୟାରେ ଆଦିବାସୀମାନେ ଆସି ଯାଉଛନ୍ତି ତାଙ୍କର ଦେବତା ଜଗନ୍ନାଥଙ୍କୁ ନେଇଆସିବା ପାଇଁ । ସମ୍ବାଦ ଶୁଣି ଶୁଣି ସେ ଘୋଡ଼ା ଛୁଟାଇ ପୁରୁଷୋତ୍ତମ ଧାଇଁଲେ । ପୁରୁଷୋତ୍ତମରେ ପହଞ୍ଚି ସଙ୍ଗେ ସଙ୍ଗେ ସମ୍ବାଦ ଦେଲେ ଗଜପତି ମହାରାଜା ଦିବ୍ୟସିଂହ ଦେବଙ୍କୁ । ମହାରାଜ ସମ୍ବାଦ ପାଇଲାମାତ୍ରେ ସେ ଶ୍ରୀମନ୍ଦିରର ରକ୍ଷୀ ଓ ସେବକମାନଙ୍କୁ ଆଦେଶ ଦେଲେ ଯେପରି ସେମାନେ ମନ୍ଦିର ଭିତରକୁ ପଶି ନ ପାରନ୍ତି ତାହାର ବ୍ୟବସ୍ଥା କରିବାପାଇଁ ।

ଭୀମଭୋଇ ହାତ ଯୋଡ଼ି କହିଲେ—"ମୁଁ ଆପଣଙ୍କ ଦେବତାଙ୍କ ପାଖକୁ ଆସିନାହିଁ; ଆସିଛି ଆମର ସେହି ଅଣାକାର ଶୂନ୍ୟ ଦେବତାଙ୍କ

ପାଖକୁ । ଯଦି ଆପଣମାନେ ଦେଉଳ ଭିତରକୁ ଯିବାପାଇଁ ବାଟ ଛାଡ଼ିବେ ନାହିଁ, ତେବେ ମୋ ଦେବତାଙ୍କୁ ମୁଁ ଏ ଶୂନ୍ୟରେ ଦର୍ଶନ କରି ଫେରିଯିବି ।"

"ହେଉ···, ତୁ ତୋର ଦେବତାଙ୍କୁ ଶୂନ୍ୟରେ ଦର୍ଶନ କରି ଫେରିଯା !"—ଜଣେ ସେବକ କହିଲେ ।

ଏକ ସଙ୍ଗରେ କେତେକ ଆଦିବାସୀ କହିଉଠିଲେ—"ନା, ଖାଲି ଦର୍ଶନ କରି ଫେରିଯିବୁ ନାହିଁ । ଆମେ ସେ ଠାକୁରଙ୍କୁ ସାଙ୍ଗରେ ନେଇ ଚାଲିଯିବୁ ।"

ହସିଲେ ଖିମଭୋଇ । କହିଲେ, "ଶୂନ୍ୟ ଦେବତା ଆମ ସହିତ ନ ଗଲେ କ'ଣ ଆମେ ତାଙ୍କୁ ଜୋର୍‌କରି ନେଇଯାଇ ପାରିବୁ ? ଦେବତାଙ୍କର ଇଚ୍ଛା; ସେ ଯଦି ଚାହିଁବେ ଯିବାପାଇଁ ତେବେ କହିବାର କିଛି ନାହିଁ । ଗୋସେଇଁମାନେ ମୋର ଦେବତା—କାଠ ପଥର ନୁହଁନ୍ତି । ସେ ହୁଏତ ବେଳେ ବେଳେ କାଠ ପଥର ମଧ୍ୟରେ ଅବସ୍ଥାନ କରନ୍ତି । ସେଥିପାଇଁ ତାଙ୍କୁ କାଠ ପଥର କହିବା ଠିକ୍ ନୁହେଁ । ମୋ ଦେବତା ମୋ'ପାଇଁ ଶୂନ୍ୟରେ ଦର୍ଶନ ଦେବେ ନାହିଁ ବୋଲି ଯେତେବେଳେ ଆପଣମାନଙ୍କର ସନ୍ଦେହ ଜନ୍ମିଛି, ସେତେବେଳେ ମୋ ଦେବତା ନିଶ୍ଚୟ ଶୂନ୍ୟରେ ଉଦୟ ହେବେ । ସେ କେବେ ମୋ ବିଶ୍ୱାସରେ ବିଷ ଦେବେନାହିଁ । ହେ ମହାପ୍ରଭୁ···ହେ ବ୍ରହ୍ମାଣ୍ଡ ଠାକୁର ! ଆପଣ ଅନୁଗ୍ରହ କରି ଶୂନ୍ୟରେ ବିଜେ କରନ୍ତୁ । ମୁଁ ଖିମଭୋଇ ଆପଣଙ୍କୁ ଡାକୁଛି । ଆପଣ ଶୂନ୍ୟରେ ଉଦୟ ହୋଇ ସମସ୍ତଙ୍କ ସଂଶୟ ମୋଚନ କରନ୍ତୁ । ଆପଣ ପ୍ରମାଣ କରିଦିଅନ୍ତୁ ଆପଣ ହେଉଛନ୍ତି ଶାଶ୍ୱତ ଦେବତା—ଏହି ଅସୀମ ଶୂନ୍ୟ । ଯାହା ମଧ୍ୟରେ କୋଟି କୋଟି ସୂର୍ଯ୍ୟ ତାଙ୍କର ଗ୍ରହ ଉପଗ୍ରହଙ୍କୁ ଧରି ଘୂରୁଛନ୍ତି, ଆପଣ ହେଉଛନ୍ତି ସେହି । ଯାହାଙ୍କୁ କି ବେଦ ଜାଣିନାହିଁ, ପୁରାଣ କଳ୍ପନା କରିପାରି ନାହିଁ; ସେହି ନିର୍ବେଦିଆଙ୍କର ଉପାସ୍ୟ । ଆସନ୍ତୁ ମହାପ୍ରଭୁ ! ଶୂନ୍ୟର ପ୍ରତୀକ ହୋଇ ଆପଣ ଅଛନ୍ତି ଏବଂ ଆପଣ ସମଗ୍ର ଶୂନ୍ୟ, ତାହା ପ୍ରମାଣ କରନ୍ତୁ ।"

ଖିମଭୋଇ ଦୁଇହାତକୁ ଉପରକୁ ଟେକି କହିଲେ, "ମହାପ୍ରଭୁ ! ଆଉ ଡେରି କରୁଛନ୍ତି କାହିଁକି ? ଆପଣ କ'ଣ ଜଡ଼ ବୋଲି ମୋତେ ଧୂଣା

କରୁଛନ୍ତି ? ତାହାହେଲେ ଏଠାକୁ ଆସିବାକୁ ମୋତେ ଶୂନ୍ୟବାଣୀ କଲେ କାହିଁକି ? ହେ ମହାପ୍ରଭୁ ! କପଟ ନ କରି ଶୀଘ୍ର ଦେଖାଦିଅ !"

ଭୀମଭୋଇ ବାରମ୍ବାର ଡାକ କହିବାରୁ ଉପସ୍ଥିତ ସେବକମାନେ ଓ ପୁରୀର ଲୋକମାନଙ୍କ ମୁହଁରେ ସାମାନ୍ୟ ତାଚ୍ଛଲ୍ୟ ଭାବ ଦେଖାଦେଲା ।

କୋଟି ବ୍ରହ୍ମାଣ୍ଡର ଈଶ୍ୱର—ଯେ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ରତ୍ନ-ସିଂହାସନ ଉପରେ ଭାଇ-ଭଉଣୀଙ୍କୁ ସାଙ୍ଗରେ ଧରି ବିଜେ କରିଛନ୍ତି, ସେ କ'ଣ କନ୍ଧ ଭୀମଭୋଇ କଥାରେ ଆସିବେ ? ଅତି ନୈଷ୍ଠିକ ଭାବରେ ଋଗ୍‌ବେଦର ଦଶମ ମଣ୍ଡଳର ପୁରୁଷ ସୂକ୍ତରେ ଯାହାଙ୍କୁ ଉପାସନା କରାଯାଏ ସେ କ'ଣ ଅସଭ୍ୟ—ବଣୁଆ ଭୀମାକନ୍ଧର ଦି'ପଦ କଥାରେ ଆସି ପହଞ୍ଚିଯିବେ ! ପାଗଳ ଭୀମାକନ୍ଧଟା !

ହଠାତ୍ ବଡ଼ଦେଉଳ ଭିତରୁ ଖୁବ୍ ଜୋର୍‌ରେ ଗୋଟାଏ ବିସ୍ଫୋରଣ ହେଲା । ସତେ ଯେପରି ଭୁଷୁଡ଼ି ପଡ଼ିଲା ଶ୍ରୀମନ୍ଦିର । ତା'ର ଭୟଙ୍କର ଶବ୍ଦରେ ସିଂହଦ୍ୱାରରେ ଉପସ୍ଥିତ ଥିବା ସେବକ ଓ ସାଧାରଣ ଲୋକଙ୍କ କାନର ପରଦା ଫାଟିଗଲା ଭଳି ଲାଗିଲା । ତା'ପରେ ମଧ୍ୟ ଆକାଶ ଆଡ଼କୁ ଆସୁଥିବା ସୂର୍ଯ୍ୟଙ୍କ ପ୍ରଖର କିରଣ ହଠାତ୍ ହ୍ରାସ ପାଇଗଲେ । ଏକ ସଙ୍ଗରେ ବିଭିନ୍ନ ବିହଙ୍ଗମ, ମର୍କଟ ଓ ପଶୁମାନେ ଚିତ୍କାର କରିବାକୁ ଲାଗିଲେ । ସତେ କ'ଣ ପ୍ରଳୟ ଆସିଗଲା କି ?

ଭୀମଭୋଇ କିନ୍ତୁ ନିର୍ଭୟ—ନିର୍ବିକାର । ଶୂନ୍ୟ ସାଧକ ଭୟ କରିବ କାହାକୁ; ବିକାରଗ୍ରସ୍ତ ହେବ କାହିଁକି ? ହଠାତ୍ ସେ ସୂର୍ଯ୍ୟଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, "ହେଇ ଦେଖ ! ମୋର ଦେବତା କିପରି ଶୂନ୍ୟରେ ସୂର୍ଯ୍ୟଙ୍କ ଦେହରେ ଅବସ୍ଥାନ କରିଛନ୍ତି । ସୂର୍ଯ୍ୟଙ୍କ ପ୍ରଖର ତେଜକୁ ହ୍ରାସ କରି ସେ କିପରି ମନ୍ଦ ମନ୍ଦ ହସୁଛନ୍ତି ? ହେଇ ଦେଖ..., ସମସ୍ତେ ଚାହିଁ ଦେଖ !"

ସମସ୍ତେ ଚାହିଁ ଦେଖିଲେ, ଆକାଶରେ ଉଦିତ ସୂର୍ଯ୍ୟ ଶ୍ରୀଜଗନ୍ନାଥ ପାଲଟିଯାଇଛନ୍ତି । ଲିଭିଯାଇଛି ସୂର୍ଯ୍ୟଙ୍କ ପ୍ରଖର ଆଲୋକ । ସେହି ସୂର୍ଯ୍ୟ

ଦେହରେ ଦୁଇଟି ଗୋଲ୍‌କାର ଚକ୍ଷୁ । ତା' ତଳେ ବର୍ତ୍ତୁଳ ଅଧର । ସେ ଅଧରରେ ମନ୍ଦ ମନ୍ଦ ହସ ।

ବିସ୍ମିତ ହୋଇଗଲେ ଉପସ୍ଥିତ ଲୋକେ । ସମସ୍ତଙ୍କର ହାତ ଯୋଡ଼ି ହୋଇଗଲା ଓ ପ୍ରତ୍ୟେକ ତାଙ୍କର ଯୁକ୍ତହସ୍ତକୁ ମୁଣ୍ଡରେ ଲଗାଇ ପ୍ରଣାମ କଲେ ଶୂନ୍ୟ ଦେବତା ମହାପ୍ରଭୁ ଜଗନ୍ନାଥଙ୍କୁ ।

ପୁଣି ଖ୍ରୀମଭୋଇ କହିଉଠିଲେ, "ହେଇ ଦେଖ ! ସମସ୍ତ ଶୂନ୍ୟରେ ସେହି ମହାପ୍ରଭୁ ବ୍ୟାପୀ ରହିଛନ୍ତି । ସେ ଶୂନ୍ୟ-ନିରାକାର ହେଲେ ମଧ୍ୟ ଆପଣମାନଙ୍କ ପାଇଁ ରୂପ ଧାରଣ କରିଛନ୍ତି ।"

ପ୍ରକୃତରେ ସମସ୍ତ ଶୂନ୍ୟକୁ ବ୍ୟାପୀଯାଇଛନ୍ତି ମହାପ୍ରଭୁ ଜଗନ୍ନାଥ । ବିରାଟ ବିରାଟ ତାଙ୍କର ଦୁଇଟି ଚକ୍ଷୁ, ବିରାଟ ରକ୍ତିମ ଅଧର···ମହାବାହୁ । ନୀରବରେ ସେଠାରେ କେହି ଛିଡ଼ା ହୋଇପାରିଲେ ନାହିଁ । ଭୟ ବିଜଡ଼ିତ କଣ୍ଠରେ ହାତ ଦୁଇଟିକୁ ଯୋଡ଼ି ସମସ୍ତେ ଗାଇଉଠିଲେ ଶ୍ରୀଜଗନ୍ନାଥଙ୍କ ସ୍ତବ ସ୍ତୁତି ।

ଅଳ୍ପ ସମୟ···ଅଳ୍ପ ସମୟ ପରେ ପୁଣି ସବୁ ଶାନ୍ତ ହୋଇଗଲା । ଶାନ୍ତ ହେବା ସଙ୍ଗେ ସଙ୍ଗେ ଓଡ଼ିଶାର ଗଜପତି ମହାରାଜା ଦିବ୍ୟସିଂହଦେବ ପାଟହାତୀ ଉପରେ ଚଢ଼ି ସେଠାରେ ଆସି ପହଞ୍ଚିଗଲେ । ସେ ବିନୀତ ଭାବରେ ଖ୍ରୀମଭୋଇଙ୍କୁ କହିଲେ, "ହେ ସାଧକ ··· ହେ ଭକ୍ତ ! ତୁମକୁ ଶ୍ରୀମନ୍ଦିର ବାରଣ ନୁହେଁ । ତୁମେ ବର୍ତ୍ତମାନ ମହାପ୍ରଭୁଙ୍କ ଦର୍ଶନ କରିବାକୁ ଶ୍ରୀମନ୍ଦିରକୁ ଆଗମନ କର !"

ଜୟ ଜଗନ୍ନାଥ ଧ୍ୱନିରେ କମ୍ପିଉଠିଲା ଶ୍ରୀମନ୍ଦିରର ସିଂହଦ୍ୱାର ଓ ବଡ଼ଦାଣ୍ଡ । ମାତ୍ର ଖ୍ରୀମଭୋଇ ଆଉ ଆଗକୁ ଗୋଟିଏ ପାଦ ବଢ଼ାଇବାକୁ ପ୍ରସ୍ତୁତ ନୁହଁନ୍ତି । ତାଙ୍କର ଶୂନ୍ୟ ଦେବତା ଯେତେବେଳେ ଶୂନ୍ୟରେ ବିଜେ କରିସାରିଛନ୍ତି, ସେତେବେଳେ ସେ ଆଉ ଶ୍ରୀମନ୍ଦିର ମଧ୍ୟକୁ ଯିବେ କାହିଁକି ? ନିର୍ବେଦିଆମାନଙ୍କର କାଠ-ପଥର ତ କେବେ ଦେବତା ନୁହଁନ୍ତି, ତେବେ ଶ୍ରୀମନ୍ଦିର ଭିତରକୁ ଯିବେ କାହିଁକି ?

ଖାମଭୋଇ ଶ୍ରୀମନ୍ଦିରକୁ ପଛକରି ଛିଡ଼ାହେଲେ ! ତାଙ୍କ ସହିତ ଆସିଥିବା ଆଦିବାସୀମାନଙ୍କୁ କହିଲେ, "ଭାଇମାନେ ! ଏଥର ଫେରିଚାଲ; ଆମେ ଆମ ଦେବତାଙ୍କ ଦର୍ଶନ ଯେତେବେଳେ ପାଇଗଲୁ ସେତେବେଳେ ଆଉ ପଥର ମନ୍ଦିର ଭିତରକୁ ଯିବା କାହିଁକି ? ଗଲେ ଆମେ ଆଉ କ'ଣ ବା ଦେଖିବା ?"

ସେମାନଙ୍କ ଭିତରୁ ଜଣେ କହିଲେ, "ଏତେ ବାଟ ଯେତେବେଳେ ଆମେ ଧାଇଁ ଧାଇଁ ଆସିଛୁ, ସେତେବେଳେ ମନ୍ଦିର ଭିତରକୁ ଗଲେ କ୍ଷତି କ'ଣ ହେବ ? ତେଣୁ ସମସ୍ତେ ଯାଇ ଟିକିଏ ବୁଲିଆସିବା ।"

ଖାମଭୋଇ ମୁଣ୍ଡ ହଲାଇ କହିଲେ—"ନା-ନା..., ତା' ହେବ-ନାହିଁ । ମନ୍ଦିର ଭିତରକୁ ଯିବା ଆବଶ୍ୟକ ନାହିଁ । ତାହାହେଲେ ତୁମେ ପ୍ରଭୁଙ୍କ ପାଖକୁ ଆସି ନ ଥିଲ, ଆସିଥିଲ ବୈଦିକମାନଙ୍କର କାଠ-ପଥର ଦେବତାଙ୍କୁ ଦେଖିବାକୁ । ଆମେ ଆମର ଦେବତାଙ୍କୁ ଦର୍ଶନ କରିସାରିଛୁ; ତେଣୁ ମନ୍ଦିରକୁ ଆଉ ଯିବାର ଆବଶ୍ୟକତା ନାହିଁ ।"

ଖାମଭୋଇ ଶ୍ରୀମନ୍ଦିରକୁ ପଛରେ ରଖି ଆଗେଇ ଚାଲିଲେ ସେ ଯେଉଁଠାରୁ ଆସିଥିଲେ ସେ ଆଡ଼କୁ । ତାଙ୍କ ସହିତ କେତେକ ମହିମାଧର୍ମୀ ମଧ୍ୟ ଯୋଗଦେଲେ । ମାତ୍ର ବହୁ ଲୋକ ଛିଡ଼ାହୋଇ ରହିଲେ ମନ୍ଦିର ଭିତରକୁ ଯିବାପାଇଁ । ଯେତେବେଳେ ସେମାନେ ଏତେବାଟ ଆସିଛନ୍ତି, ସେତେବେଳେ ଶ୍ରୀମନ୍ଦିର ମଧ୍ୟକୁ ଯିବା ଉଚିତ ।

ଅଳ୍ପ କେତେପାଦ ଯାଇ ଖାମଭୋଇ ଟିକିଏ ଛିଡ଼ା ହୋଇଗଲେ । ତା'ପରେ ତାଙ୍କ ଲୋକଙ୍କୁ କହିଲେ—"ଦେଖ ଭାଇ ! ଏ ହେଉଛି ଆର୍ଯ୍ୟମାନଙ୍କର ମନ୍ଦିର । ଯାହାହେଲେ ମଧ୍ୟ ତୁମେ ଅଣଆର୍ଯ୍ୟ; ତୁମପାଇଁ ଏ ମନ୍ଦିର ନିର୍ମାଣ ହୋଇନାହିଁ । ମୁଁ ଭଲରୂପେ ଜାଣିଛି, ତୁମମାନଙ୍କୁ କେହି ମନ୍ଦିର ମଧ୍ୟରେ ପୂରାଇ ଦେବେ ନାହିଁ । ତେଣୁ ତୁମ୍ଭେମାନେ ଆଉ ଏଠାରେ ନ ରହି ମୋ ସହିତ ଫେରିଚାଲ ।"

ଯେଉଁମାନେ ମନ୍ଦିର ଭିତରକୁ ଯିବାକୁ ଛିଡ଼ା ହୋଇଥିଲେ, ସେମାନଙ୍କ ଭିତରୁ କେତେକ ଏକ ସଙ୍ଗରେ କହିଉଠିଲେ, "ଆମେ କ'ଣ ତୁମର ଗୋଡ଼ାଣିଆ ହୋଇ ଏତେବାଟ ଆସିଥିଲୁ ? ଆମେ ଯେତେବେଳେ

ଏତେବାଟ ଆସିଛୁ ସେତେବେଳେ ମନ୍ଦିର ଭିତରକୁ ଯିବାରେ ଆପତ୍ତି କାହିଁକି ?"

—"ଦେଖ ! ଶେଷଥର ପାଇଁ ମୁଁ ସମସ୍ତଙ୍କୁ କହୁଛି, ଆର୍ଯ୍ୟମାନଙ୍କ ପାଖରେ ତୁମେ ଚିରଦିନ ହେୟ ଆଉ ଅବହେଳିତ । ଗୁହକ ଶବର ଭଗବାନ ରାମଚନ୍ଦ୍ରଙ୍କର ମଇତ ଥିଲେ । ରାମଚନ୍ଦ୍ର ମଧ୍ୟ ଏହି କଳିଙ୍ଗର ପମ୍ପାସର ନିକଟ ଶବରୁଣୀ ଘରେ ଅତିଥି ହୋଇ ତା'ର ଅଇଁଠା ଖାଇଥିଲେ । ସେହିଭଳି ଶ୍ରୀକୃଷ୍ଣଙ୍କର ପରମଭକ୍ତ ଥିଲେ ଜାରା ଶବର । ସମସ୍ତଙ୍କଠାରୁ ବଡ଼ କଥା ହେଉଛି, ଜଗନ୍ନାଥ ଶବରଙ୍କ ଦେବତା; ତଥାପି ଆର୍ଯ୍ୟମାନେ ସେ କଥାକୁ ସ୍ବୀକାର ନ କରି ଆମକୁ ତୁଚ୍ଛ ବୋଲି ମନେକରନ୍ତି । ତେଣୁ ତୁମେ ସମସ୍ତେ ଫେରିଚାଲ । ଯଦି ନ ଯିବ ତେବେ ପରେ ମୋତେ ଦୋଷ ଦେବନାହିଁ ।"

ଭୀମଭୋଇ ତାଳପତ୍ରର ବଡ଼ ଛତ୍ରଣାଟି ମୁଣ୍ଡ ଉପରେ ଧରି ବେତଖଣ୍ଡିକୁ କାଖରେ ଜାକି ଚାଲିଲେ ସେ ଯେଉଁଆଡୁ ଆସିଥିଲେ ସେଆଡ଼କୁ । ତାଙ୍କ ପଛରେ କେତେକ ମହିମାଧର୍ମୀ ଯୋଗଦେଲେ ।

ସେତେବେଳେ ରତ୍ନସିଂହାସନ ଉପରେ ବସିଥିବା ଶ୍ରୀଜଗନ୍ନାଥଙ୍କ ମୁଖମଣ୍ଡଳ ମ୍ଳାନ ପଡ଼ିଯାଇଥିଲା । ସତେ ଯେପରି ଶୂନ୍ୟ ଦେବତା ତା'ର ଭକ୍ତ ପଛେ ପଛେ ଚାଲିଯାଇଥିଲେ । କେବଳ ନିମିତ୍ତ ମାତ୍ର ତାଙ୍କ ବିଗ୍ରହ ସିଂହାସନ ଉପରେ ବସିଥିଲେ । ଦୂରରୁ ଅଠରନଳାଆଡୁ ଶୁଭୁଥିଲା, ଶୂନ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ଜୟ···ଅଣାକାର ପୁରୁଷର ଜୟ···ଭକ୍ତ ଭୀମଭୋଇର ଜୟ ।"

—°✻°—

---

ଭୀମଭୋଇ ଖ୍ରୀଷ୍ଟୀୟ ୧୮୫୫ ସାଲ ପାଖାପାଖି ରେଢ଼ାଖୋଲର କନ୍ଧ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ମହିମା ଧର୍ମ ଗ୍ରହଣ କରି ଅଲେଖ ନିରଞ୍ଜନଙ୍କର ଉପାସକ ଥିଲେ । ଓଡ଼ିଆ କବିମାନଙ୍କ ମଧ୍ୟରେ ସେ ଜଣେ ପ୍ରସିଦ୍ଧ କବି । ତାଙ୍କ ପୂର୍ବର ବୌଦ୍ଧ ବୈଷ୍ଣବୀୟ କବି ଅଚ୍ୟୁତାନନ୍ଦ ଦାସ ତାଙ୍କ କଳିସଂହିତାରେ ଭକ୍ତ ଭୀମଭୋଇଙ୍କ କଥା ଲେଖିଛନ୍ତି । ଆଦିସଂହିତା ଓ ନିର୍ଗୁଣ ସଂହିତାରେ ମଧ୍ୟ ଭୀମଭୋଇଙ୍କ କଥା ଅଛି । ଏହି ଘଟଣା ଦିବ୍ୟସିଂହଦେବଙ୍କ ୨୯ ଅଙ୍କରେ ଘଟିଥିଲା । ଭୀମଭୋଇ ଖ୍ରୀଷ୍ଟୀୟ ୧୮୯୫ରେ ସୋନପୁରର ଖଲିଆପାଲି ଗ୍ରାମରେ ଦେହତ୍ୟାଗ କରିଥିଲେ ।

# ଭକ୍ତ ନିଧି ପ୍ରଧାନୀ

—"ମହାପ୍ରଭୁ ! ଘରେ ମୋର ଖୁଦ କଣିକାଏ ନାହିଁ । ଆମେ ସ୍ୱାମୀ-ସ୍ତ୍ରୀ ହୋଇ ଦୁଇ, ଝିଅ ଗୋଟିଏ; ତିନିଜଣ ଲୋକ ବଞ୍ଚିବୁ କମିତି ? କେବଳ ତୋତେ ଆଶ୍ରାକରି ପଡିରହିଛୁ । ରେଳ ଷ୍ଟେସନକୁ ଯାଇଥିଲି ଯେ ଗୋଟିଏ ହେଲେ ଯାତ୍ରୀ ପାଇଲି ନାହିଁ । ଏ ଯେଉଁ କାଳ ମହରଗ ହେଲାଣି ଏଥିରେ ଦଶଟା ଟଙ୍କା ନ ହେଲେ ବଞ୍ଚିବା କେବେ ସମ୍ଭବ ନୁହେଁ । ତୋତେ ଆଶ୍ରାକରି ଏ ନିଧି ପ୍ରଧାନୀ କ'ଣ ମରିଯିବ ? ତାହାହେଲେ ତୋତେ ଆଉ ଦୀନନାଥ ବୋଲି ଲୋକେ କାହିଁକି କହିବେ ? ମହାପ୍ରଭୁ ! ମୁଁ ବେଶୀ ମାଗୁନାହିଁ; ମାଗୁଛି ମାତ୍ର ଦଶଟା ଟଙ୍କା । ଏଇଲେ ଚଳିଗଲେ ପଛକୁ ଦେଖିବା ଯାହା ହେବ । ତୁ ଦଶଟା ଟଙ୍କା ନ ଦେଲେ ଚଳିବ ନାହିଁ ।"

ଶ୍ରୀମନ୍ଦିରର ଗରୁଡ଼ ପଛରେ ଛିଡ଼ାହୋଇ ଜଣେ ହାତ ଦୁଇଟିକୁ ଟେକି ବଡ଼ ପାଟିରେ ଡାକ କହୁଥାଏ । ଗରୁଡ଼ସ୍ତମ୍ଭ ପଛ ପାଖରୁ ଅଣସର ପିଣ୍ଡି ପର୍ଯ୍ୟନ୍ତ ଲୋକରେ ଭରପୂର । ଜଣେ ଜଣେ ପଣ୍ଡା ବା ଗୁମାସ୍ତା ନିଜର ଯାତ୍ରୀଙ୍କୁ ଶ୍ରୀମନ୍ଦିର ମଧ୍ୟକୁ ନେଇ ଯାଉଥା'ନ୍ତି ମହାପ୍ରଭୁଙ୍କ ଦର୍ଶନ କରାଇବାପାଇଁ । ରତ୍ନସିଂହାସନ ଉପରେ ମହାପ୍ରଭୁ ଜଗନ୍ନାଥ ବସିଥା'ନ୍ତି ବାହୁ ମେଲାଇ । ତାଙ୍କ ବାମ ପାଖରେ ଠାକୁର ସୁଦର୍ଶନ, ଡାହାଣ ପାଖରେ ଦେବୀ ସୁଭଦ୍ରା ଓ ତାଙ୍କ ପାଖକୁ କାଦମ୍ବରୀ ନିଶାରେ ମତ୍ତଭୋଳ ବଡ଼ଠାକୁରେ ବଳଭଦ୍ର ବସିଛନ୍ତି । ସମସ୍ତେ ସେହି ମହାପ୍ରଭୁ ଜଗନ୍ନାଥଙ୍କୁ ନିଜ ନିଜର ମନକଥା ଜଣାଇବାରେ ବ୍ୟସ୍ତ । ସେ ହେଉଛନ୍ତି କର୍ତ୍ତା । ବଡଭାଇ ବଳଦେବ ତାଙ୍କ ନିକଟରେ ବସିଥିଲେ ମଧ୍ୟ ସେ ନିର୍ଲିପ୍ତ । ନିହାତି ସେଭଳି ସାଂଘାତିକ ଘଟଣା କିଛି ନ ଘଟିଲେ ସେ ତାଙ୍କ ଘୂର୍ଣ୍ଣ ଲୋଚନକୁ ମେଲାକରି କ'ଣ କିଏ କହୁଛି, କ'ଣ ହେଲା, ଏସବୁ କିଛି ବୁଝିବାକୁ ସେ ଇଚ୍ଛା ପ୍ରକାଶ କରନ୍ତି ନାହିଁ । ସୁଭଦ୍ରା ରାଣୀଭଳି ବସିଥା'ନ୍ତି ଦୁଇଭାଇଙ୍କ ମଝିରେ । ସେ ହେଉଛନ୍ତି ମୂଳ ଶକ୍ତି । ତାଙ୍କରି ଶକ୍ତିରେ ସମସ୍ତେ ଶକ୍ତିବାନ । ତଥାପି ସେ ଲୋକମାନଙ୍କ ହାନି-ଲାଭ ଶୁଣନ୍ତି ନାହିଁ । ଶୁଣନ୍ତି ଏକମାତ୍ର ଜଗନ୍ନାଥ । ତେଣୁ ତାଙ୍କୁ ହିଁ

ଭକ୍ତମାନେ ନିଜ ନିଜର ଦୁଃଖ ଜଣାଇବାକୁ ଧାଇଁଆସିଥା'ନ୍ତି ଶ୍ରୀମନ୍ଦିରକୁ । ହେଲେ ବଡ଼ ପାଟିରେ ସମସ୍ତେ ଶୁଣିଲା ଭଳି କେହି ସେଭଳି କିଛି କହନ୍ତି ନାହିଁ । ମନେ ମନେ ସମସ୍ତେ ନିଜ କଥା ଜଣାଇଥା'ନ୍ତି ।

ମାତ୍ର ଦଶଟା ଟଙ୍କା—ଦଶଟଙ୍କା ପାଇଁ ଏତେବଡ଼ ପାଟି କରି ସେ କହିଚାଲିଥା'ନ୍ତି ନିଜ କଥା । ସେ ଛିଡ଼ା ହୋଇଥା'ନ୍ତି ଗରୁଡ଼ସ୍ତମ୍ଭ ପଛରେ । ତାଙ୍କର ଆଗରେ କେତେ ନାହିଁ କେତେ ସ୍ତ୍ରୀ-ପୁରୁଷ ଦୀପଟିଏ ଜାଳି, କିଏ ବା ମହାପ୍ରଭୁଙ୍କ ସ୍ତବ-ସ୍ତୁତି ବୋଲି ନିଜର ମନକଥା ଜଣାଉଥା'ନ୍ତି । ହେଲେ କେହି ବଡ଼ ପାଟିରେ ନିଜ କଥା କହୁ ନ ଥା'ନ୍ତି । ସେଭଳି ନ କହିଲେ ଠାକୁରେ ଶୁଣନ୍ତି ବା ନ ଶୁଣନ୍ତି, ଲୋକେ ଶୁଣି କ'ଣ ଭାବିବେ ସେଥିପାଇଁ ଲଜ୍ଜା ଆସୁଥାଏ ଲୋକଙ୍କର ।

ତାଙ୍କର କିନ୍ତୁ ସେ ଆଡ଼କୁ ଭ୍ରୂକ୍ଷେପ ନ ଥାଏ । ଶେଷଥର ପାଇଁ ସେ କହିଲେ—"ହେ ମହାପ୍ରଭୁ ! ତୋତେ କହିଦେଇ ଗଲି । ଦଶଟା ଟଙ୍କା ନ ହେଲେ ହେବ ନାହିଁ ।"

ଗରୁଡ଼ସ୍ତମ୍ଭ ପାଖରେ କେତେଜଣ ଯୁବକ ଛିଡ଼ାହୋଇ ମହାପ୍ରଭୁଙ୍କ ଶ୍ରୀମୁଖକୁ ଚାହିଁ ନିଜ ମନକଥା ଚୁପି ଚୁପି ଜଣାଉଥିଲେ । ସେମାନେ ତାଙ୍କ ବଡ଼ପାଟି ଶୁଣି ବିରକ୍ତ ହୋଇ କହିଉଠିଲେ, "ଏଇଟା ପୂରା ଭଣ୍ଡୁଡ଼ିଟାଏ । ତା' ନ ହେଲେ ଏତେ ବଡ଼ ପାଟିରେ ସେ କହନ୍ତା ? ସତେ ଯେପରି ଠାକୁରେ ତା' କଥା ଶୁଣିଗଲେ । ଓହୋ..., ଦଶଟା ଟଙ୍କା ଏଇଲେ ଦିଅଁ ଯା'କୁ ଦେଇପକେଇବେ !"

କାହାର କଥାକୁ ତାଙ୍କର କାନ ନାହିଁ । ସେ ତାଙ୍କ କଥା କହିସାରି ଗରୁଡ଼ସ୍ତମ୍ଭ ପାଖରୁ ବାହାରକୁ ଚାଲିଆସିଲେ । ଠିକ୍ ବାହାରକୁ ନୁହେଁ, କେଇଟି ପାଦ ଆଗେଇ ଆସି ଦ୍ୱାର ପାଖରେ ପହଞ୍ଚି ନ ପହଞ୍ଚୁଣୁ ଜଣେ ପଣ୍ଡା କହିଲେ, "ଆହେ ପଧାନେ ! ତୁମେ ଗଲା ସେଦିନ ଯାତ୍ରୀ ଆଣି-ଦେଇଥିଲ; କାହିଁ ଆଉ ତ ଥରେ ମୋ ପାଖକୁ ଆସିନାହଁ ? ସେ ଯାତ୍ରୀ ବାବଦକୁ ଏଇନେ ଦଶଟା ଟଙ୍କା ନେଇଥା'...ପରେ ଆଉ କ'ଣ ହେଉଛି ଦେଖାଯିବ ।"

ପଣ୍ଡାଏ ଦଶଟି ଟଙ୍କା ବାହାର କରି ତାଙ୍କ ଆଗରେ ଧରିଲେ । ନିଧି ପ୍ରଧାନ ତାଙ୍କଠାରୁ ଟଙ୍କା ଦଶଟି ଧରି ଧାଇଁଲେ ପୁଣି ସେହି ଗରୁଡ଼ସ୍ତମ୍ଭ ପାଖକୁ । ସେ ସେହି ଦଶଟା ଟଙ୍କାକୁ ଉପରକୁ ଟେକି ଛଳ ଛଳ ଆଖିରେ କହିଲେ, "ପାଇଲି ମହାପ୍ରଭୁ ପାଇଲି ! ପଣ୍ଡାଏ ଦଶଟଙ୍କା ଦେଲେ । ଏହି ଦଶଟଙ୍କାରେ ବର୍ତ୍ତମାନ କାମ ଚଳିଯିବ ।"

ଯୁବକ ଦଳ ଗରୁଡ଼ସ୍ତମ୍ଭ ପାଖରୁ ସେ ପର୍ଯ୍ୟନ୍ତ ଯାଇ ନ ଥା'ନ୍ତି ! ଦଶଟଙ୍କା ପାଇ ପୁଣି ଫେରିଆସି ସେ ମହାପ୍ରଭୁଙ୍କୁ ନୋଟ୍‌ଟି ଦେଖାଇ କହିବା ଦ୍ୱାରା ସେମାନେ ବିସ୍ମିତ ହେଲେ । ଆରେ ଏ କ'ଣ, ମହାପ୍ରଭୁଙ୍କୁ କହୁ କହୁ ସେ ତା'ର ବ୍ୟବସ୍ଥା କରିସାରିଲେଣି ?

ଶ୍ରୀଜଗନ୍ନାଥଙ୍କ ସେବକ ସେ । ମହାପ୍ରଭୁଙ୍କ ଉପରେ ଭରସା କରି ତାଙ୍କ ନାମ ଗାଇ ବୁଲୁଛି । ତା'ର ଭରଣପୋଷଣ ଭାର କ'ଣ ମହାପ୍ରଭୁ ନେବେ ନାହିଁ ? ତେଣୁ ଯେତେବେଳେ ତାଙ୍କର ଅଭାବ ପଡ଼େ, ସେତେବେଳେ ସେ ମହାପ୍ରଭୁଙ୍କ ପାଖରେ ହାତ ପାତନ୍ତି । ମହାପ୍ରଭୁ କେବେ ତାଙ୍କୁ ନିରାଶ କରିନାହାଁନ୍ତି । ସେଥିପାଇଁ ସେ ଥରକୁ ଥର ତାଙ୍କ ପାଖକୁ ଧାଇଁଆସନ୍ତି । ବଡ଼ ପାଟିରେ କାଳିକୁ କହିଲାଭଳି ସେ ତାଙ୍କୁ ନିଜର ଦୁଃଖ, ଅଭାବ, ଅସୁବିଧା ଜଣାଇ ପ୍ରତିକାର ଲୋଡ଼ିଥା'ନ୍ତି ।

ସେଦିନ କଲିକତାରୁ କେତେକ ବଙ୍ଗାଳୀ ଯାତ୍ରୀ ଆସିଥା'ନ୍ତି । ମାତ୍ର କେଇଟା ଷ୍ଟେସନ ଜଟଣୀ ପର୍ଯ୍ୟନ୍ତ ଯାଇ ସେ ପୁରୀ ଏକ୍‌ସପ୍ରେସ୍‌ରେ ଡବାକୁ ଡବା ବୁଲି ଯାତ୍ରୀ ଖୋଜୁ ଖୋଜୁ ଜଣେ ତାଙ୍କୁ ଡାକ ପକାଇଲେ । ସେ ପଛକୁ ଫେରି ଦେଖିଲେ, ଜଣେ କଲିକତାର ମାରୱାଡ଼ି ତାଙ୍କୁ ଡାକୁଛନ୍ତି । ତାଙ୍କ ପାଖରେ ପହଞ୍ଚୁ ନ ପହଞ୍ଚୁଣୁ ସେ କହିଲେ—"ପଣ୍ଡାଜୀ ! ଆମକୁ ଚିହ୍ନି ପାରୁଛ ?"

ଉତ୍ତରରେ ସେ କହିଲେ, "ଏ କ'ଣ କହୁଛନ୍ତି ଆପଣ ! ମୁଁ ଆପଣଙ୍କୁ ଚିହ୍ନିବି ନାହିଁ ତ ଆଉ କାହାକୁ ଚିହ୍ନିବି ? ଆପଣ ଏହି ଦେଢ଼ବର୍ଷ-ଦୁଇବର୍ଷ ତଳେ ଆସି ନ ଥିଲେ ? ଆପଣଙ୍କର ଗୁରୁବୋଟି ଝିଅ

ପରେ ଗୋଟିଏ ପୁଅ ପାଇଁ ମୁଁ ଜଗନ୍ନାଥଙ୍କ ପାଖରେ ଅଳି କରି ନ ଥିଲି ? କ'ଣ ମହାପ୍ରଭୁ ଡାକ ଶୁଣିଲେ ତ ?"

ସେଠଜୀ ପଣ୍ଡାଙ୍କ ଗୋଡ଼ତଳେ ପଡ଼ି ତାଙ୍କ ପାଦଧୂଳି ମୁଣ୍ଡରେ ଲଗାଇ କହିଲେ, "ଆପଣ ମହାପ୍ରଭୁଙ୍କ ଲୋକ । ତାଙ୍କ ଲୋକ ହୋଇ ତାଙ୍କୁ ଗୋଟାଏ କଥା କହିଲେ ସେ ଶୁଣିବେ ନାହିଁ ? ହଁ, ମୁଁ ଦୁଇବର୍ଷ ତଳେ ଆସିଥିଲି । ବର୍ଷେ ହେବ ମୋର ପୁଅଟି ହୋଇଛି । ତା'ର ଜନ୍ମଦିନ ପୁରୀରେ ପାଳନ କରିବାକୁ ଆମେ ଆସିଛୁ । କାଲେ ଆପଣ ନ ଥିବେ, ତାହା ଆମର ବଡ଼ ଚିନ୍ତା ଥିଲା । ଯାହାହେଉ ଭଗବାନ ଆପଣଙ୍କ ସହିତ ଭେଟ କରାଇ ଦେଲେ । ଏଥର ପୁରୀ ଫେରିଗଲେ ।"

ଯାତ୍ରୀ ଯେତେବେଳେ ସେ ଆଇଗଲେ, ସେତେବେଳେ ତାଙ୍କର ଆଉ ଚିନ୍ତା କ'ଣ ? ସଙ୍ଗେ ସଙ୍ଗେ ସେ ସେହି ଗାଡ଼ିରେ ଫେରିଲେ । ତାଙ୍କୁ ଦେଖି ସେଠଙ୍କର ପିଲାମାନେ ଖୁସି । ସଙ୍ଗେ ସଙ୍ଗେ ପଣ୍ଡାଜୀ କ'ଣ ଖାଇବେ ବୋଲି ତାଙ୍କୁ ପଚାରିଲେ । କ'ଣ ସେ ଖାଇବେ ସତେ ? କାଳିଆ କ'ଣ ତାଙ୍କୁ ଖାଇବାକୁ ଦେଉନାହିଁ ଯେ, ସେ ସେଠକୁ କହିବେ—ମୁଁ ଏହା ଖାଇବି···ତାହା ଖାଇବି ! ତଥାପି ସେଠର ଶ୍ରଦ୍ଧା ହୋଇଛି ଯେତେବେଳେ ତାଙ୍କୁ ନାହିଁ କରିଦେବା ଉଚିତ୍ ନୁହେଁ । କଥା ବଞ୍ଚାଇ କହିଲେ—"ହେଉ, ମୁଁ ତ ଖାଇବି; ଏଥିପାଇଁ ଏତେ ବ୍ୟସ୍ତ କାହିଁକି ?"

ସେଠଙ୍କ ପତ୍ନୀ ତାଙ୍କ ବର୍ଷକର ପିଲାଟିକୁ ପଣ୍ଡାଙ୍କ ପାଦତଳେ ଶୁଆଇଦେଲେ । ଆଶୀର୍ବାଦ କଲେ ନିଧି ପ୍ରଧାନୀ ତାଙ୍କୁ । ପିଲାଟି ସେଠଙ୍କର ସତ; ମାତ୍ର ତାହା ଜଗନ୍ନାଥଙ୍କ ଆଶୀର୍ବାଦ । ମଝିରେ ସେ କେବଳ ନିମିତ୍ତ ମାତ୍ର । ହେଲେ ସେଠଙ୍କର ଅଗାଧ ବିଶ୍ୱାସ ତାଙ୍କ ଉପରେ । ତାଙ୍କର କଥାରେ ଠାକୁରେ ତାଙ୍କୁ ପିଲାଟିଏ ଦେଇଛନ୍ତି । ତେଣୁ ସେଠ କଲିକତାରୁ ତାଙ୍କପାଇଁ ଲୁଗାପଟାଠାରୁ ସୁନାର ହାରଟିଏ ପର୍ଯ୍ୟନ୍ତ ଆଣିଛନ୍ତି । ସେମାନେ ପୁରୀରେ ପହଞ୍ଚୁ ପହଞ୍ଚୁ ଯାହା ତାଙ୍କପାଇଁ ସେମାନେ ଆଣିଥିଲେ ତାହା ଦେଇଦେଲେ । ମାତ୍ର ନିଧି ପ୍ରଧାନୀଙ୍କ ମୁହଁରେ ସେଭଳି ଆନନ୍ଦ ନାହିଁ । ଯାଇତାହି ଗଣ୍ଡାଏ ଖାଇ ସେ ବାହାରିଗଲେ ହେଲା । ଏତେ ଧନ-ସମ୍ପତ୍ତି ତାଙ୍କର କ'ଣ ହେବ ?

ଗତକାଲ ରାତ୍ରରେ ପିଲାଏ ତାଙ୍କର ପେଟପୂରା କରି ଟଣ୍ଡାଏ ଖାଇ ନ ଥିଲେ । ଘରେ ସେଭଳି କିଛି ନ ଥିଲା । ତାଙ୍କ ଅଣ୍ଟା ବି ଶୂନ । ସଞ୍ଜଧୂପ ପରେ ସେ ଯେତେବେଳେ ଘରକୁ ଫେରୁଥିଲେ, ସେତେବେଳେ ମହାପ୍ରଭୁଙ୍କୁ ସେ ଜଣାଇ ଦେଇଥିଲେ, "ମହାପ୍ରଭୁ ମୋ ଅଣ୍ଟାରେ କିଛି ନାହିଁ; ଘରେ ଯାହା ଅଛି ସେଥିରେ ଆଜି ରାତିଟା ଯାଇତାହି ଚଳିଯିବ । ହେଲେ କାଲିକୁ କ'ଣ କରିବ ? ମୁଁ ତୋତେ କହିଦେଲି, ତୁ ଯାହା କରିବୁ !"

ସେଠ୍‌ଙ୍କଠାରୁ ଧନ ପାଇ ନିଧି ପ୍ରଧାନୀ ଯେତେବେଳେ ଘରକୁ ଆସିଲେ, ସେତେବେଳେ ତାଙ୍କ ସ୍ତ୍ରୀ ସ୍ୱାମୀଙ୍କ ହାତରେ ଏତେଗୁଡ଼ାଏ ଧନ-ଦରବ ଦେଖି ଧାଇଁଆସିଲେ ନେଇଯିବାକୁ । ପ୍ରଧାନୀ ସେସବୁ ସ୍ତ୍ରୀ ନେତ୍ରମଣିଙ୍କୁ ଦେଇ କହିଲେ—"ମହାପ୍ରଭୁ ମୋତେ ବଡ଼ୁଛନ୍ତି । ଦେଖାଯାଉ, ନିଧିଆ ଏ ଧନ ପାଇ ସେଇଥିରେ ବୁଡ଼ି ରହିଯାଉଛି ନା ନାହିଁ । ହଇଲେ ! ମୁଁ ଜଗନ୍ନାଥଙ୍କର ସେବକ ହୋଇ ଧନ-ସମ୍ପତ୍ତିରେ ଭୁଲି ରହିବ ? ଏତକ ତୁମେ ରଖ; ମୁଁ ହିଅଁଙ୍କ ପାଖରୁ ଆସେ ।"

ବାପା କ'ଣ ଆଣିଛନ୍ତି ତାହା ଦେଖିବାକୁ ଧାଇଁଆସିଲେ ତାଙ୍କର ଦୁଇଝିଅ କୁନି ଓ ଅନ୍ନପୂର୍ଣ୍ଣା । ପୂର୍ବରୁ ପ୍ରଥମ ସ୍ତ୍ରୀ'ର ସେହି ଗୋଟିକ ଝିଅ ଦୁର୍ଗାମଣିକୁ ବାହା ଦେଇ ସାରିଛନ୍ତି । ତା'ପରେ ରାଧାକୁ ରଘୁନାଥ ପଣ୍ଡା, ବୁଡ଼ୀଆକୁ ଲିଙ୍ଗରାଜ ପୁଷ୍ପାଳକଙ୍କୁ ବାହାଦେବା ହୋଇସାରିଛି । ନାଗୁ ପଣ୍ଡା ସହିତ କୁନିର ବାହାଘର ପଡ଼ିଛି । କୁନି ଚାଲିଗଲା ପରେ ଆଉ ରହିବ ଅନୁ । ଅନୁକୁ କାହା ହାତରେ ଦେଇଦେଲେ ତେଣିକି ଆଉ ତାଙ୍କର ଚିନ୍ତା ନାହିଁ । କଳିକାଳ ଷାଠିଏ । ଷାଠିଏ ବର୍ଷ ମହାପ୍ରଭୁ ତାଙ୍କୁ ବଞ୍ଚାଇଲେ ଯଥେଷ୍ଟ । ପୁଅ ତ ନାହିଁ; ତେଣୁ ସତ୍ରୁ ତାଙ୍କ ପୁଅ ବଟକୁ ପୁଅକରି ନେବାକୁ ଯାଚୁଛନ୍ତି । ଜଗନ୍ନାଥ ଯଦି କହିବେ ତେବେ ବଟକୁ ପୁଅକରି ଆଣିବେ । ସେ ଯଦି ମହାପ୍ରଭୁଙ୍କୁ ଚାହିଁବ ତେବେ ମହାପ୍ରଭୁ ତାକୁ ବଞ୍ଚାଇ ରଖିବେ । ତା'ପାଇଁ ଚିନ୍ତା କରିବାର କିଛି ନାହିଁ ।

ସେଠ୍ କଲିକତାରୁ ନିଧିଙ୍କ ପାଇଁ ମଠାଲୁଗା, ନେତ୍ରମଣିଙ୍କ ପାଇଁ ସିଲ୍‌କ ଶାଢ଼ୀ, ସବୁ ଝିଅଙ୍କ ପାଇଁ ଭଲ ଭଲ ଶାଢ଼ୀ ଆଣିଦେଇଛନ୍ତି ।

ଟଙ୍କା ଯାହା ଦେଉଛନ୍ତି ତାହା ସେ ଗଣିନାହାଁନ୍ତି । ଗଣିବା ବା କ'ଣ ଦରକାର ? ସବୁ ତ ବଡ଼ଦେଉଳରେ ସେ କାଳିଆ ଦେଉଛୁ । ଖାଲି ମ... ବଢ଼ିବାକୁ । ଏ ଧନ-ଦରବ ପାଇ ନିଧି କ'ଣ କରୁଛୁ ଦେଖିବାକୁ ସତେ···, ନିଧି ପ୍ରଧାନୀ କ'ଣ ଏଭଳି ଅମଣିଷ ହୋଇଗଲେ ଯେ, ଧନ-ସମ୍ପତ୍ତି ପାଇ ମହାପ୍ରଭୁଙ୍କୁ ଭୁଲିଯିବ ?

ସେଠ୍ ଦେଇଥିବା କନକଚକ ନେହମଣିଙ୍କୁ ଧରାଇଦେଇ ନିଧି ଧାଇଁଲେ ବଡ଼ଦେଉଳକୁ । ଜଗନ୍ନାଥଙ୍କ କଥା ଭାବି ଭାବି ଚାଲିଥା'ନ୍ତି ନିଧି ପ୍ରଧାନୀ—ଶ୍ରୀଜଗନ୍ନାଥଙ୍କ ସେବକ । ଶ୍ରୀଜଗନ୍ନାଥଙ୍କ ଆଦେଶରେ ଗଜପତି ମହାରାଜା ୨୫୭ ନିଯୋଗ ରଖିଥିଲେ ଠାକୁରଙ୍କ ସେବା ପୂଜା ପାଇଁ । ତାଙ୍କରି ମଧ୍ୟରେ ପ୍ରଧାନୀ ହେଉଛନ୍ତି ଅନ୍ୟତମ । ପ୍ରଧାନୀଙ୍କର କାମ ହେଲା, ସବୁ ଭୋଗ ସମୟରେ ପ୍ରତିହାରୀଙ୍କ ସହିତ ରୋଷକୁ ଯାଇ ଭୋଗସାମଗ୍ରୀ ଅଣାଇବାର ବ୍ୟବସ୍ଥା କରିବା ଓ ଭୋଗ କରିବାକୁ ବଡ଼ପଣ୍ଡା ତଥା ପୂଜାପଣ୍ଡାଙ୍କୁ ଡାକିଆଣି ପୂଜା ବସାଇବା । ଖାଲି ଏତିକି ନୁହେଁ; ମୁକ୍ତି-ମଣ୍ଡପର ପଣ୍ଡିତମାନଙ୍କୁ ଖେଚୁଡ଼ି ବାଣ୍ଟିବାର ଭାର ତାଙ୍କ ଉପରେ । ତେଣୁ ସକାଳଠାରୁ ମହାପ୍ରଭୁଙ୍କର ପହୁଡ଼ ପର୍ଯ୍ୟନ୍ତ ତାଙ୍କୁ ଶ୍ରୀମନ୍ଦିରରେ ରହିବାକୁ ପଡ଼େ ।

ମନ୍ଦିରକୁ ଯାଉ ଯାଉ ବାଟରେ ତାଙ୍କ ଜ୍ଞାତି ନଟ ପ୍ରଧାନୀଙ୍କ ସହିତ ଦେଖା ହେଲା । ନଟ ସେବା ବିଷୟରେ କ'ଣ କହୁଥିଲେ, ତାହା ସେ ଏ କାନରେ ପୂରେଇ ଆର କାନରେ ବାହାର କରିଦେଇ କେବଳ ହୁଁ ଟିଏ ମାରି ଆଗେଇ ଚାଲିଲେ ଦେଉଳକୁ । କିପରି ଶୀଘ୍ର ଯାଇ ଦେବେହସନ ପାଖରେ ପହଞ୍ଚିବେ, ତାହା ତାଙ୍କର ଥାଏ ମୁଖ୍ୟ ଚିନ୍ତା ।

ଅନାଉ ଅନାଉ ସେ ସାତ ପାହାଚ ଉପରେ ଗୋଡ଼ ପକାଇଲେ । ଶୀଘ୍ର ଶୀଘ୍ର ସେ ଅତିକ୍ରମ କଲେ ସାତ ପାହାଚକୁ । ତା'ପରେ ନାଟମନ୍ଦିର, ନାଟମନ୍ଦିରକୁ ଲାଗି ପୂର୍ବକୁ ଭୋଗ ମଣ୍ଡପ । ପ୍ରଧାନୀ ନାଟମନ୍ଦିରରେ ଥିବା ଗରୁଡ଼ ଖମ୍ବ ପାଖରେ ଛିଡ଼ା ହୋଇଗଲେ । ଗରୁଡ଼ଙ୍କ ଠିକ୍ଏ ବାମଆଡ଼କୁ ଟିକେ ଅନାଇଲେ ସେ ।

ଆହା···, ମହାପ୍ରଭୁଙ୍କ ରୂପ କେଡ଼େ ସୁନ୍ଦର ଦିଶୁଛି । ଚିକ୍କଣ କଳା ମୁଖରେ ଦୁଇଟି ଗୋଲ ଗୋଲ ଆଖି । ତା' ତଳକୁ ମୁହଁରେ ମିଶିଗଲା ଭଳି ନାକ । ନାକତଳେ ବିକଶିତ ଶୁନ୍ଦଭଳି ବନ୍ଧୁଲି ଅଧର । ସତେ ଯେପରି ମହାପ୍ରଭୁ ପ୍ରଧାନୀଙ୍କୁ ଦେଖି ହସୁଛନ୍ତି । ହସି ହସି କହୁଛନ୍ତି— "କ'ଣ ପ୍ରଧାନେ ! କାଲି ଯିତ ଭଳି ଆଜି ତୁମ୍ଭ ପିଲାଏ ଆଉ ଅଧପେଟ ତ ହେବେ ନାହିଁ ?"

ଭେ'କନା କାନ୍ଦପାଇଲେ ନିଧି ପ୍ରଧାନୀ । କୋହମିଶା କଣ୍ଠରେ କହିଲେ—"ମହାପ୍ରଭୁ ! ମୁଁ କ'ଣ ତୁମକୁ ଏତେ ଧନ ମାଗିଥିଲି ? ତୁଚ୍ଛାରେ ଗୁଡ଼ାଏ ଧନ ଦେଇ ଦୂରେଇ ଦେଉଛ କାହିଁକି ? ମୁଁ କ'ଣ ତୁମ ପାଖରେ ଅପରାଧ କରିଛି ? ମହାପ୍ରଭୁ ! ମୁଁ ଗରିବ ହେବାକୁ ଚାହେଁ; ମୋତେ ଗରିବ କର । କିନ୍ତୁ ତୁମ ସେବାରୁ ମୋତେ ଅଲଗା କରନାହିଁ । ମୁଁ ଜାଣିଛି, ଧନ ପାଇଲେ ମଣିଷ ମନରେ ଗର୍ବ ଆସେ । ଗର୍ବ ଆସିଲେ ତୁମଠାରୁ ସେ ଦୂରେଇଯାଏ । ତେଣୁ ମୁଁ ଧନ ଚାହେଁନାହିଁ ମହାପ୍ରଭୁ; ମୋତେ ଗରିବ କର···ଗରିବ କର !"

ଖୁବ୍ ବଡ଼ ପାଟିରେ ଡାକ କହୁଥା'ନ୍ତି ନିଧି ପ୍ରଧାନୀ । ତାଙ୍କ ପାଟି ୪୭ ହାତରେ ୪୭ ହାତ ଝିପି ଜଗମୋହନକୁ ଶୁଭୁଥାଏ । ପ୍ରଧାନୀଙ୍କ ପାଟି ଶୁଣି ଅନ୍ୟ ସେବକମାନେ ଧାଇଁଆସିଲେ । ପୂଜାପଣ୍ଡା ମୋହନ ଗୋସେଇଁ ପଚାରିଲେ—"ପ୍ରଧାନୀ ! ତୁମର କ'ଣ ହେଲା; କାହିଁକି ଏଭଳି କାନ୍ଦୁଛ ?"

ଉତ୍ତର ନାହିଁ ତାଙ୍କର । ସେ ଖାଲି କାନ୍ଦୁଥା'ନ୍ତି । ଠକ୍ ଠକ୍ ହୋଇ ଲୁହ ଆଖିରୁ ବାହାରି ଗଣ୍ଡ ଦେଇ ତଳକୁ ବୋହି ଆସୁଥାଏ । ହୃଦୟର କୋହରେ ସେ ନିରୁତ୍ତର ହୋଇପଡ଼ିଥା'ନ୍ତି । ତାଙ୍କ ଛାତି କେବଳ ଉଠୁଥାଏ ପଡ଼ୁଥାଏ । ମହାପ୍ରଭୁଙ୍କ ନାମ ସୁଦ୍ଧା ପାଟିରୁ ବାହାରୁ ନ ଥାଏ । ସତେ-ଯେପରି ଶୂନ୍ୟ ଘଟ ପୂର୍ଣ୍ଣ ହୋଇଯାଇଛି । ମୁହଁରେ କୌଣସି ଭାଷା ନାହିଁ । ଶୂନ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ କେବଳ ଝରିପଡ଼ୁଛି ଧାର ଧାର ହୋଇ ଲୁହ ।

ସମଗ୍ର ପରିବେଶ ନୀରବ । ଶହ ଶହ ଭକ୍ତ ନାଟମଣ୍ଡପ, ଜଗମୋହନ ଭିତରେ ଓ ବାହାରେ ଛିଡ଼ା ହୋଇଥିଲେ ମଧ୍ୟ କାହାର ତୁଣ୍ଡରେ ଭାଷା ନାହିଁ । ଏତିକିବେଳେ ଜଣେ ସାଧୁ ଭସ୍ମବିଲେପିତ ହୋଇ ସେଠାରେ ଛିଡ଼ା ହୋଇଥିଲେ । ତାଙ୍କ ହାତରେ ଏକ ଦକ୍ଷିଣାବର୍ତ୍ତିକ ଶଙ୍ଖ ଥିଲା । ସେ କ'ଣ ଭାବି ସେହି ଶଙ୍ଖଟି ମୁହଁରେ ଲଗାଇ ଫୁଙ୍କି ଦେଲେ । ଶଙ୍ଖର ସ୍ୱରରେ କମ୍ପି ଉଠିଲା ଶ୍ରୀମନ୍ଦିର ।

ସେତେବେଳେ ବି ମହାପ୍ରଭୁ ହସୁଥିଲେ । କେଉ କେଉ ହୋଇ ହସ ତାଙ୍କ ମୁହଁରୁ ଝରିପଡ଼ୁଥିଲା ।

—:*:—



# ମହିମାମୟ ଶ୍ରୀଜଗନ୍ନାଥ

ବଡ଼ଦାଣ୍ଡରେ ପହଞ୍ଚିବା ମାତ୍ରେ ଦାଣ୍ଡର ଧୂଳିକୁ ମୁଣ୍ଡରେ ମାରିଲେ । ଏହି ଦାଣ୍ଡରେ କେତେ ନାହିଁ କେତେ ଭକ୍ତ ଚାଲିଯାଇ ନାହାନ୍ତି; ପୁଣି ମହାପ୍ରଭୁଙ୍କ ରଥ ଏହି ଦାଣ୍ଡରେ ଶ୍ରୀମନ୍ଦିରରୁ ଗୁଣ୍ଡିଚା ମନ୍ଦିରକୁ ଗଡ଼ିଆସେ । ଗୁଣ୍ଡିଚା ମନ୍ଦିରରେ ଗୋଟିଏ ସପ୍ତାହ ରହି ଦଶମୀ ଦିନ ବାହୁଡ଼ିଯାଏ ଶ୍ରୀମନ୍ଦିରକୁ । ଏହିଭଳି ଦାଣ୍ଡ କ'ଣ ଆଉ କେଉଁଠି ଅଛି ? ମହାପ୍ରଭୁ ଜଗନ୍ନାଥ ପତିତପାବନ ନାମ ବହିଛନ୍ତି । ଯେଉଁମାନେ ପତିତ, ସେହିମାନଙ୍କୁ ଉଦ୍ଧାର କରିବାପାଇଁ ସେ ହୋଇଛନ୍ତି ପତିତପାବନ । ସେଥିପାଇଁ ନବଦିନ ଯାତ୍ରାରେ ସେ ଶ୍ରୀମନ୍ଦିରରୁ ଆସି ସିଂହଦ୍ୱାରରେ ଥିବା ରଥରେ ବିଜେ କରନ୍ତି । ପତିତ ଜନ—ଯେଉଁମାନଙ୍କୁ ମନ୍ଦିରରେ ପ୍ରବେଶ ନିଷେଧ; ସେହିମାନେ ତାଙ୍କୁ ରଥ ଉପରେ ଦର୍ଶନ କରି ଧନ୍ୟ ହୁଅନ୍ତି ।

ସମସ୍ତଙ୍କ ସହିତ ସେମାନେ ଧାଇଁ ଚାଲିବେ ଆଗକୁ—ଶ୍ରୀମନ୍ଦିର ଆଡ଼କୁ । ଗୁଣ୍ଡିଚା ମନ୍ଦିରଠାରୁ ଶ୍ରୀମନ୍ଦିର ବେଶି ବାଟ ନୁହେଁ । କୋଶେ-ଖଣ୍ଡେ ହେବ କି ନାହିଁ । ସେ ଆସାମରୁ ଧାଇଁ ଧାଇଁ ଆସିଛନ୍ତି, ତାଙ୍କ ପାଖରେ ଏଇତକ ବାଟ ଯିବାପାଇଁ ଅସୁବିଧା କ'ଣ ? ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଜୟ, ଠାକୁର ଶ୍ରୀବଳଭଦ୍ରଙ୍କ ଜୟ, ମହାଦେବୀ ଶ୍ରୀସୁଭଦ୍ରାଙ୍କ ଜୟ—ଧ୍ୱନି ଦେଇ ଯାତ୍ରୀମାନେ ଧାଇଁ ଚାଲିଥା'ନ୍ତି ଶ୍ରୀମନ୍ଦିର ଆଡ଼କୁ । ବଳଗଣ୍ଡି ବାଙ୍କ ବୁଲିଗଲେ ଶ୍ରୀମନ୍ଦିର ଦେଖାଗଲା । ବଡ଼ଦେଉଳର ନୀଳଚକ୍ର ଉପରେ ପତିତପାବନ ବାନା ଫର ଫର ହୋଇ ଉଡ଼ୁଛି । ସମସ୍ତେ ନୀଳଚକ୍ରକୁ, ପତିତପାବନ ବାନାକୁ ନମସ୍କାର କଲେ । ଆଉ କିଛି ବାଟ ଆଗେଇଗଲା ପରେ ସିଂହଦ୍ୱାର ପାଖରେ ବଡ଼ଦାଣ୍ଡ ଉପରେ ତିନୋଟି ରଥ ଥୁଆ ହୋଇଥିବା ଦେଖାଗଲା । ପୁଣି ମହାପ୍ରଭୁଙ୍କର ଜୟ-ଜୟ-କାର ଧ୍ୱନିରେ ଦାଣ୍ଡ କମ୍ପି ଉଠିଲା ।

ବଡ଼ଦାଣ୍ଡରେ ପଶ୍ଚିମରେ ସିଂହଦ୍ୱାର ନିକଟରେ ଶ୍ରୀଜଗନ୍ନାଥଙ୍କ ରଥ ଥୁଆ ହୋଇଛି । କେବଳ ଶ୍ରୀଜଗନ୍ନାଥଙ୍କର ନୁହେଁ; ଶ୍ରୀବଳଭଦ୍ର ଓ ଦେବୀ ଶ୍ରୀସୁଭଦ୍ରାଙ୍କ ରଥ ଧାଡ଼ି ହୋଇ ଥୁଆହୋଇଥାଏ । ଶ୍ରୀଜଗନ୍ନାଥଙ୍କ ରଥ ଉପରେ ହଳଦିଆ କପଡ଼ା ଘୋଡ଼ାଯାଇଥାଏ । ଦେବୀ ସୁଭଦ୍ରାଙ୍କ ରଥ ଉପରେ ଘୋଡ଼ାଯାଇଥାଏ କଳା କପଡ଼ା । ସେହିଭଳି ମହାପ୍ରଭୁ ବଳଭଦ୍ରଙ୍କ ରଥ ଉପରେ ସବୁଜ କପଡ଼ା ଦିଆଯାଇଥାଏ । ତେଣୁ ଯେଉଁମାନେ କେଉଁ ରଙ୍ଗ କେଉଁ ଠାକୁରଙ୍କର ଜାଣନ୍ତି, ସେମାନଙ୍କୁ ରଥ ଚିହ୍ନିବାରେ କୌଣସି ଅସୁବିଧା ହେଉ ନ ଥାଏ ।

ଭାରତବର୍ଷର କେଉଁ ଅଞ୍ଚଳର କେଉଁ ପଣ୍ଡା ତାହା ଶହ ଶହ ବର୍ଷ ଆଗରୁ ଠିକ୍ ହୋଇସାରିଥାଏ । ଆସାମ, ମଣିପୁର ଆଦିର ପଣ୍ଡା ମହାପାତ୍ରଙ୍କ ଗୁମାସ୍ତା କଚ୍ଛି ଦୂରରୁ ସେମାନଙ୍କୁ ଭେଟି ପାଛୋଟି ଆଣୁଥାନ୍ତି । ରଥଗୁଡ଼ିକୁ ଦେଖାଇ ଗୁମାସ୍ତା କହୁଥାନ୍ତି, ଜଗନ୍ନାଥ ଷୋଳକଳାର ଦେବତା ହୋଇଥିବାରୁ ତାଙ୍କ ରଥର ଚକ ହେଉଛି ଷୋଳ । ଜଗନ୍ନାଥ-ବଳଭଦ୍ର ଲୋକଙ୍କ ମତରେ ଦୁଇ ଭାଇ ହେଲେ ମଧ୍ୟ ପ୍ରକୃତରେ ସେ ଗୋଟିଏ ଦେବତା । କୃଷ୍ଣଲୋକ ଏହି ଆମ ପୃଥିବୀରୁ ଶ୍ୱେତଲୋକ ବୈକୁଣ୍ଠ ପର୍ଯ୍ୟନ୍ତ ସେ ହେଉଚନ୍ତି ଅଧୀଶ୍ୱର । ସେ ଚଉଦ ଭୁବନର ଦେବତା ହୋଇଥିବାରୁ ତାଙ୍କ ରଥର ଚକ ଚଉଦ । ସୁଭଦ୍ରା ବାର ରାଶି, ବାର ମାସ ଦ୍ୱାଦଶ ବ୍ରହ୍ମ ଆଦିର ହେଉଛନ୍ତି ମାଲିକଆଣୀ । ତେଣୁ ତାଙ୍କ ରଥର ଚକ ହେଉଛି ବାର । ଏହି ତିନୋଟି ରଥର ଚକକୁ ଏକାଠି ମିଶାଇଲେ ବୟାଳିଶ ହୁଏ । ଯେଉଁମାନେ ଏହି ରଥର ବୟାଳିଶଟି ଚକକୁ ଗୁଣ୍ଡିଚା ମନ୍ଦିରକୁ ଟାଣିନେଇ ପୁଣି ବାହୁଡ଼ା ଦଶମୀ ଦିନ ଶ୍ରୀମନ୍ଦିରକୁ ଫେରାଇ ଆଣନ୍ତି, ସେମାନେ ଚଉରାଶି ନର୍କରୁ ଉଦ୍ଧାର ପାଆନ୍ତି ।

ଗଲା ଜ୍ୟେଷ୍ଠ ପୂର୍ଣ୍ଣମୀ ଦିନ; ହେଇଟିକି···ଏ ଯେଉଁ ସ୍ନାନମଣ୍ଡପ ଦେଖାଯାଉଛି, ସେହି ମଣ୍ଡପକୁ ଦିଅଁମାନେ ଆସିଥିଲେ ସ୍ନାହାନପାଇଁ । ଏ ବିଶ୍ୱରେ ଯେତେ ତୀର୍ଥ ଅଛି ସେହିସବୁ ତୀର୍ଥର ଜଳ ଗୁପ୍ତରେ ଏହି ଶ୍ରୀକ୍ଷେତ୍ରର କୂଅ-ପୋଖରୀ ଆଦିରେ ପ୍ରବେଶ କରନ୍ତି । ଶ୍ରୀମନ୍ଦିରର ଉତ୍ତର ଦ୍ୱାର ନିକଟରେ ଶୀତଳାଙ୍କ ଆଗରେ ସୁନା କୂଅ ଅଛି । ସେହି ପାଣିରେ

ସୁଦର୍ଶନଙ୍କ ସହିତ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ସ୍ନାହାନ କରନ୍ତି । ସ୍ନାନ ପରେ ସଞ୍ଜ ବୁଡ଼ ପୂର୍ବରୁ ମହାପ୍ରଭୁମାନେ ହାତି ବେଶ ହୁଅନ୍ତି । ତା'ପରେ ଅବଡ଼ାଭୋଗ ପାଇଁ ବଡ଼ାହୁଏ । ଭୋଗ ସରିଲା ପରେ ଦଇତା ଓ ଅନ୍ୟାନ୍ୟ ସେବକମାନେ ତାଙ୍କୁ ଘେନିଯା'ନ୍ତି ଅଣବସର ପିଣ୍ଡିକୁ । ସ୍ନାନପୂର୍ଣ୍ଣିମୀଠାରୁ ଉକ୍ତ ଅମାବାସ୍ୟା ପର୍ଯ୍ୟନ୍ତ ଦଇତାପତିମାନେ ବଡ଼ଦେଉଳ ଭିତରେ ଅଣବସର ପିଣ୍ଡିରେ ଗୁପ୍ତରେ ପୂଜା କରନ୍ତି । ବାହାରେ ଦଶାବତାର ଚିତ୍ରପଟ ରୁହେ ଓ ଭକ୍ତମାନେ ତାଙ୍କୁ ଦର୍ଶନ କରିଥା'ନ୍ତି । ଆଷାଢ଼ ମାସ ଶୁକ୍ଳ ଦ୍ୱିତୀୟା ଦିନ ଶ୍ରୀଗୁଣ୍ଡିଚ୍ଚା ଯାତ୍ରା ହୁଏ । ପ୍ରଥମେ ଦଇତାମାନେ ସୁଦର୍ଶନଙ୍କୁ ପହଣ୍ଡି ବିଜେ କରାଇ ମା' ସୁଭଦ୍ରାଙ୍କ ରଥରେ ସ୍ଥାପନା କରନ୍ତି । ତା'ପରେ ଆସନ୍ତି ବଳଭଦ୍ର । ସେ ବିଜେ କରନ୍ତି ତାଙ୍କର ତାଳଧ୍ୱଜ ରଥ ଉପରେ । ବଳଦେବଙ୍କ ପରେ ଦଇତାମାନେ ସୁଭଦ୍ରାଙ୍କୁ କାନ୍ଧରେ ବୋହିଆଣି ଦର୍ପଦଳନ ରଥରେ ବିଜେ କରାନ୍ତି । ଶେଷରେ ଆସନ୍ତି ତ୍ରିଭୁବନର ଈଶ୍ୱର ଶ୍ରୀଜଗନ୍ନାଥ । ତାଙ୍କୁ ପହଣ୍ଡି ମଣାଇ ତାଙ୍କ ରଥ ନନ୍ଦିଘୋଷରେ ସ୍ଥାପନା କରନ୍ତି । ଶ୍ରୀଜଗନ୍ନାଥ ଆସି ରଥରେ ବସିଲା ପରେ ଗଜପତି ମହାରାଜାଙ୍କୁ ନିମନ୍ତ୍ରଣ କରାଯାଏ ଛେରାପହଁରା ପାଇଁ । ମହାରାଜ ଛେରାପହଁରା କଲା ପରେ ଘୋଡ଼ା ଓ ସାରଥୀ ରଥକୁ ଆସନ୍ତି ଓ ରଥ ଟଣାଯାଏ ।

ଧାଇଁ ଧାଇଁ କାହିଁ କେତେ ଦୂରରୁ ସେମାନେ ଆସିଛନ୍ତି; ତେଣୁ ବିଶ୍ରାମ ନେବା ଦରକାର । ଆଜି ନେତ୍ରୋତ୍ସବ—କାଲି ଶ୍ରୀଗୁଣ୍ଡିଚ୍ଚା—କାଲି ରଥ ଟଣା ହେବ । ସାରାଦିନଟା ରହିବା'କୁ ପଡ଼ିବ ବଡ଼ଦାଣ୍ଡରେ । ଏଇ ତ ଆଷାଢ଼ ହେଲା । ବର୍ଷା ନାହିଁ; ଟାଣ ଖରା ର ଝାଳ ବୋହି ଦେହ କ'ଣ ହୋଇଯାଉଛି । ସେଥିପାଇଁ ଆଜି ଦିନଟା ଏବା ବିଶ୍ରାମ ଲୋଡ଼ା । ତଥାପି ସେମାନେ ଲୋକ ଭିଡ଼ ମଧ୍ୟରେ ଯାଇ ଥରେ ମହାପ୍ରଭୁଙ୍କୁ ଦର୍ଶନ କଲେ ।

ତାଙ୍କପାଇଁ ରହିବା ସ୍ଥାନ ପଣ୍ଡା ଠିକ୍ କରିଦେଲେ । ସବୁ ଯୋଗାଡ଼ କରିଦେଲେ ରାନ୍ଧି-ବାଢ଼ି ଖାଇବାପାଇଁ । ସଙ୍ଗେ ସଙ୍ଗେ ମଧ୍ୟ ମାଇପେ ଲାଗିପଡ଼ିଲେ ରୋଷେଇରେ ।

× × ×

ସୁନାକର ତାଙ୍କ ସ୍ତ୍ରୀ ରମା, ଜ୍ୟେଷ୍ଠ ପୁଅ ବଳିଆକୁ ଧରି ଆସାମର ଅନ୍ୟମାନଙ୍କ ସହିତ ଆସିଥା'ନ୍ତି । ସୁନାକରଙ୍କ ବାପା ହରି ପୁରସ୍ତମ ନିକଟରେ ଚନ୍ଦନପୁର ଅଞ୍ଚଳରୁ ଆସାମ ଯାଇ ସେଠାରେ ବାହା ହୋଇ ରହିଗଲେ । ସୁନାକର ପିଲାଦିନେ ତାଙ୍କ ବାପାଙ୍କଠାରୁ ମହାପ୍ରଭୁ ଜଗନ୍ନାଥଙ୍କ ବିଷୟରେ ବହୁ କଥା ଶୁଣିଥା'ନ୍ତି । ତାଙ୍କ ବାପା ଅନେକଥର କହିଛନ୍ତି, ଜଗନ୍ନାଥଙ୍କ ଯୋଗୁ ଓଡ଼ିଆମାନେ ଯେଉଁଭଳି ବଳବାନ ସେହିଭଳି ଧର୍ମୀ ଓ ମାନୀ । ସବୁ ଓଡ଼ିଆଙ୍କର ସେ ହେଉଛନ୍ତି ଇଷ୍ଟ । ସଂସାର ରକ୍ଷା କରିବାପାଇଁ ତାଙ୍କଠାରୁ ଅବତାର ପ୍ରକଟିତ ଯାଇ ସୃଷ୍ଟି ରକ୍ଷା କରନ୍ତି । ରାମ, କୃଷ୍ଣ ଆଦି ଭଗବାନ ହେଲେ ବି ସେ ରକ୍ତ-ମାଂସ ଧାରୀ ମଣିଷ । ସେମାନେ ଜନ୍ମ ହୋଇ ତାଙ୍କ ଲୀଳା ସାରି ଶେଷରେ ଜଗନ୍ନାଥଙ୍କ ଦେହରେ ଲୀନ ହୋଇଛନ୍ତି । ଜଗନ୍ନାଥଙ୍କର ଆଦି ନାହିଁ କି ଅନ୍ତ ନାହିଁ । ତାଙ୍କ ପାଖରେ ବ୍ରାହ୍ମଣ ଯେଉଁଭଳି ଅଣଆର୍ଯ୍ୟ ଶବର ସେହିଭଳି । ତାଙ୍କୁ ଭରସା କରି କେହି କେବେ ବୁଡ଼ିଯାଇ ନାହାନ୍ତି । କେବଳ ଲୀଳାପାଇଁ ଯାହା କିଛି ସମସ୍ତ କିଏ କାହାର ହଇରାଣ ହୋଇଥାଏ ।

ବାପା ତାଙ୍କର କେତେଥର ବୁଝାଇ କହିଛନ୍ତି ଦୁଃଖ-କଷ୍ଟକୁ ପାପ ବା ନରକ ଭାବିବା ଠିକ୍ ନୁହେଁ । ଜୀବନରେ ଯାହାର ଦୁଃଖ ନାହିଁ ଜୀବନ ତାହାର ଜୀବନ ନୁହେଁ । ସେଥିପାଇଁ ତ ରାମଚନ୍ଦ୍ର ଭାଇ ଲକ୍ଷ୍ମଣ, ସ୍ତ୍ରୀ ସୀତାଙ୍କୁ ଧରି ଚଉଦ ବର୍ଷ ବଣକୁ ଯାଇଥିଲେ । ଶ୍ରୀକୃଷ୍ଣ ତ ଜନ୍ମବେଳକୁ ନିଜ ବାପ-ମା'ଙ୍କୁ ଛାଡ଼ି ଗୋପରେ ଗଉଡ଼ଙ୍କ ଘରେ ବଢ଼ିଲେ । ଭଗବାନ ବୁଦ୍ଧ ରଜାପୁଅ ହେଲେ ବି ଦୁଃଖ-କଷ୍ଟ ସହି ଉପାସ ଭୋକରେ ପଡ଼ି ଜ୍ଞାନୀ ହୋଇଥିଲେ । ତେଣୁ ଲୀଳାମୟର ଲୀଳାରେ ଦୁଃଖ-କଷ୍ଟ ଆସିବ ହିଁ ଆସିବ । ଦୁଃଖ-କଷ୍ଟ ସହି ଆଗକୁ ଆଗେଇ ଗଲେ ଅମଣିଷ ବି ମଣିଷ ହୁଏ । ଖାଲି ଭରସା କରିବାକୁ ପଡ଼େ ମହାପ୍ରଭୁଙ୍କ ଉପରେ । ସେ ସାହା ହେଲେ ଅନ୍ଧ ତା'ର ଆଖି ଫେରିପାଏ, କାଲକୁ ସବୁ ଶୁଭେ, ଗରିବ ଧର୍ମୀ ହୁଏ । ମୂର୍ଖ ପଣ୍ଡିତ ହୁଏ ।

× × ×

ସୁନାକର କେବେ ପୁରୀ ଆସିନାହାନ୍ତି । ତାଙ୍କ ଜୀବନରେ ପୁରୀ ଆସିବା ଏଇ ପ୍ରଥମ । ଇଚ୍ଛା ହେଉଥାଏ ତାଙ୍କର ଥରେ ସେ ଚନ୍ଦନପୁର-

ଆଡ଼େ ବୁଲିଯାଇ ତାଙ୍କ ପୈତୃକ ଗାଁ' ଘର ଦେଖିଆସନ୍ତେ । ହେଲେ ତାଙ୍କ ସ୍ତ୍ରୀ ଏଥିରେ ରାଜି ହୋଇପାରେ କି ନ ପାରେ । ତଥାପି ପୁରୀରେ କେତେଦିନ ସେମାନେ ରହିବେ, ଯଦି ସୁଯୋଗ ଯୁଟେ ତେବେ ସେ ନିଶ୍ଚୟ ଚନ୍ଦନପୁର ଆଡ଼େ ବୁଲି ଯିବେ ।

ରାତି ପାହିଲେ ଶ୍ରୀଗୁଣ୍ଡିଚା । ପୁରାଣରେ ଅଛି, ରଥ ଉପରେ ଜଗନ୍ନାଥଙ୍କୁ ନ ଦେଖିଲେ ଆଉ ମନୁଷ୍ୟ ଜନ୍ମ ହେବ ନାହିଁ । ତେଣୁ ଦୂର-ଦୂରାନ୍ତରୁ ଲୋକମାନେ ଆସି ଅପେକ୍ଷା କରିଥା'ନ୍ତି କିପରି ରଥ ଉପରେ ମହାପ୍ରଭୁଙ୍କୁ ସେମାନେ ଦର୍ଶନ କରିବେ । ହେଲେ ସୁନାକରର ସ୍ତ୍ରୀ ରମା ସେ କଥାକୁ ବିଶ୍ୱାସ କରେନାହିଁ । ପୁରାଣ ଶାସ୍ତ୍ରରେ ଅଛି, କଳିଙ୍ଗର ମାଟି-ଧୂଳି ପବିତ୍ର; ତା'ର ପାଣି-ପବନ ପବିତ୍ର । ସେଠି ନିଜେ ଭଗବାନ ପାପୀ-ତାପୀଙ୍କୁ ମୁକତି ଦେବାଲାଗି ଶୂରର ମୂର୍ତ୍ତି ହୋଇ ବସିଛନ୍ତି । ଯେଉଁ ଭୂଇଁରେ କୋଟି ଜଗତର ମହାପ୍ରଭୁ ବସିଛନ୍ତି ସେ ଭୂଇଁ, ପାଣି-ପବନ ପବିତ୍ର ନ ହୋଇ ଆଉ କ'ଣ ହେବ ? ରମା କହେ, ସେ ସବୁ ମିଛକଥା । ଏ ଧରାର ସବୁଠାରୁ ପବିତ୍ର ଭୂଇଁ ହେଉଛି କାଉଁର କାମ ରୂପ । ଏଠି ନିଜେ ମା' ବିଜେ କରିଛନ୍ତି । ଏ ଭୂଇଁଭଳି ଆଉ କେଉଁ ଭୂଇଁ ସମାନ ନୁହେଁ ।

ସୁନାକର କହେ, ହେଲି···ଥରେ ପୁରସ୍ତମ ଗଲେ ବୁଝିପାରିବ ସେ ଭୂଇଁ କିପରି । ଯେଉଁ ଭୂଇଁର ପାଦକୁ ନୀଳସାଗର ଧୋଇଦିଏ—ଯେଉଁ ଭୂଇଁରେ ସରଗକୁ ମୁଣ୍ଡ ଟେକି ମହେନ୍ଦ୍ର ଗିରି ଛିଡ଼ା ହୋଇଛି, ସେହି ଗିରିରେ ପୁଣି ଭଗବାନ ପରଶୁରାମ ଏବେ ବି ରହିଛନ୍ତି, ବୈତରଣୀ କୂଳରେ ମା' ବିରଜା ବସିଛନ୍ତି, ସରସ୍ୱତୀ ଝଙ୍କଡ଼ରେ ଶାରଳା ରୂପେ ପୂଜା ପାଉଛନ୍ତି; ସେହି ଭୂଇଁରେ କ୍ଷେତ୍ରଙ୍କ ରଜା ପୁରୁଷୋତ୍ତମ ରହିଛି । ସେଠାରେ ସିଦ୍ଧମାନେ ଆରାଧନା କରୁଛନ୍ତି ବିମଳା ଆଦି ଯୋଗିନୀ ଗଣଙ୍କୁ । ଚନ୍ଦ୍ରରୁ ଅମୃତ କ୍ଷରି ସାରା କ୍ଷେତ୍ରକୁ ଅମୃତମୟ କରୁଛି, ତା'ର ତୁଳନା କାହିଁ ?

କିନ୍ତୁ ରମା ସେ ସବୁ ବୁଝେନାହିଁ । ତା' ପାଖରେ କାମାକ୍ଷା ବଡ଼ । ଦେବୀ କାମାକ୍ଷାଙ୍କୁ ଭରସା କଲେ ସବୁ ବିପଦରୁ ଉଦ୍ଧାର ମିଳିବ ।

ଠିକ୍ ସକାଳ ହୋଇନାହିଁ; ଜାଗଂୁଲ ଜାଗଂୁଲ ରାତି । ସୁନାକରଙ୍କ ତିନିବର୍ଷର ପୁଅ ବଳିଆର ଝାଡ଼ା ହେଲା । ଗୋଟାଏ ଝାଡ଼ାରେ ସେ ନିଜୋରିଆ ହୋଇଗଲା । ସେତେବେଳେ ପୁରୀ ଆଉ ତା'ର ଆଖପାଖରେ ହଇଜା ଲାଗିଥାଏ । ସେଭଳି ଡାକ୍ତରଖାନାଟିଏ ବି କେଉଁଠି ନ ଥାଏ । ଟୁଣ୍ଡୁଟାଣ୍ଡିକା ଔଷଧ ନ ହେଲେ କବିରାଜଙ୍କ ଚେରମୂଳ ଉପରେ ଲୋକଙ୍କର ଭରସା ଥାଏ । ରମା କାମାକ୍ଷା ଠାକୁରାଣୀଙ୍କୁ ଡାକି ପୁଅର ସେବା କରୁଥା'ନ୍ତି । ସକାଳ ହେଲା ପରେ ପିଲାଟି ଆଉଥରେ ଝାଡ଼ା ଗଲା । ସେତିକରେ ସେ ଆଉ ଉଠି ବସି ପାରିଲା ନାହିଁ । ପଣ୍ଡା ମହାପ୍ରଭୁଙ୍କ ପହୁଣ୍ଡି ବିଜେ ପାଇଁ ବ୍ୟସ୍ତ । ତଥାପି କବିରାଜଙ୍କଠାରୁ କେଇପାନ ଔଷଧ ପଠାଇଥା'ନ୍ତି । ରମା ସେ ଔଷଧ ପୁଅକୁ ଦେଇ ଭାବୁଥା'ନ୍ତି, ମା' କାମାକ୍ଷା ନିଶ୍ଚୟ ତା' ପୁଅକୁ ଭଲ କରିଦେବେ ।

ଦିନ ପହରକ ପରେ ତାଙ୍କ ସାଙ୍ଗରେ ଆସିଥିବା ଆସାମର ଚାରି-ପାଞ୍ଚଜଣଙ୍କୁ ଝାଡ଼ା ହୋଇଗଲା । ପରେ ପରେ ମଧ୍ୟ ତାଙ୍କର ବାନ୍ତି ଆରମ୍ଭ ହେଲା । ଦି'ପ୍ରହର ବେଳକୁ ସୁନାକଆର ଝାଡ଼ା ବାନ୍ତି ଧରିନେଲା । ଏ ଅବସ୍ଥାରେ ଆଉ କିଏ ରଥ ଦେଖି ଯାଏ ? ରଥ ନ ଦେଖିଲେ ଯେ ରୋଗ ତାଙ୍କର ଭଲ ହୋଯିବ ଏହା ନୁହେଁ । କିନ୍ତୁ ଆଉ ଉପାୟ କ'ଣ ଅଛି ? ସୁନାକରଙ୍କୁ ଝାଡ଼ା ବାନ୍ତି ହେଲା ପରେ ରମାକୁ ଆଉ ବୁଦ୍ଧି ଦିଶିଲା ନାହିଁ । ସେ ନିଜକୁ ନିଜର ଭାଗ୍ୟକୁ ନିନ୍ଦା କରୁଥାଏ । ଏ ସନ ପୁରୀ ଆସିବାକୁ ସେ ନାହିଁ କରୁଥିଲା । ତା'ର ସ୍ୱାମୀ ଏବଂ ଗାଁ'ବାଲା ବାରମ୍ବାର ତାକୁ କହିବାରୁ ସେ ଇଚ୍ଛା ନ ଥିଲେ ବି ଆସିଲା । ହେଲେ ଏ କ'ଣ ହେଲା ? ଶେଷରେ କ'ଣ ବା ହେବ ? ହେ ମା କାମାକ୍ଷା ! ତୁ ଏଥିରୁ ଉଦ୍ଧାର କଲେ ଆସାମ ଗଲେ ତୋ'ର ପୂଜା କରିବି; ବଳି ଦେବି ।

ସଞ୍ଜ ପୂର୍ବରୁ ବଳିଆର ପାଟି, ଆଖି, ନିଶ୍ୱାସ ସବୁ ବନ୍ଦ ହୋଇଗଲା । ବଳିଆ ଯେ ମରିଗଲା, ଏକଥା ରମା ବିଶ୍ୱାସ କରୁ ବା ନ କରୁ ଅନ୍ୟମାନେ ଅବିଶ୍ୱାସ କଲେନାହିଁ । ଏଣିକି ବଳିଆକୁ ମଶାଣିକୁ ନେଇଯିବା କଥା । ଆଉ ଡେରି ନ କରି ଆସାମରୁ ଆସିଥିବା କେତେକ ଲୋକ ଜୋର୍‌କରି ରମାଠାରୁ ବଳିଆକୁ ନେଇ ସମୁଦ୍ର ବାଲିରେ ପକେଇଦେଇ ଆସିଲେ ।

ବଳଆ ପରେ ଆସାମରୁ ଆସିଥିବା ଗୋଟିଏ ବୁଢ଼ୀ ଚାଲିଗଲା । ତା'ପରେ ପାଳି ପଡ଼ିଲା ଆଉ ଜଣେ ଯୁବକଙ୍କର । ଏ ଭିତରେ ସୁନାକରଙ୍କର ଝାଡ଼ା ବାନ୍ତି ଟିକିଏ କମି ଆସିଥାଏ । ମାତ୍ର ଏହିଭଳି ଦୁଃଖ ବିପଦରେ ପଡ଼ି ସେ ତାଙ୍କ ଲୋକଙ୍କୁ କିଛି ନ କହି ଚାଲିଗଲେ ଦୂରକୁ—ସମୁଦ୍ର କୂଳକୁ । ସେଠାରେ ସେ କାନ୍ଦି କାନ୍ଦି ମହାପ୍ରଭୁଙ୍କୁ ତାଙ୍କ ଗୁହାରି ଜଣାଉଥା'ନ୍ତି । ତାଙ୍କର ମହାପ୍ରଭୁଙ୍କ ଉପରେ ଅବିଶ୍ୱାସ ନ ଆସିଲେ ମଧ୍ୟ ଗଭୀର ଅଭିଯୋଗ ରହିଛି ।

— "ମହାପ୍ରଭୁ ! ମୁଁ ଏହି ଉତ୍ତ୍ରଦେଶରୁ ଯାଇ ଆସାମରେ ରହିଛି । ତୁମେ ମୋର ମୋ ବଂଶର ମୋ ଜାତିର ଆରାଧ୍ୟ । ମୋ ସ୍ତ୍ରୀ କହେ, କାମାକ୍ଷୀ ଦେବୀ ସବୁ କରିପାରନ୍ତି; ତା' କଥା ସତ ହୋଇପାରେ । କିନ୍ତୁ ପିଲାଦିନେ ମୁଁ ବାପାଙ୍କଠାରୁ ଶୁଣିଛି ତୁମେ ହେଉଛ ସଚରାଚର ଜଗତର ଈଶ୍ୱର । ଜଗତର ଯେତେ ଦେବଦେବୀ ଅଛନ୍ତି ସମସ୍ତଙ୍କଠାରୁ ଉପରେ ତୁମେ । ଆଗେ ତୁମେ ଏକା ଥିଲ । ତୁମେ ଥିଲ ପୁରୁଷ—ତୁମେ ଥିଲ ନାରୀ । ପରେ ଏକରୁ ବହୁ ହୋଇ ସ୍ଥିର ହେଲ । ତଥାପି ତୁମେ ନାରୀ ଥିଲ ବୋଲି ତୁମ ନାକରେ ନୋଲକ ରହିଛି । ହେ ମହାପ୍ରଭୁ ! ତୁମକୁ ଦର୍ଶନ କରିବାକୁ ଆସି ମୋର ଏକମାତ୍ର ପୁଅ ମଲା, ମୋତେ ହଇଜା ହେଲା; ଆମେ ଯେତେଜଣ ଆସିଥିଲୁ ସେମାନଙ୍କ ମଧ୍ୟରୁ କେତେଜଣ ଚାଲିଗଲେଣି । ଆଉ କେତେ ଯେ ଯିବେ ତା କିଏ କହିବ ? ତୁମେପରା ସବୁ କରି କରାଉଛ ! ତୁମେ କ'ଣ ଇଚ୍ଛା କରିଥିଲେ ଏ ହଇଜା ଆମକୁ ଧରିଥା'ନ୍ତା ? ତୁମେ ବର୍ତ୍ତମାନ ଯାହା କଲ ମୁଁ ମୋ ମୁହଁ କାହାକୁ ଦେଖାଇବି । ମୁଁ ତ ସମସ୍ତଙ୍କୁ କହିଛି ତୁମେ ହେଉଛ ସାକ୍ଷାତ ବ୍ରହ୍ମ; ଡାକିଲେ ଜବାବ ଦିଅ । ତେବେ ଏ କ'ଣ ହେଲା ? ତୁମେ ମୋର ସର୍ବନାଶ କରି କି ଆନନ୍ଦ ପାଇଲ ? ଏ ଲୀଳାରେ ତୁମର କି ମାହାତ୍ମ୍ୟ ପ୍ରକାଶ ପାଇଲା ? ବରଂ ତୁମ ଭକ୍ତ ବୋଲି ମୁଁ କାହାକୁ କହିବି ନାହିଁ ହେଲେ ତୁମର ଜଣେ ପ୍ରଚାରକ ହୋଇ ମୋର ଏ କ'ଣ କଲ ? ମୋତେ ମାରି ଦେଇଥିଲେ ବରଂ ଭଲ ହୋଇଥା'ନ୍ତା । ଆଉ ବଞ୍ଚିରହି ଲାଭ କ'ଣ ? କାହା ଆଗରେ ମୁଁ ମୋର ପୋଡ଼ା ମୁହଁକୁ ଦେଖାଇବି ?

ହେ ମହାପ୍ରଭୁ ! ତୁମର ମହିମା ଗାଇବାକୁ ମୁଁ ଏଠିକି ଆସିନାହିଁ । ଆସାମରେ ଥିଲାବେଳେ ସମସ୍ତଙ୍କୁ ମୁଁ ତୁମର ମହିମା, ତୁମର ଗାରିମା

କେତେ ନାହିଁ କେତେ କହୁଛୁ । ଲୋକେ ଶୁଣି ହାତ ଦୁଇଟିକୁ ଯୋଡ଼ି ତୁମ ଉଦ୍ଦେଶ୍ୟରେ ମୁଣ୍ଡରେ ଲଗାଇଛନ୍ତି । ତୁମର କୃପାରେ ଆସାମର ଶଙ୍କରଦେବ ଆମ ଜାତିର କବି ହେଲେ । ହେଲେ ମୋ ବେଳକୁ ଏ କ'ଣ କଲ ?''

ଏକୁଟିଆ ପଡ଼ିଥା'ନ୍ତି ସମୁଦ୍ର କୂଳରେ ସେ । ଲୁହ ଝରାଇ ଝରାଇ ତାଙ୍କ ଆଖିରୁ ଲୁହ ସରିଯାଇଥାଏ; ମାତ୍ର ସରି ନ ଥାଏ କୋହ । କୋହ ମିଶା କଣ୍ଠରେ ସେ ତାଙ୍କ ମନର ସମସ୍ତ କଥା ସେହି ବଳୟ୍ଯାରଭୁଜ ଜଗନ୍ନାଥଙ୍କୁ ଜଣାଉଥା'ନ୍ତି । ତାଙ୍କୁ ଭୋକ ନ ଥାଏ କିମ୍ବା ଶୋଷ ନ ଥାଏ । ସେହିଭଳି ଭାବରେ ସେ କେତେ ସମୟ ପଡ଼ିରହିଛନ୍ତି ତାହା ବି ଥରୁଟିଏ ହେଲେ ସେ ଭାବୁ ନ ଥା'ନ୍ତି । ଘଡ଼ି, ପ୍ରହର, ଦିନ ଦିନ ହୋଇ କେତୋଟି ଦିନ ଏ ମଧ୍ୟରେ ଗତ ହୋଇଯାଇଛି । ହଠାତ୍ ସେ ଦେଖିଲେ, ଜଣେ ଗୋରି ହୋଇ ସ୍ତ୍ରୀ'ଟିଏ ତାଙ୍କ ଆଗରେ ଅଭଡ଼ା ହାଣ୍ଡି, ଡାଲି, ତିଅଣ, ଖଟା ଥୋଇ କହିଲେ, ''ଆରେ ବାବୁ ! ଏ କ୍ଷେତ୍ରରେ କ'ଣ କେହି ଉପବାସ ରହେ ? ଏହାକୁ ପରା ଶ୍ରୀକ୍ଷେତ୍ର କହନ୍ତି । ଶ୍ରୀ ଅର୍ଥାତ୍ ଲକ୍ଷ୍ମୀ ଏ କ୍ଷେତ୍ରର ମାଲିକଆଣୀ । ଯେଉଁ କ୍ଷେତ୍ରରେ ଲକ୍ଷ୍ମୀ ଅଛନ୍ତି ସେଠି ଅଭାବ କ'ଣ ଅଛି ? ଏ ମଧ୍ୟରେ କେତେ ଲୋକ ଏ ବାଟରେ ଯାଉ ଯାଉ ତୋତେ ଦେଖି ବିକଳ ପାଇ କେତେ ପଇସା ଫୋପାଡ଼ି ଦେଇ ଯାଇଛନ୍ତି । ତୋ'ର ସେ ଆଡ଼କୁ ନିଘା ନାହିଁ । ତୋ ସହିତ ଯେଉଁମାନେ ଆସିଥିଲେ ସେମାନେ ଫେରିଗଲେଣି ଆସାମ । ଏପରିକି ତୋ ପତ୍ନୀ ମଧ୍ୟ ତୋତେ, ତୋ ପୁଅକୁ ହରାଇ ଫେରିଯାଇଛି । ତୋ'ର ଜଗନ୍ନାଥଙ୍କ ଉପରେ ବିଶ୍ୱାସ ଅଛି, ହେଥିପାଇଁ ମହାପ୍ରଭୁ ତୋତେ ନିଶ୍ଚୟ ସହାୟ ହେବେ । ନିଜେ ମହାମାୟୀ ଲକ୍ଷ୍ମୀଙ୍କର ଆଦେଶ ହୋଇଛି, ତୋ'ର ଅନ୍ନ-ବସ୍ତ୍ରରେ ଅଭାବ ରହିବ ନାହିଁ । ତୁ ଯଦି ଶ୍ରୀକ୍ଷେତ୍ରରେ ରହିବାକୁ ଚାହୁଁ, ତେବେ ଉତ୍ତର ଦ୍ୱାରରେ ଗୋଟିଏ ଘର ଖାଲି ଅଛି; ସେଠାରେ କିଛି ବ୍ୟବସାୟ କରି ରହିବୁ । ଧନ ତୋତେ ମା' ଲକ୍ଷ୍ମୀ ଦେବେ; ସେଥିପାଇଁ ତୁ ଚିନ୍ତା କରିବୁ ନାହିଁ । ଠିକ୍ ସମୟରେ ତୋ ସ୍ତ୍ରୀ ଓ ପୁଅ ଆସି ପହଞ୍ଚିବେ ।''

—''ପୁଅ... ? ସେ ତ ମରିଛି । ଆଉ ସେ ପହଞ୍ଚିବ କିପରି ?''

—"ଆରେ କ'ଣ ହୋଇଛି କ'ଣ ନାହିଁ ସେ ବିଷୟରେ ତୋ'ର ଚିନ୍ତା କରିବା ଆବଶ୍ୟକ ନାହିଁ । ସେ ସବୁ ଚିନ୍ତା ଚିନ୍ତାମଣି କରୁଛନ୍ତି । ମହାପ୍ରଭୁଙ୍କ ଉପରେ ତୁ ଯେଉଁଭଳି ଭରସା ରଖିଛୁ, ସେହିଭଳି ରଖିଥା' । ମନେରଖ, କର୍ମର ଫଳ ତୋତେ ଅବଶ୍ୟ ଭୁଞ୍ଜିବାକୁ ପଡ଼ିବ । ତୁ ଉଚିତ୍ କର୍ମ କଲେ ଉପଯୁକ୍ତ ଫଳ ପାଇବୁ । କେବଳ ଲୀଳା ପାଇଁ ଯାହା ତୁ ଦୁଃଖ-କଷ୍ଟ ଭିତରେ ଦେଇ ଯିବୁ ।"

ସୁନାକର ଅନାଇଲି ତା' ପାଖରେ ଥୁଆ ହୋଇଥିବା ସାମଗ୍ରୀ ଆଡ଼କୁ । ସେ ସବୁ ଜିନଷର ଗନ୍ଧରେ ମହକଉଠୁଥାଏ ସେହି ଆଖପାଖ । ତାହା ଯେ ମହାପ୍ରଭୁ ଜଗନ୍ନାଥଙ୍କର ମହାପ୍ରସାଦ, ଏହା ଜାଣିବାକୁ ତାଙ୍କୁ ବାକି ରହିଲା ନାହିଁ । ସେ କେତେଦିନ ହେଲା ଖାଇନାହାଁନ୍ତି । ଦୁଃଖ ବିପଦ ଯୋଗୁ ଭୋକ-ଶୋଷ ତାଙ୍କୁ ଲାଗୁ ନ ଥିଲା । ସେହି ସ୍ତ୍ରୀ'ଲୋକଟିର ଆଶ୍ୱାସ କଥାରେ ତାଙ୍କୁ ଅନେକଟା ସୁସ୍ଥ ଲାଗିଲା । ସେ ମହାପ୍ରସାଦକୁ ମୁଣ୍ଡରେ ମାରି ତୁଣ୍ଡରେ ଦେଲେ ।

ତାଙ୍କର ପୁଅ କ'ଣ ପ୍ରକୃତ ବଞ୍ଚିଛି ? ଏହା ତ କେବେ ସତ୍ୟ ନୁହେଁ । ଭଲ ଭାବରେ ଆସାମର ଲୋକେ ଦେଖିଛନ୍ତି, ସେ ମଧ୍ୟ ପରୀକ୍ଷା କରିଛନ୍ତି । ତେଣୁ ପୁଅ ବଞ୍ଚିଛି, ଏହା କେବଳ ଉପହାସ ଛଡ଼ା ଆଉ କ'ଣ ହୋଇପାରେ ? ହଁ···ଏହା ହୋଇପାରେ, ତାଙ୍କ ସ୍ତ୍ରୀ ଆଉ ଗୋଟିଏ ପୁଅ ପ୍ରସବ କରିପାରନ୍ତି !

କିଏ ଯେପରି ତାଙ୍କ ଭିତରେ କହିଲା, କୌଣସି ବିଷୟ ଚିନ୍ତାକରିବା ତାଙ୍କର କି ବା ଆବଶ୍ୟକ ? ଚିନ୍ତାକରିବା ଚିନ୍ତାମଣିଙ୍କର କାମ ।

ନିଜ ଚିନ୍ତାରୁ ଫେରି ସୁନାକର ଦେଖିଲେ ସେହି ସ୍ତ୍ରୀ'ଲୋକଟି ଆଉ ନାହିଁ । ସେ ଆଖି ବୁଲାଇ ଚାରିଆଡ଼କୁ ଅନାଇଲେ । କାହିଁ, କେଉଁଠି ତ ସେ ଦେଖାଯାଉନାହିଁ । ତାହାହେଲେ କ'ଣ ଆଉ ସେ ଶୂନ୍ୟ ହୋଇଗଲା ?

କୌଣସି ଚିନ୍ତା କରିବା ତାଙ୍କର ଉଚିତ୍ ନୁହେଁ, ସେସବୁ ଚିନ୍ତା ଚିନ୍ତାମଣି କରିବେ । ସେ ଏଥର ଉଠିଲେ ଉତ୍ତର ଦ୍ୱାର ଆଡ଼କୁ ଯିବାପାଇଁ ।

ଠାକୁରେ ଗୁଣ୍ଡିଚା ଘର ଆଡ଼ପ ମଣ୍ଡପରୁ ଫେରିନାହାଁନ୍ତି । ସ୍ତୁତିଆଡ଼େ ଦୁଇଜା ଲଗିଥିବାରୁ ଲୋକ ଗହଳ-ଚହଳ ବେଶି ନାହିଁ । ଶ୍ରୀମନ୍ଦିରର ଉତ୍ତର ଦ୍ୱାର ପାଖରେ ଅନୁସନ୍ଧାନ କରି ଗୋଟିଏ ଖାଲିଘର ପାଇଲା । ଘରର ମାଲିକଠାରୁ ଚାବି ଆଣି ଘରଟିକୁ ସଫା କରୁ କରୁ ଘରର ଗୋଟିଏ କଣରେ ଗୋଟିଏ ପୁଡ଼ା ଦେଖିଲା । ସେ ପୁଡ଼ାଟିକୁ ଫିଟାଇ ଦେଖି ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ବିଭିନ୍ନ ରତ୍ନ ଜଡ଼ିତ ଗୁଡ଼ିଏ ସୁନାର ଗହଣା । ଏତିକିବେଳେ ସେ ଶୁଣିଲା କିଏ ଜଣେ କହୁଛି, ସେହି ଗହଣାତକ ବିକି ତୁ ଦୋକାନଟିଏ କର ।

ତାହା ଯେ ଜଗନ୍ନାଥଙ୍କର ଆଦେଶ, ଏହା ଭାବି ସେ ଗୋଟିଏ ଡାଲି-ଚାଉଳ ଦୋକାନ କଲା । ସେ ପଇସା ରୋଜଗାର କରିବାକୁ ଦୋକାନ କରିନାହିଁ । କେବଳ ସମୟ କାଟିବାକୁ, ନିଜକୁ ବଞ୍ଚାଇବାକୁ ସେ ଦୋକାନଟି କରିଛି । ବିଶେଷକରି ଯେଉଁମାନେ ଜଗନ୍ନାଥଙ୍କ ଦର୍ଶନ କରିବାକୁ ଆସୁଛନ୍ତି ତାଙ୍କର ସୁବିଧାପାଇଁ ସେ ଦୋକାନ ଖୋଲିଛି ।

ସେହିଭଳି ଭାବେ ଦୁଇବର୍ଷ ଗଲାପରେ ମୁକୁନ୍ଦ ନାମରେ ଆଉ ଜଣେ ଲୋକ ତା' ପାଖରେ ତାକୁ ସାହାଯ୍ୟ କରିବାକୁ ଆସି ରହିଥିଲା । ତା'ର ମଧ୍ୟ କେହି ନାହାନ୍ତି । ସର୍ବନାଶି ଦୁଇଜାରେ ସ୍ତ୍ରୀ ମରିଯାଇଛି । ଗୋଟିଏ ପୁଅଟିକୁ ତା' ମାମୁଁ ଘରେ ଛାଡ଼ି ଦେଇ ଆସିଛି ।

ସୁନାକରର ମନେହେଲା ଏହା ଜଗନ୍ନାଥଙ୍କର ଇଚ୍ଛା । ଦୁହେଁ ସମଧର୍ମୀ । ତେବେ ତା'ର ପୁଅଟି ଅଛି ଆଉ ନିଜର ପୁଅଟି ମରିଛି । ହେଉ..., ସବୁ ସେହି ଜଗନ୍ନାଥଙ୍କର ଇଚ୍ଛା । ସେ ସବୁ କରି କରାଉଛନ୍ତି; ମଣିଷ କେବଳ ନିମିତ୍ତ ମାତ୍ର ।

ବ୍ୟବସାୟରେ ଭଲ ଲାଭ ହେଉଥାଏ । ପ୍ରତି ମାସରେ ସେ ମୁକୁନ୍ଦର ପିଲାଟିପାଇଁ କିଛି ଟଙ୍କା ଦେଇଦିଏ । ଆଉ ଦୁହେଁ ବେଶ୍ ଭଲରେ ଚଳି ଦାନ ଖଇରାତ କରି ବ୍ୟବସାୟଟିକୁ ବଢ଼ାଇ ବଢ଼ାଇ ଗୋଟିଏ ଗୋଦାମରେ ପରିଣତ କରିଦେଇଥା'ନ୍ତି ।

ଦିନ ଯେତକ ଆଗେଇ ଯାଉଥାଏ, ସୁନାକର ସେତକ ତା' ସ୍ତ୍ରୀ'କୁ, ପୁଅକୁ ଭୁଲି ଭୁଲି ଆସୁଥାଏ । ଏ ମଧ୍ୟରେ କେତେବର୍ଷ ଗତ ହୋଇଗଲାଣି । ମୁକୁନ୍ଦର ପୁଅଟି ଟିକିଏ ବଡ଼ ହେଲା ପରେ ଆସି ତାଙ୍କୁ ସାହାଯ୍ୟ କରୁଥାଏ । ମୋଟାମୋଟି ସେ ଗତର ଦୁର୍ଦ୍ଦିନକୁ ଭୁଲି ଜଗନ୍ନାଥଙ୍କଠାରେ ଅଟଳ ବିଶ୍ୱାସ ରଖି ଦିନଗୁଡ଼ିକୁ ବିତାଇ ଦେଉଥା'ନ୍ତି ।

ମହାପ୍ରଭୁଙ୍କର ନବକଳେବର ଆସିଗଲା । କମି ଉଠିଲା ପୁଣି ବଡ଼ଦାଣ୍ଡ । ଯାତ୍ରୀଙ୍କର ସୁବିଧାପାଇଁ ସେମାନେ ବହୁ ଜିନିଷ ଆଣି ଗୋଦାମରେ ରଖିଥା'ନ୍ତି । ଫୁରୁସତ୍ ନ ଥାଏ ତାଙ୍କୁ କୌଣସି ବିଷୟ ଚିନ୍ତା କରିବାକୁ । ସବୁଦିନେ କେତେ ପୁରୁଷ କେତେ ସ୍ତ୍ରୀ ଦେଶ ବିଦେଶରୁ ଆସି ଗୋଦାମରୁ ଜିନିଷ ନେଉଥା'ନ୍ତି ।

ଗତ ପାହିଲେ ଶ୍ରୀଗୁଣ୍ଡିଚା । ଏ ମଧ୍ୟରେ କେତେ ଶ୍ରୀଗୁଣ୍ଡିଚା ଯାଇଛି । ମାତ୍ର ଏ ବର୍ଷ ନବକଳେବର ପଡ଼ୁଥିବାରୁ ଏ ଶ୍ରୀଗୁଣ୍ଡିଚାର କଥା ଅଲଗା ।

ପ୍ରାୟ ଦ୍ୱିପ୍ରହର ହେବ; କେତେକ ଯାତ୍ରୀ ସଉଦାପାଇଁ ସୁନାକର ଦୋକାନକୁ ଆସିଲେ । ହଠାତ୍ ଗୋଟିଏ ଆସାମରୁ ଆସିଥିବା ବିଧବା ସ୍ତ୍ରୀଲୋକଟି ମୁକୁନ୍ଦର ପୁଅକୁ ଅନାଇଁ କହିଲା, "ମୋ ବଳଆ ଥିଲେ ଏହିଭଳି ହୋଇସାରନ୍ତାଣି ।"

ଅହମିଆ ଭାଷାରେ ସେ ଏତକ କହୁ କହୁ ସୁନାକର ମନରେ କୌତୁହଳ ଜାତହେଲା । ଏଇ କେଇବର୍ଷ ଭିତରେ ସେ ଆସାମ ଭାଷାକୁ ଟିକିଏ ଭୁଲି ଭୁଲି ଆସିଥାଏ । ତଥାପି ଭୁଲିଲା ସ୍ମୃତି ତା' ମନ-ଆକାଶରେ ଫେଇଁଉଠିଲା । ସେ ସେହି ସ୍ତ୍ରୀଲୋକଟିକୁ କିଛି ନ କହି କେବଳ ଥରୁଟିଏ ତାକୁ ଅନାଇଲା । ତା'ର ମନେହେଲା, ଏ ସ୍ତ୍ରୀଲୋକଟି ଯେପରି ତା'ର ପରିଚିତା ।

ସ୍ତ୍ରୀଲୋକଟି ମୁକୁନ୍ଦ ପୁଅଟିକୁ ଆଉ ଟିକିଏ ଅନାଇଁ କ'ଣ ଭାବି ଟିକିଏ ଆଗେଇଆସି କହିଲା, ପୁଅ ! ତୋ ଡାହାଣ ହାତ ଦେଖାଇଲୁ । ମୁକୁନ୍ଦର ପୁଅ ଡାହାଣ ହାତଟିକୁ ଲମ୍ବାଇଦେଲା । ସେ ହାତଟିକୁ ଦେଖି

କହିଲ, "ହଁ..., ଏ ମୋ ପୁଅ ବଳିଆ । ଠିକ୍ ବଳିଆର ଡାହାଣ ହାତରେ ଯେଉଁଭଳି କଳାଯାଇ ମଦାଚି ଥିଲା, ଏ ପିଲାର ସେହିଭଳି ଅଛି । ଜନ୍ମ ହେବାର ବର୍ଷକ ପରେ ତଳେ ପଡ଼ିଯାଇ ତା' ଆଖିପତା ଫାଟିଯାଇଥିଲା, ଏବେ ବି ସେହି ଫଟାଚିହ୍ନ ବାମ ଆଖିପତାରେ ଅଛି । ମୁହଁଟି ମଧ୍ୟ ବଳିଆ ଭଳି ହୋଇଛି ।"

ସବୁକଥା ମନେପଡ଼ିଗଲା ସୁନାକରର । ତାହାହେଲେ କ'ଣ ଏ ତା'ର ସ୍ତ୍ରୀ ରମା । ସେ ଆଉ ସମ୍ଭାଳି ପାରିଲା ନାହିଁ । ପଚାରିଦେଲା, ତୁମେ କ'ଣ ସୁନାକରର ସ୍ତ୍ରୀ ରମା ?

ସ୍ତ୍ରୀଲୋକଟି ମୁଣ୍ଡ ହଲାଇଲା । ସେ ନିର୍ବାଧେ ଦେ-ଦୋ ଚହ୍ନା ହେଉଥିଲା ତା'ର ସ୍ୱାମୀ ସୁନାକରକୁ ଦେଖି । ସୁନାକର ମୁକୁନ୍ଦକୁ ପଚାରିଲା, ଭାଇ ! ତୁମର ଏହି ପୁଅଟି କ'ଣ ଜନ୍ମିତ ?

ମୁକୁନ୍ଦ କହିଲା—"ମୁଁ ଏ ପିଲାଟିକୁ ସମୁଦ୍ର ବାଲିରୁ ପାଇଥିଲି । ସେତେବେଳେ ତାକୁ କିଏ ବାଲିରେ ପକାଇଦେଇ ଯାଇଥିଲା । ସେ ବର୍ଷ ତ ଖୁବ୍ ହଇଜା ଲାଗିଥାଏ; ତେଣୁ ମୁଁ ପିଲାଟିକୁ ନେଇ ମୋ ସ୍ତ୍ରୀ'କୁ ଦେଲି । ତା' ଆରବର୍ଷ ମଧ୍ୟ ମୋ ସ୍ତ୍ରୀ ମରିଗଲା । ତେଣୁ ପିଲାଟିକୁ ମୋ ଶ୍ୱଶୁର ଘରେ ଛାଡ଼ିଦେଇଥିଲି ।"

ସୁନାକର କୁଣ୍ଢାଇପକାଇଲେ ମୁକୁନ୍ଦର ପୁଅ ସନାତନକୁ । ରମା ଆଖିରେ ଲୁହ ଭରିଗଲା । ତା'ର ସ୍ୱାମୀ ବଞ୍ଚିଛନ୍ତି ଓ ପୁଅ ବଞ୍ଚିଛି, ଏହାଠାରୁ ଆଉ ବଡ଼କଥା କ'ଣ ହୋଇପାରେ ।

ହେ ଭଗବାନ ! ଏହି କ'ଣ ତୁମର ଲୀଳା ? ତୁମକୁ ଯେ ଡାକେ ତୁମେ ତାକୁ ଏହିଭଳି ଦୁଃଖରେ କନ୍ଦାଇ କଷ୍ଟି ପଥରରେ କଷିବାକୁ ଚାହଁ । ଏଇଥିରେ କ'ଣ ତୁମର ଆନନ୍ଦ ଆସେ ? ଠକ୍ ଠକ୍ ହୋଇ ଲୁହ ଗଡ଼ିପଡ଼ିଲା ସୁନାକରଙ୍କ ଆଖିରୁ ।

ଆଜି ଦୁଃଖର ଦିନ ନୁହେଁ, ଆନନ୍ଦର ଦିନ । ଅବସାନ ହୋଇଛି ତାଙ୍କର ଦୁଃଖ ବିପଦ । ଯାହା ତାଙ୍କର ହଜିଯାଇଥିଲା, ଆଜି ସେ ସବୁ

ଫେରିପାଇଛି । ତାଙ୍କର ଇଚ୍ଛାଯିବାକୁ ମହାପ୍ରଭୁଙ୍କ ପାଖକୁ । ଦୁଃଖର ହେଉ କମ୍ବା ଆନନ୍ଦର ହେଉ ଅଶ୍ରୁ ଦି'ବୁନ୍ଦା ତାଙ୍କର ଆଗରେ ବୁହାଇଦେଲେ ମନଇଚ୍ଛା ଦି'ପଦ ମହାପ୍ରଭୁଙ୍କୁ କହିଦେଲେ, ଶାନ୍ତି ଲାଗିବ ।

ସେଦିନ ନେତ୍ରୋତ୍ସବ । ରାତି ପାହିଲେ ଶ୍ରୀଗୁଣ୍ଡିଚା । ତେଣୁ ଶ୍ରୀମନ୍ଦିର ଭିତରେ ବାହାରେ ଅସମ୍ଭବ ଲୋକ ଭିଡ଼ । ସେହି ଭିଡ଼ ଭିତରେ ରମା ଆଉ ସନାତନକୁ ଧରି ସୁନାକର ଠେଲି-ପେଲି ପଶିଗଲେ ମନ୍ଦିର ଭିତରକୁ । ସେବକମାନେ ଓ ଶ୍ରୀମନ୍ଦିରର କର୍ମଚାରୀମାନେ ସୁନାକରଙ୍କୁ ଚିହ୍ନନ୍ତି; ସେମାନେ ସାହାଯ୍ୟ କଲେ ତାଙ୍କୁ ଶ୍ରୀମନ୍ଦିର ଭିତରେ ମହାପ୍ରଭୁଙ୍କ ପାଖକୁ ଯିବାପାଇଁ ।

ସ୍ନାନପୂର୍ଣ୍ଣିମା ଦିନ ମହାପ୍ରଭୁ ରତ୍ନସିଂହାସନ ଛାଡ଼ି ସ୍ନାନମଣ୍ଡପକୁ ଆସିଥିଲେ । ସ୍ନାନ ସାରି ରାତିରେ ଫେରିଗଲେ ଅଣସର ପିଣ୍ଡିକୁ । ତା'ପରେ ତାଙ୍କୁ ଦର୍ଶନ କରିବା ମନା ହୋଇଗଲା । ଏ ମଧ୍ୟରେ ଚାଲିଗଲା ଗୋଟିଏ ପକ୍ଷ ମାସ । ତା'ପରେ ପନ୍ଦର ଦିନ ଶେଷ ହେଲା । ଅମାବାସ୍ୟା ଦିନ ପୁରାତନ ଦିଅଁଙ୍କଠାରୁ ବ୍ରହ୍ମ ଯାଇ ନୂତନ ବିଗ୍ରହଙ୍କ ମଧ୍ୟରେ ରହିଲେ । ପକ୍ଷ ପୂର୍ଣ୍ଣିମୀ ଚାଲିଗଲା । ତା'ପରେ ଅମାବାସ୍ୟା ହେଲା ଉଭା ଅମାବାସ୍ୟା । ପ୍ରତିପଦ ଦିନ ନେତ୍ରୋତ୍ସବ । ଏହିପରି ଦେଢ଼ମାସ ଦିଅଁଙ୍କ ଦର୍ଶନ କରି ନ ଥିବାରୁ ଭକ୍ତମାନେ ବ୍ୟସ୍ତ ହୋଇପଡ଼ିଛନ୍ତି । ତେଣୁ ଦେଉଳ ମଧ୍ୟରେ ଭିଡ଼ ହୋଇଯାଇଛି ।

କୌଣସିମତେ ସୁନାକର ପତ୍ନୀ ଆଉ ପୁଅକୁ ନେଇ ମହାପ୍ରଭୁଙ୍କ ଆଗରେ ପହଞ୍ଚିଗଲେ । ତା'ପରେ ସେ ତାଙ୍କର ଦୁଇହାତ ଉପରକୁ ଟେକି ଡାକଦେଲେ—"ହେ ମହାପ୍ରଭୁ...... !" ବାସ୍ ସେତିକି । ତା'ପରେ ସେ ଆଉ କିଛି କହିପାରିଲେ ନାହିଁ । ତାଙ୍କର କଣ୍ଠ ବାଷ୍ପାକୁଳ ହୋଇଗଲା । ଆଖିରୁ ବହିଚାଲିଲା ଅସରନ୍ତି ଲୋତକ ଧାର ।

ସେତେବେଳେ ମହାପ୍ରଭୁ ହସୁଥିଲେ । ସୁନାକରଙ୍କ କାନକୁ ଶୁଭୁଥିଲା—"ସୁନାକର ! ପୂର୍ବଜନ୍ମର ଦୁଷ୍କୃତି ଲାଗି ତୁମର ଏ ଦୁରାବସ୍ଥା ହେଲା । ତୁମ ଭକ୍ତି ଆଉ ନିଷ୍ଠା ଯୋଗୁ ଶେଷରେ ପତ୍ନୀ-ପୁତ୍ରଙ୍କ ସହିତ ମିଳିତ

ହେଲ । ଏଥିପାଇଁ କାହାରିକୁ ଦୋଷ ଦେବା ଉଚିତ ନୁହେଁ । ତୁମେ ତୁମ କର୍ମର ଫଳ ଭୋଗ କରୁଛ । ମହାପ୍ରଭୁ ତୁମ ପତ୍ନୀକୁ ଓ ପୁତ୍ରକୁ ପୁଣି ତୁମ ପାଖକୁ ଫେରାଇ ଦେଇଛନ୍ତି—ଏହା କ'ଣ ଯଥେଷ୍ଟ ନୁହେଁ ।"

ସୁନାକର ଲମ୍ବହୋଇ ସେଠାରେ ପଡ଼ିଯାଇ ପ୍ରଣତି ଜଣାଇଲେ । ସେ ପର୍ଯ୍ୟନ୍ତ ବି ତାଙ୍କ ପାଟିରୁ କୌଣସି କଥା ବାହାରୁ ନ ଥିଲା । ସେ ଖାଲି କାନ୍ଦୁଥିଲେ କଇଁ କଇଁ ହୋଇ ।

—ଃ✻ଃ—



# ମହାଶକ୍ତି ବିମଳା

ଦୁଃଖରେ ମ୍ରିୟମାଣ ହୋଇପଡ଼ଥା'ନ୍ତି ଯୁଧିଷ୍ଠିର । ଯେ ଯେତେ ବୁଝାଇ କହିଲେ ମଧ୍ୟ ସେ ମୋଟେ ବୁଝୁନାହାଁନ୍ତି । ସମସ୍ତେ ବୁଝାଇ ବୁଝାଇ ନିରାଶ ହେଲା ପରେ ଭଗବାନ ଶ୍ରୀକୃଷ୍ଣ ଆସିଲେ ବୁଝାଇବାକୁ । ଶ୍ରୀକୃଷ୍ଣଙ୍କୁ ଦେଖୁ ଦେଖୁ ଯୁଧିଷ୍ଠିର ପିଲାଙ୍କ ଭଳି କଇଁ କଇଁ ହୋଇ କାନ୍ଦିଉଠିଲେ । ଶ୍ରୀକୃଷ୍ଣ ତାଙ୍କୁ ବହୁ ବୁଝାଇଲା ପରେ ସେ କୋହ ମିଶା କଣ୍ଠରେ କହିଲେ— "ଭଗବାନ ! ଏ କ'ଣ ହେଲା ? ଚାରିଆଡ଼େ କ୍ରନ୍ଦନର ରୋଳ । କାହାର ସ୍ୱାମୀ ମରିଛି ତ କାହାର ବାପା ମରିଛି; କାହାର ବା ପୁଅ, ଭାଇ-ବନ୍ଧୁ ମରିଛନ୍ତି । ମୁଁ ଯେଉଁଆଡ଼କୁ ଚାହୁଁଛି, ସେଆଡ଼େ ଦେଖୁଛି ଅଶାନ୍ତିର ପୈଶାଚିକ ହସ । ବନ୍ଧୁ-କୁଟୁମ୍ବ ମାରି ମରାଇ ଆମେ ଯେଉଁ ବିଜୟ ଲାଭ କରିଛୁ ତାହାର ପରିଣତି କ'ଣ ଏହା ? ଆପଣ ଅର୍ଜୁନକୁ ମହାଭାରତ ଯୁଦ୍ଧକ୍ଷେତ୍ରରେ ଯେଉଁ କର୍ତ୍ତବ୍ୟ କରିବାକୁ କହିଥିଲେ, ସେହି କର୍ତ୍ତବ୍ୟର ଶେଷ ପରିଣତି କ'ଣ ଏହି ଦୁଃଖ ଆଉ ହାହାକାର ?"

ଗମ୍ଭୀର ହୋଇଗଲେ ଭଗବାନ ଶ୍ରୀକୃଷ୍ଣ ଧର୍ମ ଯୁଧିଷ୍ଠିରଙ୍କ କଥା ଶୁଣି । ହଁ..., ପ୍ରକୃତରେ ସେ ଅର୍ଜୁନକୁ କର୍ତ୍ତବ୍ୟ କରିବାକୁ କହିଛନ୍ତି । ଅର୍ଜୁନ ଜଣେ ବୀର । ବୀରର କର୍ତ୍ତବ୍ୟ ଶତ୍ରୁର ମନୋବୃତ୍ତି ବୁଝି ଯୁଦ୍ଧ କରିବା । ତାହା ହିଁ ସେ କରିଛି । ମାତ୍ର ସେ ଯେଉଁ ଯୁକ୍ତ କରିଥିଲା, ତାହା ସତ୍ୟରେ ପରିଣତ ହୋଇଛି । ଯୁଦ୍ଧରେ ଜ୍ଞାତି-କୁଟୁମ୍ବ, ବନ୍ଧୁବାନ୍ଧବମାନେ ମରିବା ଫଳରେ ଆତ୍ମୀୟସ୍ୱଜନ ଶୋକାତୁର । ସେମାନଙ୍କ ପତ୍ନୀମାନଙ୍କ କ୍ରନ୍ଦନରୋଳରେ ହସ୍ତିନାପୁର ନଗର କମ୍ପିଉଠୁଛି । ଏହି ଦୃଶ୍ୟ ସମସ୍ତଙ୍କଠାରୁ ଅଧିକ ମ୍ରିୟମାଣ କରିଛି ସରଳମତି ଯୁଧିଷ୍ଠିରଙ୍କୁ । ସେଥିପାଇଁ ସେ ଆଖିରୁ ଲୁହ ଝରାଇ ପ୍ରଶ୍ନ କରୁଛନ୍ତି ତାଙ୍କୁ । ଏ ପ୍ରଶ୍ନର କି ଉତ୍ତର ଦିଆଯିବ ? ମହାଭାରତ ଯୁଦ୍ଧ ପୂର୍ବରୁ ବିଷାଦଗ୍ରସ୍ତ ଅର୍ଜୁନକୁ ବୁଝାଇବାପାଇଁ ଯାଇ ସାଙ୍ଖ୍ୟ, କର୍ମ, ଜ୍ଞାନାଦି ବିଷୟ ବୁଝାଇଥିଲେ । ସେ ପର୍ବ ଶେଷ ହୋଇଯାଇଛି । ବର୍ତ୍ତମାନ ସମୟରେ ଯୁଧିଷ୍ଠିରଙ୍କୁ ଉତ୍ତର ଦେବାକୁ ପଡ଼ିବ ।

ଯୁଧିଷ୍ଠିରଙ୍କ ପ୍ରଶ୍ନ ଶୁଣି ଟିକଏ ଗମ୍ଭୀର ହେଲା ପରେ ସ୍ବତଃ ଭଗବାନଙ୍କ ମୁହଁରେ ଶ୍ରେଷ୍ଠ ହସଟିଏ ଫୁଟିଉଠିଲା । ସେ ହସି ହସି କହିଲେ, "ଆପଣଙ୍କ ଭଳି ଜ୍ଞାନୀ ବ୍ୟକ୍ତି ଯଦି ଶୋକରେ ଅଧୀର ହେବେ, ତେବେ କି ଉତ୍ତର ମୁଁ ଦେବି ? ଜ୍ଞାନୀମାନେ କ'ଣ ଦୁଃଖରେ ଏଭଳି ଆତ୍ମହରା ହୁଅନ୍ତି ? ଯାହା ଘଟିଗଲା ତାହା କେବେ ଜ୍ଞାନୀମାନେ ଚିନ୍ତା କରନ୍ତି ନାହିଁ । ବର୍ତ୍ତମାନ କ'ଣ କରାଯିବ ସେ ବିଷୟ ଚିନ୍ତା କରିବା ଆପଣଙ୍କ କର୍ତ୍ତବ୍ୟ । ବୁଦ୍ଧିମାନ ବ୍ୟକ୍ତି କେବେ ପଛକୁ ଫେରି ଅନାଏ ନାହିଁ । ଯେଉଁମାନଙ୍କ ପାଇଁ ଆପଣ ବ୍ୟସ୍ତ ସେମାନେ ଆପଣମାନଙ୍କ ପୂର୍ବରୁ ସ୍ବର୍ଗ ଗମନ କରିଛନ୍ତି । ଯେଉଁମାନେ ସ୍ବର୍ଗ ଗମନ କରିଛନ୍ତି, ତାଙ୍କପାଇଁ ଶୋକ କରିବା ଉଚିତ ନୁହେଁ । ମଣିଷର ଧର୍ମ ହେଉଛି କର୍ତ୍ତବ୍ୟ କରିବା । କର୍ତ୍ତବ୍ୟ କରି ମଲେ ସ୍ବର୍ଗପ୍ରାପ୍ତି ଘଟେ । ଯେଉଁ ବୀରମାନେ କୁରୁକ୍ଷେତ୍ର ସମର ପ୍ରାଙ୍ଗଣରେ ଯୁଦ୍ଧ କରି କରି ମରିଛନ୍ତି ସେମାନେ ନିଶ୍ଚୟ ସ୍ବର୍ଗକୁ ଯାଇଛନ୍ତି । ବର୍ତ୍ତମାନ ଆପଣଙ୍କ ପିତାମହ ଭୀଷ୍ମ ସ୍ବର୍ଗକୁ ଯିବାପାଇଁ ଅପେକ୍ଷା କରିଛନ୍ତି କୁରୁକ୍ଷେତ୍ର ଭୂମିରେ । ମୁଁ ଭାବୁଛି, ଆଉ ମନ୍ଦ କଥା ନ ଭାବି ତାଙ୍କୁ ଶେଷ ବିଦାୟ ଦେବା ବର୍ତ୍ତମାନ ଆମର କର୍ତ୍ତବ୍ୟ ।"

ଆରେ···ହଁ ତ ! ତାଙ୍କର ମୋଟେ ମନେ ନ ଥିଲା ପିତାମହଙ୍କ କଥା । ସେ ଅପେକ୍ଷା କରିଛନ୍ତି ସୂର୍ଯ୍ୟଙ୍କର ଉତ୍ତରାୟଣ ଗତିକୁ । ଅଶୁଭ କାଳରେ ସେ ପୃଥିବୀ ତ୍ୟାଗ କରିବେ ନାହିଁ ବୋଲି ଶୁଭ କାଳକୁ ଅନାଇ ରହିଛନ୍ତି । ଧନୁମାସ କାଳ ଗତ ହୋଇଯାଇଛି; ଆରମ୍ଭ ହେଉଛି ମକର ମାସ । ଏଣେ ଚନ୍ଦ୍ର କୃଷ୍ଣପକ୍ଷ ସପ୍ତମୀ ଗତ କରି ଅଷ୍ଟମୀରେ ପଦାର୍ପଣ କଲାଣି । ଆଉ ତ ବେଳ ନାହିଁ ସାମାନ୍ୟ ବିଳମ୍ବ କରିବାକୁ ।

ବ୍ୟସ୍ତ ହୋଇପଡ଼ିଲେ ଧର୍ମ ଯୁଧିଷ୍ଠିର । ଗୋଟି ଗୋଟି କରି ଭାଇ-ମାନଙ୍କର ନାଁ ଧରି ସେ ଡାକ ପକାଇଲେ—"ଆରେ ଭୀମ, ଆରେ ଅର୍ଜ୍ଜୁନ, ଆରେ କୁଆଡ଼େ ଗଲ ନକୁଳ, ସହଦେବ; ଶୀଘ୍ର ଶୀଘ୍ର ବାହାରିପଡ଼ । ତା' ନ ହେଲେ ଆଉ ପିତାମହଙ୍କ ସହିତ ଆମେ ଶେଷ କଥାବାର୍ତ୍ତା ହୋଇପାରିବା ନାହିଁ । ହେଇ···, ସୂର୍ଯ୍ୟ ଦକ୍ଷିଣରୁ ଉତ୍ତରକୁ ଆସିଗଲେଣି । ତେଣେ ପିତାମହ ଚାଲିଯିବାକୁ ତରତର ହେଉଥିବେ । ଆମେ ଠିକ୍ ସମୟରେ ନ ପହଞ୍ଚି ପାରିଲେ ବିରାଟ ଭୁଲ୍ ହୋଇଯିବ ।"

ବଡ଼ଭାଇଙ୍କ ଡାକ ଶୁଣି ବାହାରିପଡ଼ିଲେ ଭୀମ, ଅର୍ଜୁନ, ନକୁଳ ଓ ସହଦେବ । ବଡ଼ଭାଇ ପିତା ସମାନ । ସେ ଯେତେବେଳେ ଯାହା କହିଆସିଛନ୍ତି ବା କହିବେ, ତା'ର କୌଣସି ପ୍ରତିବାଦ ନ କରି ତାଙ୍କ କଥାକୁ ମାନି-ଆସିଛନ୍ତି ଓ ମାନିବେ ।

ଯୁଧିଷ୍ଠିର କହିଲେ— "ଯାହା ହେବାର ତ ହୋଇଗଲାଣି; ବର୍ତ୍ତମାନ ଚାଲ ପିତାମହଙ୍କ ପାଖକୁ । ସୂର୍ଯ୍ୟଙ୍କର ଉତ୍ତରାୟଣ ଗତି ହେଲମାତ୍ରେ ସେ ଦେହତ୍ୟାଗ କରିବେ । ଭଗବାନ ଶ୍ରୀକୃଷ୍ଣ ମୋତେ କହିଛନ୍ତି, ଅଷ୍ଟ ଦିଗପାଳମାନଙ୍କ ମଧ୍ୟରୁ ପିତାମହ ହେଉଛନ୍ତି ଶ୍ରେଷ୍ଠ । ସେ ଶାପଗ୍ରସ୍ତ ହୋଇ ଆସିଥିଲେ ଜନନୀ ଗଙ୍ଗାଙ୍କ ପବିତ୍ର କୋଳରେ ଜନ୍ମ ହେବାପାଇଁ । ଦେବୀ ଗଙ୍ଗା ତାଙ୍କର ଅନ୍ୟାନ୍ୟ ପୁତ୍ରମାନେ ଜନ୍ମ ହେବାମାତ୍ରେ ସେମାନଙ୍କୁ ଯେଉଁଭଳି ମୁକ୍ତି ଦେଇଥିଲେ, ସେହିଭଳି ମଧ୍ୟ ଭୀଷ୍ମ ପିତାମହଙ୍କୁ ମୁକ୍ତି ଦେଇଥା'ନ୍ତେ; ମାତ୍ର ଅନ୍ତଃରାୟ ହେଲେ ଶାନ୍ତନୁ । ତେଣୁ ସେ ଏତେ କାଳ ରହିଗଲେ । ଆଜି ସେ ସମସ୍ତ ମାୟା-ମମତା ତ୍ୟାଗକରି ଚାଲିଯିବେ । ସେ ଚାଲିଯିବା ପୂର୍ବରୁ ଚାଲ ସମସ୍ତେ ତାଙ୍କୁ ଅଶ୍ରୁଳ ନୟନରେ ବିଦାୟ ଦେବା । ବିଶେଷତଃ ସେ ଆମର ପରମ ହିତାକାଂକ୍ଷୀ । ସେ ଯଦି ପ୍ରକୃତ ଯୁଦ୍ଧ କରିଥା'ନ୍ତେ, ତେବେ ଆମର ହିଁ ପତନ ଘଟିଥା'ନ୍ତା । ସେ ଦୟାପରବଶ ହୋଇ ନିଜର ମୃତ୍ୟୁଭେଦ କହିଦେଇଥିବା ଯୋଗୁଁ ଆମେ ଜୟଲାଭ କଲୁ । ତା' ନ ହେଲେ ଦୁର୍ଯ୍ୟୋଧନଙ୍କ ଶହେ ଭାଇଙ୍କ ଭଳି ଆମେ କେଉଁଦିନୁ ମରିସାରନ୍ତୁଣି ।"

ଏଥିରେ କାହାରି ଦ୍ୱିମତ ହେବାର ନାହିଁ । ପିତାମହଙ୍କ ଅନ୍ତିମ କାଳରେ ତାଙ୍କୁ ସାକ୍ଷାତ କରିବା ସୌଭାଗ୍ୟର କଥା । ତେଣୁ ଶୀଘ୍ର ତାଙ୍କ ପାଖକୁ ଯିବାକୁ ହେବ । ତା' ନ ହେଲେ କର୍ତ୍ତବ୍ୟରେ ଅବହେଳା କରିଥିବା ହେତୁ ସମସ୍ତଙ୍କୁ ନର୍କ ଭୋଗ କରିବାକୁ ପଡ଼ିବ ।

ସମସ୍ତଙ୍କ ସହଯୋଗରେ ରାଜମାତା କୁନ୍ତୀଙ୍କ ସହିତ ବଧୂମାନେ ମଧ୍ୟ ବାହାରିଲେ ପିତାମହଙ୍କ ଶେଷଦର୍ଶନ କରିବାକୁ ।

ପିତାମହଙ୍କ ନିକଟରେ ପହଞ୍ଚିବାପାଇଁ ବେଶୀ ସମୟ ଲାଗିଲା ନାହିଁ ପାଣ୍ଡବମାନଙ୍କର । ଯିବା ପୂର୍ବରୁ ଧୃତରାଷ୍ଟ୍ରଙ୍କ ପାଖକୁ ଶ୍ରୀକୃଷ୍ଣ ସମ୍ବାଦ

ପଠାଇଦେଇଥା'ନ୍ତି । ସମ୍ବାଦ ମଧ୍ୟ ପଠାଇଥା'ନ୍ତି ଧର୍ମାତ୍ମା ବିଦୁରଙ୍କ ପାଖକୁ । ତେଣୁ ଧୃତରାଷ୍ଟ୍ର ଏବଂ ବିଦୁରାଦି ପାଣ୍ଡବମାନଙ୍କ ପହଞ୍ଚିବା ପରେ ପହଞ୍ଚିଲେ । ସେତେବେଳକୁ ପିତାମହ ଭୀଷ୍ମ ପାଣ୍ଡବମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ ।

ପାଣ୍ଡବମାନେ ପିତାମହଙ୍କୁ ପ୍ରଣାମ କରିସାରି ତାଙ୍କର ଅନ୍ତିମକାଳୀନ ମୁଖନିଃସୃତ ବାଣୀ ଶୁଣିବାକୁ ଅପେକ୍ଷା କରି ରହିଥା'ନ୍ତି । ପଞ୍ଚପାଣ୍ଡବଙ୍କ ଆଗରେ ଥା'ନ୍ତି ଯୁଧିଷ୍ଠିର । ତାଙ୍କୁ ଦେଖି ଦେଖି ଭୀଷ୍ମ ବ୍ୟସ୍ତ ହୋଇ କହିଲେ—"ହେଇ..., ମୋର ସମୟ ହୋଇଗଲାଣି ଏ ଲୋକରୁ ଚାଲିଯିବା-ପାଇଁ । ମୁଁ ଯିବାବେଳେ ମୋ ସମ୍ମୁଖରେ ଭଗବାନ ଶ୍ରୀକୃଷ୍ଣଙ୍କୁ ଦେଖିବି ବୋଲି ଇଚ୍ଛା କରିଛି । ସେ ମଧ୍ୟ ମୋତେ ପ୍ରତିଶ୍ରୁତି ଦେଇଛନ୍ତି ଅନ୍ତିମ କାଳରେ ଉପସ୍ଥିତ ହେବେ ବୋଲି । ସୂର୍ଯ୍ୟଙ୍କର ଉତ୍ତରାୟଣ ଗତି ହେବା ସଙ୍ଗେ ସଙ୍ଗେ ମୁଁ ଚାଲିଯିବା କଥା । କେତେବେଳୁ ସୂର୍ଯ୍ୟଙ୍କର ଉତ୍ତରାୟଣ ଗତି ଆରମ୍ଭ ହେଲାଣି । କେବଳ ତାଙ୍କୁ ଟିକିଏ ଆଖି ଆଗରେ ଦେଖିବି, ଏହି ଇଚ୍ଛାରେ ଅପେକ୍ଷା କରି ରହିଛି । ମାତ୍ର ସେ କାହାନ୍ତି ? ସେ କ'ଣ ମୋତେ ଠକିଦେଲେ !"

ହାତ ଦୁଇଟିକୁ ଯୋଡ଼ି ଯୁଧିଷ୍ଠିର କହିଲେ, "ନା ପିତାମହ ! ଭଗବାନ ଶ୍ରୀକୃଷ୍ଣ ଆମ ସହିତ ଆସିଛନ୍ତି । ମୁଁ ଏଠାରେ ଆସି ପହଞ୍ଚିବାମାତ୍ରେ ଆପଣଙ୍କୁ ଦେଖିବାକୁ ଧାଇଁଆସିଲି; ସେ ପ୍ରାୟ ରଥ ପାଖରେ ରହିଗଲେ । ସମ୍ଭବତଃ ସେ ଅପେକ୍ଷା କରୁଛନ୍ତି ପିତୃବ୍ୟ ଧୃତରାଷ୍ଟ୍ର ଓ ବିଦୁର ଆଦିଙ୍କୁ । ସେମାନଙ୍କୁ ଏଠାକୁ ଆସିବାକୁ ସମ୍ବାଦ ଦେଇ ତରତର ହୋଇ ଆମେ ପଳାଇ ଆସିଥିଲୁ । ସେମାନେ ହୁଏତ ବର୍ତ୍ତମାନ ଆସି ପହଞ୍ଚିବେ ।

ପିତାମହ ଭୀଷ୍ମଙ୍କ ମୁହଁରେ ଶ୍ରେଷ୍ଠ ହସଟିଏ ଦେଖାଦେଲା । ସେହି ହସ ହସ ମୁହଁରେ ସେ କହିଲେ—"ଯୁଧିଷ୍ଠିର ! ତୁମେ ନିର୍ମାୟା ପୁରୁଷ । ଶ୍ରୀକୃଷ୍ଣ କ'ଣ, ତୁମେ କ'ଣ ତାହା ଠିକ୍‌ରୂପେ ଚିହ୍ନିଛ ? ମୁଁ ଭଲରୂପେ ଜାଣିଛି, କଳିଙ୍ଗର ମହୋଦଧି କୂଳରେ ଶୂନ୍ୟର ରୂପଧରି ଯେଉଁ ପରଂବ୍ରହ୍ମ ଉପାସିତ ହେଉଛନ୍ତି ତାଙ୍କରଠାରୁ ଗୋଟିଏ କଳା ଆସି କଂସର ବନ୍ଦୀ-ଶାଳାରେ ଦେବକୀଙ୍କଠାରୁ ରାତି ଅଧରେ ଜନ୍ମଗ୍ରହଣ କରିଥିଲେ । ରାମାବତାରରେ ଦୀର୍ଘ ଚଉଦ ବର୍ଷ ବଣ-ଜଙ୍ଗଲରେ ବୁଲି ଫଳ-ମୂଳ,

ଦରପୋଡ଼ା ମାଂସ ଖାଇ ବିରକ୍ତ ହୋଇଯାଇଥିବାରୁ, ସର-ଲବଣୀ ଖାଇ ବଢ଼ିବାକୁ ସେ ସେହି ଗାତ ଅଧରେ ଗୋପ ଗ୍ଭଲଗଲେ ! ଅନନ୍ତ ଲୀଳାର ଅଧୀଶ୍ୱର ହେଉଛନ୍ତି ସେହି ପରଂବ୍ରହ୍ମ ଜଗନ୍ନାଥ । ଲୀଳାମୟ ସେହି ପରଂବ୍ରହ୍ମ ଷୋଳକଳାର ଦେବତା । ଶ୍ରୀକୃଷ୍ଣ ତାଙ୍କର ଗୋଟିଏ କଳାର ହେଲେ ମଧ୍ୟ ସେ ସ୍ୱୟଂ ପରଂବ୍ରହ୍ମର ଅଭିନୟ କରିଗ୍ଭଲଛନ୍ତି । ତାଙ୍କର ଲୀଳା ମୁନି-ଋଷି ତଥା ଦେବତାମାନଙ୍କ ମଧ୍ୟ ଅଗୋଚର । ସେ ଯେ ଧୃତରାଷ୍ଟ୍ର, ବିଦୁର ଆଦିଙ୍କୁ ଅପେକ୍ଷା କରିଛନ୍ତି, ଏଭଳି ମନେକରିବା ପୂରାପୂରି ଠିକ୍ ନୁହେଁ ।”

ଯୁଧିଷ୍ଠିରଙ୍କ ମୁହଁରେ ବିସ୍ମୟର ଭାବ । ସେ ପିତାମହଙ୍କୁ କ’ଣ କହିବେ ଠିକ୍ କରୁ କରୁ ଭୀଷ୍ମ କହିଲେ—“ମୁଁ ଭାବୁଛି, ସେ କେବଳ ମୋ ମନରେ ଉଦ୍‌ବେଗ ବଢ଼ାଇବାପାଇଁ ରଥ ପାଖରେ ରହିଯାଇଛନ୍ତି । କିଏ ଜାଣେ, ସେ ଏଠାରେ ପହଞ୍ଚିବା ପୂର୍ବରୁ ମୁଁ ଗ୍ଭଲିଯାଇ ନ ଥିବି ।”

—“ନା ପିତାମହ ! ସେ ନିଶ୍ଚୟ ବର୍ତ୍ତମାନ ଆସି ପହଞ୍ଚିବେ । ଆପଣଙ୍କୁ ଯେତେବେଳେ କଥା ଦେଇଛନ୍ତି ଆପଣ ବାହୁଡ଼ିବା ସମୟରେ ସେ ଉପସ୍ଥିତ ହେବେ ବୋଲି, ସେ କଥା ସେ କେବେ ଅନ୍ୟଥା କରିବେ ନାହିଁ ।”

ମଧ୍ୟମପାଣ୍ଡବ ଅର୍ଜୁନ ଏହି କଥା କହୁ କହୁ ଶ୍ରୀକୃଷ୍ଣ ଆସି ସେଠାରେ ପହଞ୍ଚିଲେ ଏବଂ କହିଲେ—ମୁଁ ଆସିଛି ପିତାମହ ! ବାର୍ଦ୍ଧକ୍ୟ ଧର ପ୍ରଧାନବସୁ ‘ଦ୍ୟୁ’ଙ୍କ ସ୍ଥାନ ଖାଲି ପଡ଼ିଛି । ଆପଣ ଗଲେ ସେ ସ୍ଥାନ ପୂରଣ କରିବେ । ବିଶେଷତଃ ଆପଣଙ୍କ ପତ୍ନୀ ସୁମଧ୍ୟମା ଶୀଘ୍ର ଆପଣ ଫେରିଯିବା ନିମିତ୍ତ ତପସ୍ୟା କରୁଛନ୍ତି ବ୍ରହ୍ମର୍ଷି ଆପବ—ଯେ କି ଆପଣଙ୍କୁ ବାର୍ଦ୍ଧକ୍ୟ ନର ଦେହ ଧାରଣ କରିବ ପାଇଁ ଅଭିଶାପ ପ୍ରଦାନ କରିଥିଲେ, ସେ ସୁମଧ୍ୟମାଙ୍କ ତପସ୍ୟା ଦେଖି ବିସ୍ମିତ ହୋଇଯାଇଛନ୍ତି ଓ ଆପଣଙ୍କ ମୁକ୍ତି ଲାଗି ଧ୍ୟାନମଗ୍ନ । ହେଇ..., ସୂର୍ଯ୍ୟଦେବଙ୍କର ଉତ୍ତରାୟଣ ଗତି ଆରମ୍ଭ ହୋଇଗଲାଣି । ଆପଣ ଏଠୁ ଗ୍ଭଲିଯିବା ପରେ ଇହଲୋକର କୌଣସି ଦୋଷ ଆପଣଙ୍କୁ ସ୍ପର୍ଶ କରିବ ନାହିଁ ।”

—“ମୁଁ ସବୁ ଜାଣିପାରୁଛି ଭଗବାନ ! ମୋର ଶାପମୁକ୍ତିର ସମୟ ନିକଟ ହୋଇଥିବାରୁ ପୂର୍ବରୁ ଘଟିଥିବା ସମୟ ବିଷୟ ସ୍ୱତଃ ମୋ

ମନ-ଆକାଶରେ ସଜୀବ ହୋଇଉଠିଛି । ମାତ୍ର ମୁଁ ଇହଲୋକରୁ ଫେରିଯିବା ପୂର୍ବରୁ ଆପଣଙ୍କୁ ଆଉଥରେ ସ୍ମରଣ କରାଇଦେବାକୁ ଚାହେଁ, ପ୍ରତିବର୍ଷ ଆଜି ଦିନରେ ମୋ ଉଦ୍ଦେଶ୍ୟରେ ବ୍ରାହ୍ମଣଠାରୁ ସବୁବର୍ଗର ଲୋକମାନେ ତର୍ପଣ କରିବାକୁ ଦ୍ୱିଧା ପ୍ରକାଶ କରିବେ ନାହିଁ ତ ?''

—''ନା ପିତାମହ ! ଆପଣ ସେଭଳି ଆଶଙ୍କା କେବେ କରନ୍ତୁ ନାହିଁ । ମୁଁ ଯେତେବେଳେ ଆପଣଙ୍କ ପାଖରେ ଅଙ୍ଗୀକାର କରିଛି, ସେତେବେଳେ ତାହା କେବେ ଅନ୍ୟଥା ହେବନାହିଁ । ଆଜିଠାରୁ ଏହି ଦିନଟି ଆପଣଙ୍କ ସ୍ମୃତି ରକ୍ଷାପାଇଁ 'ଭୀଷ୍ମାଷ୍ଟମୀ' ନାମରେ ନାମିତ ହେବ । ଯେଉଁମାନେ ଆଜି ଦିନରେ ଆପଣଙ୍କୁ ତର୍ପଣ କରିବେ ସେମାନଙ୍କର ଯଶ, ଆୟୁ ବର୍ଦ୍ଧିତ ହେବ ।''

ଭଗବାନ ଶ୍ରୀକୃଷ୍ଣଙ୍କ ମୁଖରୁ କଥା ସରିବା ମାତ୍ରେ ଭୀଷ୍ମ ପଚାରିଲେ, ''ହଁ ପ୍ରଭୁ ! ଆପଣ ତ ଆସିଲେ, କିନ୍ତୁ ମୋର ମା' ଗଲା କେଉଁଆଡ଼େ ? ମୁଁ ଏଠାରୁ ଚାଲିଯିବାବେଳେ ତାକୁ କ'ଣ ଥରେ ଦେଖିପାରିବି ନାହିଁ ?''

—''କାହା କଥା କହୁଛନ୍ତି ପିତାମହ ! ଆପଣ କ'ଣ ଦ୍ରୌପଦୀଙ୍କୁ ଖୋଜୁଛନ୍ତି ?''

—''ହଁ ଭଗବାନ ! ଆପଣ ଠିକ୍ ଜାଣିପାରିଛନ୍ତି । ମୋର ମା' କୃଷ୍ଣା କାହିଁ ? ସେ କ'ଣ ଆସିନାହିଁ ?''

ବ୍ୟସ୍ତ ହୋଇପଡ଼ିଲେ ଧର୍ମ ଯୁଧିଷ୍ଠିର । ସେ ଏଣେ ତେଣେ ଆଖି ବୁଲେଇ କହିଲେ, ''ହଁ ପିତାମହ ! ସେ ଆମ ସହିତ ଆସିଥିଲା । ମାତା କୁନ୍ତୀଙ୍କ ସହିତ ସେ ବୋଧେ ଅପେକ୍ଷା କରିଛି ମାତା ଗାନ୍ଧାରୀଙ୍କୁ ।''

ଯୁଧିଷ୍ଠିରଙ୍କ ମୁହଁରୁ କଥା ସରିଛି କି ନାହିଁ, ଗାନ୍ଧାରୀ ଓ କୁନ୍ତୀଙ୍କ ସହିତ ଦ୍ରୌପଦୀ ଆସି ସେଠାରେ ପହଞ୍ଚିଲେ । ତାଙ୍କ ସହିତ ମଧ୍ୟ ଆସିଥିଲେ ପିତୃବ୍ୟ ଧୃତରାଷ୍ଟ୍ର ଓ ବିଦୁର ।

ପିତାମହ କହିଲେ—"ଯୁଧିଷ୍ଠିର ! ତୁମେ ବୋଧେ ଦ୍ରୌପଦୀଙ୍କୁ ଏପର୍ଯ୍ୟନ୍ତ ଚିହ୍ନି ପାରିନାହଁ । ଆଜି ପର୍ଯ୍ୟନ୍ତ ସମସ୍ତେ ଜାଣିଆସିଛନ୍ତି ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି ସବୁର କର୍ତ୍ତା । ତାଙ୍କର ଇଚ୍ଛାରେ ମହାଭାରତ ଯୁଦ୍ଧ ହୋଇଛି ଏବଂ ତାଙ୍କର ନିର୍ଦ୍ଦେଶ ମାନି ଚାଲୁଥିବାରୁ କୁରୁକ୍ଷେତ୍ର ଯୁଦ୍ଧରେ କୌରବ କୁଳକୁ ଧ୍ୱଂସକରି ପାଣ୍ଡବମାନେ ବିଜୟୀ ହେଲେ; ମାତ୍ର ଶ୍ରୀକୃଷ୍ଣ ସେ ସବୁର କର୍ତ୍ତା ନୁହଁନ୍ତି । ସମସ୍ତଙ୍କ ଦୃଷ୍ଟିର ଅନ୍ତରାଳରେ ରହି ମୋର ମା' ଏହି କୃଷ୍ଣା ସବୁ ନିର୍ଦ୍ଦେଶ ଦେଉଥିଲା । ତା' ନ ହେଲେ ମହାଭାରତ ଯୁଦ୍ଧର ଦଶମଦିନ ପଞ୍ଚପାଣ୍ଡବଙ୍କ ଶିର ମୋ ଅସ୍ତ୍ରରେ ଛେଦିତ ହୋଇଥା'ନ୍ତା; କେବଳ କୃଷ୍ଣାପାଇଁ ସେମାନେ ବଞ୍ଚିଗଲେ । କୃଷ୍ଣା ହେଉଛି ଆଦ୍ୟଶକ୍ତି ଜଗଜ୍ଜନନୀ । ସେ ଦ୍ରୌପଦୀ ରୂପରେ ଅବତୀର୍ଣ୍ଣା ହୋଇଛି ଦୁଷ୍ଟ ଦଳନ କରି ସନ୍ଥମାନଙ୍କୁ ରକ୍ଷା କରିବା ନିମିତ୍ତ ।"

ଧର୍ମାତ୍ମା ବିଦୁର ହାତ ଯୋଡ଼ି କହିଲେ—"ପିତୃବ୍ୟ ! ଦ୍ରୌପଦୀ ତ କାହାରିକୁ ଦଳନ କରିନାହିଁ ?"

—"ତୁମେ ଜାଣିପାରିନାହଁ ବିଦୁର ଦ୍ରୌପଦୀକୁ ଏବଂ ତା'ର ଇଙ୍ଗିତକୁ । ସେ ହିଁ ସବୁର ନିୟନ୍ତ୍ରଣକାରିଣୀ । ମୁଁ ମହାଭାରତ ଯୁଦ୍ଧର ନବମଦିନ ରାତିରେ ସବୁ ବିଷୟ ଜାଣିପାରିଛି । ଆଉ ମଧ୍ୟ ଜାଣିଛି ଯେତେବେଳେ ଶ୍ରୀକୃଷ୍ଣ ତାଙ୍କ ଲୀଳା ସାରି କଳିଙ୍ଗର ମହୋଦଧି କୂଳର ସେହି ପରଂବ୍ରହ୍ମଙ୍କ ମଧ୍ୟରେ ଲୀନ ହୋଇଯିବେ । ତା'ପରେ ମୋର ମା' ପାଣ୍ଡବମାନଙ୍କ ମୃତ୍ୟୁ ପୂର୍ବରୁ ହିମାଳୟର ପାଦଦେଶରେ ତା'ର ଏହି ମାୟା ଶରୀର ତ୍ୟାଗକରି ସେହି କଳିଙ୍ଗର ମହୋଦଧି କୂଳକୁ ଫେରିଯିବ । ସେଠାରେ ସେ ଆରାଧିତା ହେବ 'ମହାଭୈରବୀ ବିମଳା' ରୂପରେ । ସେହି ପରଂବ୍ରହ୍ମଙ୍କ ସମ୍ମୁଖରେ ନୈବେଦ୍ୟ ହେଉଥିବା ସମସ୍ତ ଦ୍ରବ୍ୟ ମୋ ମା' ପାଖରେ ସମର୍ପଣ ନ କଲେ, ତାହା ମହାପ୍ରସାଦ ରୂପେ ଗୃହୀତ ହେବନାହିଁ । ଆଉ ପାଣ୍ଡବ-ମାନେ ଶିବଙ୍କ ଅଂଶରେ ଜନ୍ମଗ୍ରହଣ କରିଥିବାରୁ ସେହି କଳିଙ୍ଗର ମହୋଦଧି କୂଳରେ ମାର୍କଣ୍ଡେୟ, ଲୋକନାଥ, ଯମେଶ୍ୱର, କପାଳମୋଚନ ଓ ନୀଳକଣ୍ଠେଶ୍ୱର ନାମରେ ନାମିତ ହୋଇ ଶିବଲିଙ୍ଗ ରୂପେ ପୂଜା ପାଇବେ ।

କିନ୍ତୁ ପୀଠେଶ୍ୱରୀ ଭାବେ ମୋର ମା' କୃଷ୍ଣାଙ୍କର ପ୍ରଭାବ ସମସ୍ତଙ୍କଠାରୁ ବେଶୀ ହେବ ।"

ପିତାମହ ଭୀଷ୍ମ ଏହି କଥା କହିସାରିଲା ପରେ ଭଗବାନ ଶ୍ରୀକୃଷ୍ଣଙ୍କ ଶ୍ରୀମୁଖରେ ଲଜ୍ଜାର ସଙ୍କେତ ସ୍ପଷ୍ଟଭାବେ ଦେଖାଦେଇଥିଲା; ଆଉ ଦ୍ରୌପଦୀ ତାଙ୍କ ଆଡ଼କୁ ଅନାଇ ମୁରୁକି ମୁରୁକି ହସୁଥିଲେ ।

—:*:—



# ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ

ଶ୍ରୀରାଧାଙ୍କ ସହିତ ସମାନ ହେବାପାଇଁ ଏ ବିଶ୍ୱରେ ଦ୍ୱିତୀୟ କେହି ନାହିଁ । ଅଷ୍ଟ ପାଟବଂଶୀ ଶ୍ରୀକୃଷ୍ଣଙ୍କର ପ୍ରିୟତମା ହୋଇପାରନ୍ତି, କିନ୍ତୁ ରାଧାଙ୍କ ସ୍ଥାନ ସେମାନେ ଅଧିକାର କରିବା ସହଜ ନୁହେଁ । ମମତା ଫାଶରେ ଆବଦ୍ଧ ହୋଇ ଦ୍ୱାରକାଧିପତି କହିପାରନ୍ତି ଯେ, ରୁକ୍ମଣୀ ଓ ସତ୍ୟଭାମାଦି ମହିଷୀ ବହୁ ଉଚ୍ଚ ସ୍ତରର; କିନ୍ତୁ ରାଧିକାଙ୍କ ସହିତ ଯଦି ତୁଳନା କରାଯାଏ, ତେବେ ତାଙ୍କ ସହିତ କେହି ସମକକ୍ଷ ହୋଇପାରିବେ ନାହିଁ ।

—"ମୋର ମନେହେଉଛି, ଦେବର୍ଷି ଏକଦା କ୍ଲାନ୍ତ ହୋଇ ଗୋପରେ ପହଞ୍ଚିଛନ୍ତି; ଆଉ ରାଧିକାଘରେ ଅତିଥି ହୋଇଛନ୍ତି । ସେହି ସମୟରେ ରାଧିକା କ୍ଷୀର-ଲବଣୀ ପେଟେ ଦେବର୍ଷିଙ୍କୁ ଖାଇବାକୁ ଦେଇଛନ୍ତି । ଭୋକ ସମୟରେ ବିଷ ତ ଅମୃତଭଳି ଲାଗେ । ତେଣୁ ଦେବର୍ଷିଙ୍କର ସେହିଦିନଠାରୁ ଧାରଣା ହୋଇଯାଇଛି, ରାଧା ଭଳି ଏ ବିଶ୍ୱରେ କେହି ନାହାଁନ୍ତି ।"

—"ଭୁଲ୍ କହୁଛନ୍ତି ଦେବୀ ସତ୍ୟଭାମା ! ଦେବର୍ଷିଙ୍କୁ କେହି ଖୁଣ୍ଟେ କଥା କିମ୍ବା ସେବାଦ୍ୱାରା ସନ୍ତୁଷ୍ଟ କରିପାରେ ନାହିଁ । ସେ ସତ୍ୟର ସେବକ । ସେଥିପାଇଁ ସେ ସମଗ୍ର ବିଶ୍ୱ ବୁଲୁଥା'ନ୍ତି । ଯେଉଁଠି ସତ୍ୟର ସନ୍ଧାନ ପାଆନ୍ତି ସେଠାରେ କିଛି ସମୟ ରହିଯାଆନ୍ତି । କାହାର ସର-ଲବଣୀ ଖାଇ ତା'ର ଗୁଣଗାନ କରିବା ତାଙ୍କ ଜାତକରେ ନାହିଁ । କୌଣସିଠାରେ କାହାର ଦର୍ପିତ କଥା ଶୁଣିଲେ ସଙ୍ଗେ ସଙ୍ଗେ ତାଙ୍କଠାରୁ ଜଣେ ବଳବାନ ସହିତ ତାଙ୍କୁ ମୁହାଁମୁହିଁ କରିଦିଅନ୍ତି । ଶେଷରେ ଦର୍ପିତର ଦର୍ପ ଖଣ୍ଡନ ହୋଇଥାଏ । ଏହା ଫଳରେ ସେ ତାଙ୍କୁ ଜଣାଇଦିଅନ୍ତି ପ୍ରକୃତ ସତ୍ୟ କ'ଣ ।"

—"ତୁମେ ବି ସରସ୍ୱତୀ, ଦେବର୍ଷିଙ୍କ କଥାକୁ ତାରିଫ କରୁଛ ! ଆମ୍ଭେମାନେ ଧାରଣା କରୁ ଦେବର୍ଷିଙ୍କୁ କଳି ବା ବିବାଦ ଭଲଲାଗେ ।

ଜଣକେ ଆଗରେ ଆଉ ଜଣକ କଥା କହି ଏଭଳି ତାଙ୍କୁ ପ୍ରଭାବିତ କରିଦିଅନ୍ତି ଯେ, ସେ ଧାଇଁଆସି ତା' ସହିତ ଯୁଦ୍ଧ କରିଥାଏ । ଯୁଦ୍ଧରେ ଜଣକର ଜୟ ଆଉ ଜଣକର ପରାଜୟ ତ ହେବ ହିଁ ହେବ । ତେଣୁ ଖାଲି ଆମେ କାହିଁକି, ସମସ୍ତେ କହନ୍ତି ଦେବର୍ଷି ବଡ଼ କଳିଆ ଲୋକ ।

—"ଦେବୀ ରୁକ୍ମଣୀ ! ଆପଣ ଦେବର୍ଷିଙ୍କ ଚରିତ୍ର ଭଲଭାବରେ ନ ଜାଣି ଏଭଳି କହୁଛନ୍ତି । ଯଦି ଆପଣ ଧାରଣା କରନ୍ତି, ଦେବର୍ଷିଙ୍କ ସ୍ୱଭାବ ଜଣକୁ ଅନ୍ୟଜଣକ ବିଷୟରେ କହି କଳି ଲଗାଇବା, ତେବେ ଶ୍ରୀକୃଷ୍ଣଙ୍କର ମଧ୍ୟ ସେହି ସ୍ୱଭାବ ଅଛି ।"

—"କାହିଁ, ଆମେ ତ କେବେ ଶୁଣିନାହୁଁ ଶ୍ରୀକୃଷ୍ଣ କେବେ କାହାକୁ କାହା କଥା କହି ସେଭଳି କିଛି ଦ୍ୱନ୍ଦ୍ୱ ଉପୁଜାଇଥିବା ?"

—"ନା, ଆପଣ କାହିଁକି ସେସବୁ ଜାଣିବେ ? ଆଉ କାହା କଥା ତେଣିକି ଥାଉ; ଏହି ଦେବର୍ଷି ନାରଦଙ୍କ କଥା ଶୁଣ ।"

ସମସ୍ତେ ନାରଦଙ୍କ ଆଡ଼କୁ ଅନାଇଲେ । ନାରଦ କହିଲେ—"ମୋର ଗୋଟାଏ ଭ୍ରମ ହୋଇଥିଲା, ସେହି ଭ୍ରମ ଶ୍ରୀକୃଷ୍ଣ ଦୂର କରି-ଦେଇଥିଲେ ।"

ଦେବୀ ସରସ୍ୱତୀ କହିଲେ—"ଦେବର୍ଷି ଭଲ ଗୀତ ବୋଲନ୍ତି ଆଉ ବୀଣା ବଜାନ୍ତି । ଖାଲି ସେତିକି ନୁହେଁ, ଭଗବାନଙ୍କ ନାମ ଗାଇ ଭାବବିହ୍ୱଳ ହୋଇ ଭଲ ବି ନାଚିପାରନ୍ତି । ତେଣୁ ସେ ଧାରଣା କରନ୍ତି, ଏ ବିଶ୍ୱରେ ଯଦି କେହି ଭଲ ଗୀତ ବୋଲିପାରେ, ବୀଣା ବଜାଇପାରେ, ନାଚିପାରେ; ସେ ହେଉଛନ୍ତି ଏକମାତ୍ର ନାରଦ । ତାଙ୍କ ମନକଥା ଶ୍ରୀକୃଷ୍ଣ ଜାଣିପାରିଲେ । ସେ ନାରଦଙ୍କୁ ଡାକି କହିଲେ, ଦେବର୍ଷି ! ଆପଣ ଭଲ ବୀଣା ବଜାଇପାରନ୍ତି, ଗୀତ ଗାଇପାରନ୍ତି ଆଉ ଭଲ ନାଚିପାରନ୍ତି; ଏ କଥା କୈଳାସପତି ଶିବ କିପରି ସମ୍ବାଦ ପାଇଛନ୍ତି । ଅବଶ୍ୟ ଶିବ ବୀଣା ବଜାନ୍ତି ନାହିଁ; ମାତ୍ର ତାଙ୍କ ଅନୁଚର ବୀରଭଦ୍ର ଭଲ ବୀଣା ବଜାନ୍ତି । ଶିବଙ୍କର ନୃତ୍ୟ ତ ସମସ୍ତଙ୍କଠାରୁ ଉତ୍କୃଷ୍ଟ । ସମସ୍ତେ ଜାଣନ୍ତି ଶିବ ସବୁ ବିଦ୍ୟାରେ ଦକ୍ଷ । ତେଣୁ ସେ ଯେତେବେଳେ ଶୁଣିଲେ ଆପଣ ଭଲ ବଜାଇପାରନ୍ତି, ଗୀତ ଗାଇପାରନ୍ତି ଓ

ନାଚପାରନ୍ତି, ସେତେବେଳେ ତାଙ୍କର ଇଚ୍ଛା ହୋଇଛି ଆପଣଙ୍କ ଗାଇବା, ବଜାଇବା ଓ ନାଚିବାକୁ ସେ ଟିକିଏ ଦେଖିବେ । ତେଣୁ ମୋତେ କହିଛନ୍ତି, ଦେବର୍ଷି ଯଦି କେବେ ଦ୍ୱାରକା ଆସନ୍ତି ତେବେ ସଙ୍ଗରେ ନେଇଯିବାକୁ ।

ନାରଦ ଯେତେବେଳେ ଶୁଣିଲେ ଯେ, ଶିବ ଚାହାଁନ୍ତି ତାଙ୍କ ନାଚ ଦେଖିବାକୁ ଓ ଗୀତ ଶୁଣିବାକୁ, ସେତେବେଳେ ସେ ଖୁବ୍ ଖୁସି ହୋଇଗଲେ । ସଙ୍ଗେ ସଙ୍ଗେ ସେ ବାହାରିପଡ଼ିଲେ ଶ୍ରୀକୃଷ୍ଣଙ୍କ ସଙ୍ଗରେ । ପୁରାପୁରି ମହାଦେବଙ୍କ ନିକଟକୁ ଗରୁଡ଼ ଯାଇପାରିବ ନାହିଁ । କାରଣ ଶିବଙ୍କ ଦେହରେ ଗୁଡ଼େଇ ହୋଇଥିବା ସର୍ପମାନେ କାଳେ ହୁରୁଡ଼ିଯିବେ ଗରୁଡ଼ଙ୍କୁ ଦେଖି, ସେଥିପାଇଁ ଦ୍ୱାରପାଳ ନନ୍ଦୀ ଯେଉଁଠି ଦ୍ୱାର ଜଗି ଠିଆ ହୋଇଛନ୍ତି; ସେହିଠାରେ ଗରୁଡ଼ଙ୍କୁ ରଖି ଶ୍ରୀକୃଷ୍ଣ ଓ ନାରଦ ଦୁହେଁ ଚାଲିଲେ ଶିବଙ୍କ ପାଖକୁ ।

ଗଲାବେଳେ ଗୋଟିଏ ଘର ଦେଖିଲେ ସେମାନେ । ସେ ଘରେ କେତେଜଣ ଯୁବତୀ ବସିଥା'ନ୍ତି । କିନ୍ତୁ ପ୍ରତ୍ୟେକଙ୍କର କିଛି ନା କିଛି ଖୁଣ ଥାଏ । କାହାର ନାକ କଟିଯାଇଛି ତ କାହାର କାନ କଟିଯାଇଛି । କାହାର ବା ଗୋଟିଏ ଆଖି ଫୁଟିଯାଇଛି । ସେମାନଙ୍କର ଏ ଅବସ୍ଥା ଦେଖି ନାରଦ ଶ୍ରୀକୃଷ୍ଣଙ୍କୁ ପଚାରିଲେ, ମହାପ୍ରଭୁ ! ଏ ସ୍ତ୍ରୀ'ଲୋକଗୁଡ଼ିକ ସମସ୍ତେ ତ ସୁନ୍ଦରୀ; ମାତ୍ର ଏଭଳି ଖୁଣ କାହିଁକି ହୋଇଛି ।

ଶ୍ରୀକୃଷ୍ଣ ଅଳ୍ପ ହସି ଉତ୍ତର ଦେଇଥିଲେ, ମୋତେ ପଚାରିବା ଅପେକ୍ଷା ସେମାନଙ୍କୁ ତ ପଚାରିଲେ ଭଲ ହୁଅନ୍ତା । ସେମାନଙ୍କୁ ଆପଣ ପଚାରୁନାହାନ୍ତି !

ଦେବର୍ଷି ସେମାନଙ୍କୁ ପଚାରିଲେ, କନ୍ୟାମାନେ ! ତୁମ୍ଭେମାନେ କିଏ ? ତୁମର ସୁନ୍ଦର ରୂପକୁ ଏଭଳି ବିରୂପ କଲା କିଏ ?

ସେମାନଙ୍କ ମଧ୍ୟରୁ ଜଣେ କହିଲା, ଆମ୍ଭେମାନେ ତାଳ, ରାଗ ଓ ଚଉଷଠି ରାଗିଣୀ । ସ୍ୱର୍ଗରେ ଜଣେ ଋଷି ଅଛନ୍ତି, ତାଙ୍କ ନାମ ନାରଦ; ସେ ଆମ୍ଭମାନଙ୍କୁ ଏହିଭଳି କରିଛନ୍ତି । ତାଙ୍କର ଯୋଗୁଁ ଆମ୍ଭେମାନେ ଏଭଳି ବିରୂପା ହୋଇଛୁ ।

ବିସ୍ମିତ ହେଲେ ନାରଦ ସେମାନଙ୍କ କଥା ଶୁଣି । ସେ ମନେ-ପକାଇଲେ, ସେ ତ କେଉଁଠି କୌଣସି କନ୍ୟାଙ୍କୁ ବିରୂପ କରିନାହାଁନ୍ତି ।

ଶ୍ରୀକୃଷ୍ଣ ସେମାନଙ୍କୁ ପଚାରିଲେ, ଆଛା, ତୁମ୍ଭମାନଙ୍କୁ ନାରଦ କେଉଁଠି ବିରୂପା କଲେ ?

ଆଜ୍ଞା, ସବୁଠାରେ । ତାଙ୍କୁ କୌଣସି ରାଗ-ରାଗିଣୀ ଜଣାନାହିଁ । କିଛି ନ ଜାଣି ପଣ୍ଡିତଙ୍କ ଭଳି ସବୁ ସ୍ଥାନରେ ବୀଣା ବଜାଇ, ଗୀତ ବୋଲି, ନାଚି ଆମକୁ ଏଭଳି ବିରୂପା କରିଦେଇଛନ୍ତି ।

ତୁମ୍ଭେମାନେ ତୁମର ଏହି ଦୟନୀୟ କାହାଣୀ ସ୍ୱର୍ଗର ଇନ୍ଦ୍ର, କିମ୍ବା ବ୍ରହ୍ମାଙ୍କୁ କହିପାରିଥା'ନ୍ତ ! ମାତ୍ର ସେମାନଙ୍କୁ କିଛି ନ କହି କୈଳାସରେ କାହିଁକି ରହିଛ ? ଶ୍ରୀକୃଷ୍ଣ କହିଲେ ।

ଆଜ୍ଞା ! ଶିବ ହେଉଛନ୍ତି ସବୁର କର୍ତ୍ତା । ତାଙ୍କୁ ଆଶ୍ରୟ କରି ଆମେ ସବୁ ସ୍ୱର୍ଗର ଗନ୍ଧର୍ବ, କିନ୍ନର, ଅପ୍ସରା ମାଧ୍ୟମରେ ଯେଉଁଭଳି ପ୍ରକାଶିତା ହେଉ, ସେହିଭଳି ମର୍ତ୍ତ୍ୟର ଗାୟକ-ଗାୟିକା, ବାଦକ-ବାଦିକା, ନର୍ତ୍ତକ-ନର୍ତ୍ତକୀଙ୍କ ମାଧ୍ୟମରେ ପ୍ରକାଶିତା । ତେଣୁ ଶିବାଳୟ ହେଉଛି ଆମ୍ଭମାନଙ୍କର ନିବାସ ସ୍ଥାନ ।

ସେତେବେଳକୁ ନାରଦ ବୁଝିସାରିଲେଣି ନିଜର ଭୁଲ୍ । ସେ ଏଭଳି ଲଜ୍ଜିତ ହୋଇପଡ଼ିଥା'ନ୍ତି, ଯଦ୍ଦ୍ୱାରା ସେ କିଛି ଉତ୍ତର ଦେଇପାରିଲେ ନାହିଁ ।"

ସତ୍ୟଭାମା କହିଲେ—"ସରସ୍ୱତୀ ! ତୁମର କ'ଣ ରାଧାଙ୍କ ବିଷୟରେ ସେଭଳି କିଛି ଜ୍ଞାନ ଅଛି ? ଯଦି ଥାଏ ଆମକୁ କିଛି କୁହ !"

× × ×

ଶ୍ରୀକୃଷ୍ଣଙ୍କର ପ୍ରିୟତମା ରୁକ୍ମଣୀ ଓ ସତ୍ୟଭାମା ପ୍ରଭୃତି ସେଠାରେ ଥା'ନ୍ତି । ପୁଣି ସେଠାରେ ଥାଆନ୍ତି ନିଜେ ନାରଦ । ନାରଦ ବୀଣା ବଜାଇ ମହାପ୍ରଭୁଙ୍କ ନାମ ସୁ-ସ୍ୱରରେ ଗାଇ ଗାଇ ସାଗର କୂଳେ କୂଳେ ଆସୁ ଅସୁ

ହଠାତ୍ ଶବରମାନଙ୍କୁ ଦେଖିବାକୁ ପାଇଲେ । ସେମାନେ ସେମାନଙ୍କର ଦେବତାଙ୍କ ପୂଜା କରିବାକୁ ଯାଉଥିଲେ । ବିଭିନ୍ନ ପ୍ରକାର ବାଦ୍ୟ ବଜାଇ ବଜାଇ, ବହୁ ପୂଜା ସାମଗ୍ରୀ ଧରି, ସେମାନେ ଚାଲିଥିଲେ ତାଙ୍କର ଦେବତା ଥିବା ବ୍ୟାଘ୍ର ଗୁମ୍ଫାଆଡ଼େ । ଦେବର୍ଷିଙ୍କର କାହିଁକି ଟିକିଏ ଇଚ୍ଛା ହେଲା ସେମାନଙ୍କ ଦେବତାଙ୍କୁ ଦର୍ଶନ କରିବାପାଇଁ । ସେ ନୀରବରେ ସେମାନଙ୍କୁ ଅନୁସରଣ କଲେ । କାଳେ ତାଙ୍କୁ କେହି ଦେଖିଲେ କ'ଣ ଭାବିପାରେ, ସେଥିପାଇଁ ନିଜକୁ ସେ ସମସ୍ତଙ୍କଠାରୁ ଅଦୃଶ୍ୟ କରିଦେଇଥାନ୍ତି ଫଳରେ କେହି ତାଙ୍କୁ ଦେଖିପାରିଲେ ନାହିଁ ।

ଶବରମାନଙ୍କ ସହିତ ସେ ଯେତେବେଳେ ବ୍ୟାଘ୍ର ଗୁମ୍ଫାରେ ପହଞ୍ଚିଲେ, ସେତେବେଳେ ସେ ସେମାନଙ୍କ ଦେବତାଙ୍କୁ ଦେଖିବାକୁ ପାଇଲେ । ସେ ବିସ୍ମିତ ହେଲେ ସେମାନଙ୍କ ସ୍ୱରୂପକୁ ଦର୍ଶନ କରି । ଗୋଡ଼ ମୋଟେ ଦେଖାଯାଉନାହିଁ । ହାତ ଥାଇ ନ ଥିଲା ଭଳି । ସେ ଆଶ୍ଚର୍ଯ୍ୟ ହୋଇ ଯେତେବେଳେ ଖୁବ୍ ନିରୀକ୍ଷଣ କରି ଶବର ଦେବତାଙ୍କୁ ଅନାଇଲେ, ସେତେବେଳେ ସେ ଶୁଣିଲେ ତାଙ୍କ ନାମ ଧରି କିଏଜଣେ ଡାକି କହୁଛି, "ନାରଦ ! ତୁମେ କେବେ ବୋଧେ ମୋର ଏ ରୂପକୁ ଦେଖିନାହଁ ! ସେଥିପାଇଁ ତୁମେ ବିସ୍ମିତ ହୋଇଯାଉଛ । ମୁଁ ହେଉଛି ମୂଳ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ମୋହରିଠାରୁ ସୃଷ୍ଟ । ସୃଷ୍ଟିର ନିମିତ୍ତ ସେମାନେ ମୋଠାରୁ ସୃଷ୍ଟି ହୋଇଛନ୍ତି । ତୁମ ବେଦ ସୃଷ୍ଟିର ବହୁ ପୂର୍ବରୁ ମୁଁ ଥିଲି···ଏବେ ବି ଅଛି; ବହୁ କାଳ ପରେ ମଧ୍ୟ ରହିବି । ସୃଷ୍ଟିର ରକ୍ଷା ନିମିତ୍ତ ସମସ୍ତ ଅବତାର ପ୍ରରୁଷ ମୋ'ଠାରୁ ନିର୍ଗତ ହୋଇ ଶେଷରେ ମୋ ଦେହରେ ବିଲୀନ ହୁଅନ୍ତି । ସମସ୍ତେ ଯେତେବେଳେ ମୋ'ଠାରୁ ନିର୍ଗତ ସେତେବେଳେ ମୁଁ ସମସ୍ତଙ୍କର ସ୍ୱରୂପ । କଳିଙ୍ଗର ଏହି ସାଗର କୂଳରେ ମୁଁ ଯୁଗ ଯୁଗ ଧରି ରହିବି । ଦୁଷ୍ଟ ସଂହାର ପାଇଁ ମୋ'ଠାରୁ ଶ୍ରୀକୃଷ୍ଣ ବଳରାମ ନିର୍ଗତ ହୋଇ ବିଶ୍ୱରେ ଲୀଳା କରୁଛନ୍ତି । ତୁମେ ଯଦି ବିଶ୍ୱାସ କରିପାରୁନାହଁ, ତେବେ ମଥୁରା ଯାଅ ସେଠାରେ ଶ୍ରୀକୃଷ୍ଣ ମୋହରି ସ୍ୱରୂପ ଦେଖାଇବେ ।"

କଳିଙ୍ଗର ଶବରମାନେ ବିଭିନ୍ନ ବାଦ୍ୟ ବଜାଉଥା'ନ୍ତି । ବାଦ୍ୟର ତାଳେ ତାଳେ ନାଚୁଥା'ନ୍ତି ସେମାନେ । ମୁଖ୍ୟ ଶବର ତାଙ୍କର ଝୁଲି ଝୁଲି

ଶୁଭୁଥାଏ । ତାକୁ ହିଁ କେନ୍ଦ୍ର କରି ସମସ୍ତେ ନାଚୁଥାନ୍ତି, ବାଦ୍ୟ ବଜାଉଥା'ନ୍ତି । ସେହି ଅବସରରେ ସମସ୍ତ ଶବ୍ଦକୁ ଡୋଡ଼ାଇ ଶୁଭୁଥାଏ କଳଙ୍ଗମାନଙ୍କ ଦେବତାର ବାଣୀ ନାରଦଙ୍କ କାନକୁ ।

"ନାରଦ ! ମୋ'ଠାରୁ ସମସ୍ତେ ଉତ୍ପତ୍ତି ହେଲେ ମଧ୍ୟ ମୋ ତତ୍ତ୍ୱ କେହି ଜାଣନ୍ତି ନାହିଁ । ତେଣୁ ମୁଁ ସମସ୍ତଙ୍କଠାରୁ ବହୁ ଊର୍ଦ୍ଧ୍ୱରେ । ସୃଷ୍ଟି, ସ୍ଥିତି, ସଂହାର ନିମିତ୍ତ ମୋ'ଠାରୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଉତ୍ପନ୍ନ ହୋଇଛନ୍ତି । ସେମାନଙ୍କଠାରୁ ସୃଷ୍ଟି ହୋଇଛନ୍ତି ମନୁଷ୍ୟ ଓ ଜୀବଜଗତ । ଯେତେବେଳେ ମହାପ୍ରଳୟ ହେବ, ସେତେବେଳେ ସେମାନେ ଆସି ମୋ ମଧ୍ୟରେ ଲୀନ ହୋଇଯିବେ । ସେହି ସମୟରେ ମୁଁ ଶୂନ୍ୟରେ ଶୂନ୍ୟଭାବେ ରହିଥିବି । ପୁଣି ପ୍ରଳୟ ପରେ ମୁଁ ସୃଷ୍ଟି କରିବି ଏ ସଚରାଚର ବିଶ୍ୱ । ମୋର ଏହି ସ୍ୱରୂପ ଯଦି ତୁମେ କୃଷ୍ଣଙ୍କଠାରେ ଦେଖିବାକୁ ଇଚ୍ଛା କରୁଛ, ତେବେ ଏହି ମୁହୂର୍ତ୍ତରେ ମଥୁରା ଯାଅ ! ସେଠାରେ ରାଧା ପ୍ରେମ ଆଲୋଚନା କରି ମୋର ଏହି ସ୍ୱରୂପ କୃଷ୍ଣଙ୍କଠାରେ ଦର୍ଶନ କର । ସାବଧାନ ! ମୋ କଥା ତୁମେ କାହା ଆଗରେ ପ୍ରକାଶ କରିବ ନାହିଁ ।"

କଳଙ୍ଗର ସେହି ଶବର ଦେବତାଙ୍କ ନିର୍ଦ୍ଦେଶରେ ନାରଦ ମଥୁରା ଆସି ଦେଖିଲେ, ଶ୍ରୀକୃଷ୍ଣ ମଥୁରାରେ ନାହାନ୍ତି; ସେ କେଉଁଆଡ଼େ ଯାଇଛନ୍ତି କେହି ମଧ୍ୟ କହି ପାରିଲେ ନାହିଁ । ଏହି ଅବସରରେ ଶ୍ରୀକୃଷ୍ଣଙ୍କ ରାଣୀ ଅଷ୍ଟପାଟବଂଶୀଙ୍କୁ ଭେଟିଲେ । ନାରଦଙ୍କୁ ଦେଖି ସମସ୍ତେ ଯଥାବିଧି ସମ୍ମାନ କରି ତାଙ୍କୁ ଉପଯୁକ୍ତ ଆସନରେ ବସାଇଲେ ସତ୍ୟଭାମା ତାଙ୍କୁ ପଚାରିଲେ, "ଆପଣ କେଉଁ ପୁରରୁ ଆଗମନ କରୁଛନ୍ତି ? କେଉଁଠାରେ ଶ୍ରୀକୃଷ୍ଣଙ୍କ ପୂଜା ଅଧିକ ହୁଏ ? ଆମଠାରୁ ଆଉ ସେଭଳି କେହି ନିଷ୍ଠାପର ସେବିକା ଅଛନ୍ତି କି ?"

ନାରଦ କହିଲେ—"ଶ୍ରୀକୃଷ୍ଣଙ୍କ ସେବିକା କହିଲେ, ଗୋପପୁରର ଗୋପୀମାନଙ୍କୁ ବୁଝାଏ । ଶ୍ରୀକୃଷ୍ଣ ଗୋପ ତ୍ୟାଗକରି ଆସିଲେ ମଧ୍ୟ ଏବେ ବି ଗୋପୀମାନେ ବଂଶୀସ୍ୱର ଶୁଣିଲମାତ୍ରେ ଯମୁନା କୂଳର କଦମ୍ବ ମୂଳକୁ ଧାଇଁ-ଆସୁଛନ୍ତି । ଗୋପର ଷୋଳ ସହସ୍ର ଗୋପୀଙ୍କ ମଧ୍ୟରେ ଶ୍ରୀରାଧା ହେଉଛନ୍ତି ଶ୍ରେଷ୍ଠ । ସେ ଶ୍ରୀକୃଷ୍ଣଙ୍କ ପାଇଁ ବର୍ତ୍ତମାନ ପାଗଳୀ । ଯେତେବେଳେ ଶ୍ରୀକୃଷ୍ଣ

ଗୋପରୁ ମଥୁରାକୁ ଆସିଲେ, ସେତେବେଳେ ରାଧାକୁ ତାଙ୍କର ବଂଶୀଟି ଧରାଇଦେଇ ଆସିଥିଲେ । ରାଧିକା ସେହି ବଂଶୀଟିକୁ ତାଂ ହୃଦୟରେ ଧରି ଅନବରତ ଅଶ୍ରୁ ମୋଚନ କରୁଛନ୍ତି । ରାଧାଙ୍କ ପ୍ରେମ ଭଳି ଆଉ ବିଶ୍ୱରେ କାହାର ପ୍ରେମ ଏତେ ସଜୀବ ନୁହେଁ । ରାଧାଙ୍କ ସହିତ ସମାନ ହେବାପାଇଁ ଏ ବିଶ୍ୱରେ କେହି ନାହାଁନ୍ତି ।"

ନାରଦଙ୍କ କଥା ଶ୍ରୀକୃଷ୍ଣଙ୍କ ରାଣୀମାନଙ୍କୁ ବଡ଼ ବାଧିଲା । ସତ୍ୟଭାମା ନାରଦଙ୍କୁ କହିଲେ—"ଥରେ ବୋଧେ ଦେବର୍ଷି କ୍ଲାନ୍ତ ହୋଇ ଗୋପରେ ପହଞ୍ଚିଥିଲେ, ସେହି ସମୟରେ ରାଧା ଦେବର୍ଷିଙ୍କୁ ଦୁଧ-ସର-ଲବଣୀ ଖୁଆଇ ସନ୍ତୁଷ୍ଟ କରିଥିଲା; ସେଥିପାଇଁ ଦେବର୍ଷି ରାଧିକାଙ୍କୁ ଏତେ ତାରିଫ କରୁଛନ୍ତି ।"

ସେଠାରେ ଦେବୀ ସରସ୍ୱତୀ ଉପସ୍ଥିତ ଥିଲେ । ସେ ଗୋପୀ ଏବଂ ରାଧିକାଙ୍କ ପ୍ରେମ କଥା ଜାଣନ୍ତି । ତେଣୁ ସଙ୍ଗେ ସଙ୍ଗେ ନାରଦଙ୍କ କଥାକୁ ସମର୍ଥନ କଲେ ।

× × ×

ଦେବୀ ସରସ୍ୱତୀ କହିଲେ—"ଶ୍ରୀକୃଷ୍ଣ ତୁମ୍ଭମାନଙ୍କର ଯେଉଁଭଳି ସ୍ୱାମୀ, ସେହିଭଳି ସେ ଗୋପୀମାନଙ୍କର ନ ଥିଲେ । ସମସ୍ତ ଗୋପୀ ବିବାହିତା ଓ ତାଙ୍କର ସ୍ୱାମୀ ଥିଲେ । ତାହା ସତ୍ତ୍ୱେ ସେମାନେ ଶ୍ରୀକୃଷ୍ଣଙ୍କୁ ଭଗବାନ ଭଳି ଭଲ ପାଉଥିଲେ । ହୃଦୟ ଦେଇ ସେମାନେ ଶ୍ରୀକୃଷ୍ଣଙ୍କୁ ଅନ୍ତର ଭିତରେ ଶ୍ରେଷ୍ଠକରି ତୋଳିଥିଲେ । ଶ୍ରୀକୃଷ୍ଣଙ୍କୁ ପାଇବାପାଇଁ ତାଙ୍କର ଯେଉଁ ଅଦମ୍ୟ ଚେଷ୍ଟା, ତାହାର ତୁଳନା ନାହିଁ । ଆମ୍ଭମାନଙ୍କର ଆତ୍ମା ସବୁ ସେହି ପରମାତ୍ମାଙ୍କଠାରୁ ଆସିଛି ଏବଂ ଶେଷରେ ସେହି ପରମାତ୍ମାଙ୍କଠାରେ ଲୀନ ହୋଇଯିବ । ସେହି ପରମାତ୍ମା ଯେ ଶ୍ରୀକୃଷ୍ଣ, ତାହା ଗୋପୀମାନେ ହୃଦୟଙ୍ଗମ କରିଛନ୍ତି । ତେଣୁ ସେମାନେ ଶ୍ରୀକୃଷ୍ଣଙ୍କ ବଂଶୀଧ୍ୱନି ଶୁଣିଲାମାତ୍ରେ ସବୁକିଛି ଉପେକ୍ଷା କରି ଛୁଟିଆସୁଥିଲେ ତାଙ୍କ ନିକଟକୁ । ସେମାନଙ୍କର ସ୍ୱାମୀ, ପୁତ୍ର, କନ୍ୟା କେହି ଶ୍ରୀକୃଷ୍ଣଙ୍କ ଭଳି ଏତେ ଆପଣାର ନ ଥିଲେ । ଯେତେବେଳେ ଶ୍ରୀକୃଷ୍ଣ ଗୋପରୁ ମଥୁରା ଆସିଲେ ସେତେବେଳେ ଗୋପୀମାନଙ୍କର ମନେହେଲା, ତାଙ୍କ ଦେହରୁ ପ୍ରାଣ ଯେପରି ଛାଡ଼ି ଚାଲିଯାଉଛି । ପ୍ରାଣ

ଛାଡ଼ିଲାବେଳେ ଜୀବ ଯେଉଁଭଳି ବ୍ୟତିବ୍ୟସ୍ତ ହୋଇଥାଏ, ସେମାନେ ଠିକ୍ ସେହିଭଳି ହୋଇଥିଲେ । ଆଜି ତୁମ୍ଭେମାନେ ଗୋପପୁର ଯାଇ ଦେଖିଆସ, ନିର୍ଜୀବ ଦେହଭଳି ସେମାନେ କପରି ଗୋପରେ ପଡ଼ିରହିଛନ୍ତି ।

ଗୋପୀମାନଙ୍କର କେବେ ଗର୍ବ, ଅହଙ୍କାର ନ ଥିଲା । ସେମାନେ ଧାରଣା କରୁଥିଲେ, କୃଷ୍ଣଙ୍କର ଇଚ୍ଛା ହିଁ ସେମାନଙ୍କର ଇଚ୍ଛା । କୃଷ୍ଣଙ୍କୁ ଛାଡ଼ିଦେଲେ ସେମାନଙ୍କର ସ୍ୱତନ୍ତ୍ରତା କିଛି ଯେ ଥିଲା, ତାହା ସେମାନେ କେବେ ଧାରଣା କରୁ ନ ଥିଲେ । ଥରେ ସେମାନେ ଧାରଣା କଲେ ଯେ, କୃଷ୍ଣ ତାଙ୍କର; ଏହି ସାମାନ୍ୟ ଗର୍ବ ପାଇଁ କୃଷ୍ଣ ତାଙ୍କ ପାଖରୁ ଶୂନ୍ୟ ହୋଇଗଲେ । ସେହି ସମୟରେ ସେମାନେ କୃଷ୍ଣଙ୍କ ପାଇଁ ଏଭଳି ପାଗଳୀ ହୋଇଯାଇଥିଲେ ଯେ, ପରସ୍ପର ପରସ୍ପରକୁ ଧରି କୃଷ୍ଣଙ୍କୁ ଧରିଛନ୍ତି ବୋଲି ଧାରଣା କଲେ । କେହି ଗୋପୀ ଅନ୍ୟ ଗୋପୀର ହାତଟିକୁ ଧରି କହିବାକୁ-ଲାଗିଲା, ମୁଁ କୃଷ୍ଣର ବଂଶୀ ଧରିଛି । ପୁଣି କେହି ଗୋପୀ ଅନ୍ୟ ଗୋପୀର ଗଭାକୁ ଧରି ସେ କୃଷ୍ଣଙ୍କ ବାଙ୍କଚୂଡ଼ାକୁ ଧରିଛି ବୋଲି କହିବାକୁ ଲାଗିଲା । ଏମାନଙ୍କ ମଧ୍ୟରୁ ରାଧିକାଙ୍କ କଥା ସ୍ୱତନ୍ତ୍ର । ସେ ଯାହାକୁ ଦେଖିଲା ତାକୁ କୃଷ୍ଣ ବୋଲି କୋଳ କଲା । ବୃକ୍ଷ-ଲତା, ଗୋରୁ-ଗାଈ ସମସ୍ତେ ତାକୁ କୃଷ୍ଣଭଳି ଦେଖାଗଲେ । ଏ ବିଶ୍ୱରେ ସମସ୍ତେ ତା' ପାଖରେ କୃଷ୍ଣ ହୋଇ-ଯାଇଥିଲେ । ଗୋଟାଏ କଣ୍ଟା ବୃକ୍ଷକୁ ରାଧିକା କୃଷ୍ଣ ବୋଲି ଆଲିଙ୍ଗନ କରି, ତା' ଦେହରେ ନିଜର କୋମଳ ଗୌର ତନୁକୁ ଜଡ଼ାଇ କ୍ଷତବିକ୍ଷତ ହୋଇଥିଲା । ସେତେବେଳେ ସେ କହୁଥିଲା, ରେ କୃଷ୍ଣ ! ମୁଁ ତୋ ପାଖରେ କି ଅପରାଧ କରିଛି, ଯଦ୍ଦ୍ୱାରା ତୁ ମୋତେ ଏଭଳି କଣ୍ଟାରେ ଫୋଡ଼ିଦେଉଛୁ ?

ସମସ୍ତଙ୍କଠାରୁ ଶୂନ୍ୟ ହୋଇ, ପୁଣି ତାଙ୍କର ଅତି ନିକଟରେ ଥାଇ ଶ୍ରୀକୃଷ୍ଣ ଗୋପୀମାନଙ୍କର ତଥା ରାଧିକାର ଦୁରବସ୍ଥା ଦେଖି ବିଚଳିତ ହୋଇପଡ଼ିଲେ । ରାଧିକାର ପ୍ରେମ ତାଙ୍କ ପାଖରେ ଧାରଣାତୀତ ଥିଲା । ଗୋଟାଏ କଣ୍ଟାବୃକ୍ଷ ଦେଖି ତାକୁ କୃଷ୍ଣ ବୋଲି ଭାବି ଯେ ତା' ଦେହରେ ନିଜକୁ ଜଡ଼ାଇ କ୍ଷତବିକ୍ଷତ ହେଉଛି ଓ କୃଷ୍ଣ, ତୁ କାହିଁକି ମୋତେ ଏଭଳି କରୁଛୁ ବୋଲି ସମ୍ବୋଧନ କରି କହୁଛି, ତା' ପାଖରେ ତାଙ୍କ ପାର୍ଥିବ ଦେହର ମୂଲ୍ୟ କେତେ ?

ଅବଶେଷରେ କୃଷ୍ଣ ଦୃଶ୍ୟ ହେଲେ ଗୋପୀକାମାନଙ୍କ ପାଖରେ । ଛଦ୍ମାଚରଣରେ ରାଧାର ଦେହକୁ ନିଜ ଦେହରେ ଜଡ଼ାଇ ଉଭାହେଲେ ।

ତୁମମାନଙ୍କ ମଧ୍ୟରୁ ଏହିଭଳି କେହି ହୋଇପାରିବ ? ନିଜକୁ ପାଶୋରି ଏ ଜଗତକୁ କୃଷ୍ଣମୟ ରୂପେ ଦେଖିପାରିବ ?"

ହଠାତ୍ ନାରଦ ଦେଖିଲେ, ସମସ୍ତଙ୍କ ଅଲକ୍ଷରେ କେତେବେଳେ ଶ୍ରୀକୃଷ୍ଣ ଆସି ଗବାକ୍ଷ ଉପରେ ହାତ ରଖି ଭାବବିହ୍ୱଳ ହୋଇପଡ଼ିଛନ୍ତି । ତାଙ୍କୁ ଲାଗି ଦେବୀ ସୁଭଦ୍ରା ସେହିଭଳି ଅବସ୍ଥାରେ ଉଭା ହୋଇଛନ୍ତି । ସୁଭଦ୍ରାଙ୍କ ପାଖକୁ ଲାଗି ଛିଡ଼ାହୋଇଛନ୍ତି ପ୍ରଭୁ ବଳଦେବ । ସମସ୍ତେ ଭାବ-ବିହ୍ୱଳ । ସେମାନେ ଏଭଳି ଭାବରେ ଦଣ୍ଡାୟମାନ, ତାଙ୍କୁ ଦେଖି ନାରଦଙ୍କର ମନେହେଲା, ଶ୍ରୀକୃଷ୍ଣ ଓ ବଳଭଦ୍ରଙ୍କର ଯେପରି ହାତର ପାପୁଲି ନାହିଁ । ସୁଭଦ୍ରାଙ୍କର ତ ମୋଟେ ହାତ ଦେଖାଯାଉ ନ ଥିଲା । ସମ୍ପୂର୍ଣ୍ଣ ଅଦୃଶ୍ୟ ହୋଇଯାଇଥିଲା ଅଣ୍ଟାଠାରୁ ତଳକୁ ।

ଏପରି ଅବସ୍ଥା ଦେଖି ନାରଦ ଧାଇଁଗଲେ ସେମାନଙ୍କ ପାଖକୁ । ତାଙ୍କର ମନେହେଲା, କଳିଙ୍ଗ ସାଗର ଉପକୂଳରେ ଶବରପୂଜିତ ଯେଉଁ ଦେବତାଙ୍କୁ ସେ ଦେଖିଥିଲେ ଏବଂ ଯେ କହିଥିଲେ, ମୋ'ଠାରୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ବହିର୍ଗତ ହୋଇ ସୃଷ୍ଟି, ସ୍ଥିତି ଧ୍ୱଂସ କରୁଛନ୍ତି, ତାଙ୍କରଭଳି ସ୍ୱରୂପ ଶ୍ରୀକୃଷ୍ଣଙ୍କର । ସେ ଧାଇଁଯାଇ ହଲାଇଦେଲେ ଶ୍ରୀକୃଷ୍ଣଙ୍କୁ । ହଠାତ୍ ଶ୍ରୀକୃଷ୍ଣଙ୍କ ମୋହ ଭାଙ୍ଗିଗଲା । ସଙ୍ଗେ ସଙ୍ଗେ ସେ ଭାଇ ବଳରାମ ଓ ଭଉଣୀ ସୁଭଦ୍ରାଙ୍କୁ ସଚେତନ କରିଦେଲେ ।

ଶ୍ରୀକୃଷ୍ଣ କହିଲେ—"ନାରଦ ! ରାଧିକାର ପ୍ରେମ ଭଳି ଏ ବିଶ୍ୱରେ ଆଉ କାହାର ପ୍ରେମ ହେବନାହିଁ । କଳିଙ୍ଗ ସାଗର କୂଳରେ ତୁମେ ଯେଉଁ ଅଣାକାର ମୂର୍ତ୍ତିଙ୍କୁ ଦେଖିଆସିଲ, ସେ ହେଉଛନ୍ତି ସମସ୍ତଙ୍କ ମୂଳ । ତାଙ୍କରଠାରୁ ସମଗ୍ର ବିଶ୍ୱ ଉତ୍ପନ୍ନ । ଶବରମାନଙ୍କର ସେହି ଆତ୍ମୀୟ ପ୍ରେମ-ପାଇଁ ସେ ସେଠାରେ ରହିଛନ୍ତି । ସେହି ଶବରମାନେ ହେବେ ତାଙ୍କର ସେବକ—ପୂଜକ । ଗୋପୀମାନଙ୍କର ଆତ୍ମା ତାଙ୍କଠାରେ ପ୍ରକାଶ ପାଇବ । ସେମାନଙ୍କ ଭିତରୁ ଯେଉଁମାନେ ଗୋପୀ ଭାବରୁ ଦୂରେଇଯିବେ, ସେମାନେ

ଅଭିଶାପଗ୍ରସ୍ତ ହେବେ । ଦିନ ଆସିବ, ଯେତେବେଳେ ସମଗ୍ର ବିଶ୍ୱ ତାଙ୍କ ଆଶ୍ରା କରିବ । କିନ୍ତୁ ଗୋପୀଭାବ ଯାହାଙ୍କଠାରେ ନ ଥିବ, ତାଙ୍କଠାରୁ ସେ ଦୁରେଇଯିବେ ।"

ନାରଦ ହାତ ଦୁଇଟିକୁ ଯୋଡ଼ି ବିନମ୍ର ଭାବରେ କହିଲେ—"ମହାପ୍ରଭୁ ! ସେତେବେଳେ କ'ଣ ଆପଣ ଏକମାତ୍ର ସେଠାରେ ପୂଜା ପାଉଥିବେ ?"

ଶ୍ରୀକୃଷ୍ଣ ମୁଖରେ ହସ ଫୁଟାଇ କହିଲେ—"ନା, ଆମେ ଭାଇ-ଭଉଣୀ ତିନିଜଣ ସେଠାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ନାମରେ ପୂଜା ପାଇବୁ ତିନୋଟି ମୂର୍ତ୍ତି ହୋଇ । ଆମକୁ ଦର୍ଶନ କରି ପାପୀମାନେ ମୁକ୍ତି ପାଇଯିବେ । ସବୁ ଧର୍ମ, ସବୁ ପନ୍ଥର ଆମେ ହେବୁ ଉପାସ୍ୟ-ଉପାସ୍ୟା । ସେହି କ୍ଷେତ୍ର ବୈକୁଣ୍ଠରେ ପରିଣତ ହେବ । ସକଳ ଦେବତା ସେହି କ୍ଷେତ୍ରରେ ରହିବେ । ଆମର ପ୍ରସାଦ ହେବ ମହାପ୍ରସାଦ । ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ସମସ୍ତେ ତାହା ଭୋଜନ କରି ଧନ୍ୟ ହେବେ । ସେମାନଙ୍କର ସମସ୍ତ ପାପ ତାହାଦ୍ୱାରା ଧ୍ୱଂସ ହେବ । ସେଠାରେ ଛୁଆଁ ଅଛୁଆଁର ପ୍ରଶ୍ନ ଉଠିବ ନାହିଁ । ମୋର ସେହି ମହାପ୍ରସାଦ ଚଣ୍ଡାଳ ହାତରୁ ବ୍ରାହ୍ମଣ ମଧ୍ୟ ଗ୍ରହଣ କରି ଭୋଜନ କରିବ । କେହି ଯଦି ଭୁଲ୍‌ରେ ଘୃଣାଭାବ ମନରେ ଧାରଣା କରିବ, ତେବେ ସେ ନର୍କ ଭୋଗ କରିବ ।"

ସେତେବେଳେ ଶ୍ରୀକୃଷ୍ଣଙ୍କ ଅଷ୍ଟପାଟବଂଶୀ ରାଣୀମାନଙ୍କ ମନରୁ ସମସ୍ତ ଅହମିକା ଦୂରେଇ ଯାଇଥିଲା । ସେମାନେ ବୁଝିପାରିଥିଲେ ନିଜ ନିଜର ଭୁଲ୍ । ସବୁ ଶୁଣି ନାରଦ ଯେତେବେଳେ ଗ୍ରୀବା ନତକରି ପ୍ରଣାମ କଲେ, ସେତେବେଳେ ଶ୍ରୀକୃଷ୍ଣଙ୍କ ରାଣୀମାନେ ତଳେ ଲମ୍ବହୋଇ ଶୋଇ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସେହି ସମୟରେ ଭଗବାନ ଶ୍ରୀକୃଷ୍ଣଙ୍କ ମୁଖରେ ସ୍ମିତହାସ୍ୟ ଫୁଟିଉଠିଲା ଓ ସେ ହସ୍ତରେ ଧରିଥିବା ଦକ୍ଷିଣାବର୍ତ୍ତିକ ଶଙ୍ଖଟିକୁ ମୁହଁରେ ଦେଇ ଫୁଙ୍କିବାକୁ ଲାଗିଲେ ।

—ଃ✻ଃ—

# କାଣ୍ଡାରୀ ଶ୍ରୀଜଗନ୍ନାଥ

ଡାକି ଡାକି ସେ ଥକିପଡ଼ିଲେଣି । ନଈରେ ପାଣି ଖାଲି ଉଚ୍ଛୁଳୁଛି । ଏଥିରେ ସେ ଆରପାରିକୁ ଯିବେ ବା କିପରି ? ଯେତେ ଡାକିଲେ ବି କେହି ଶୁଣୁନାହାଁନ୍ତି । ସତେ ଯେପରି ନଈର ଆରପାରିକୁ ତାଙ୍କ ଡାକ ଶୁଭୁନାହିଁ । ତାହାହେଲେ ସେ କରିବେ କ'ଣ ? ସୂର୍ଯ୍ୟ ଧୀରେ ଧୀରେ ମୁଣ୍ଡ ଉପରୁ ପଶ୍ଚିମ ଆକାଶ ଆଡ଼କୁ ଯାଇ ତଳକୁ ତଳକୁ ଖସି ଗଲେଣି । ଆଉ କିଛି ସମୟ ପରେ ସନ୍ଧ୍ୟା ଆସିଯିବ; ତା'ପରେ ରାତି । ଏଭଳି ଅବସ୍ଥାରେ ସେ କରିବେ କ'ଣ ?

ହେ ଭଗବାନ କୃଷ୍ଣ ! ତୁମେ ଭବସାଗରରୁ ପାରି କରିଦିଅ ବୋଲି ତୁମକୁ ଲୋକେ କାଣ୍ଡାରୀ କହନ୍ତି । ଏହି ମୋ ଆଖି ଆଗରେ ଗଙ୍ଗା ନଦୀ । ନଦୀରେ ଡଙ୍ଗା ଥିଲେ ମଧ୍ୟ ତାହା ଆରପାରିରେ । ମୁଁ କ'ଣ ଆରପାରିକୁ ଯାଇପାରିବି ନାହିଁ ? ଏ ଭବସାଗର ନୁହେଁ ଭଗବାନ ! ଏଇ ପାରିର ନଈ । ଏ ନଦୀରେ ପୁଣି ମଣିଷମାନେ ପାରି ଉତ୍ତର କରନ୍ତି । ମାତ୍ର ମୋତେ ପାରି କରିଦେବାପାଇଁ କେହି ଜଣେ ଆସୁନାହାଁନ୍ତି । ହେ ଭଗବାନ ! ତୁମେ ଯଦି ଏହାର ବ୍ୟବସ୍ଥା ନ କରିବ, ତେବେ ଆଜି ମୁଁ ଏ ପାରିରେ ରହିଯିବି । ବୃନ୍ଦାବନରେ ରହି ଚିରଦିନ ତୁମର ଆରାଧନା କରିଛି । ତୁମରି ସେବାରେ ନିଜକୁ ନିୟୋଜିତ କରିଥିବାରୁ ମୋତେ କୃଷ୍ଣଦାସ ବୋଲି ଡାକନ୍ତି । ତୁମରି ଦାସ ଭଗବାନ······ଏହି କୃଷ୍ଣଦାସ । ତୁମେ ତାକୁ ପାରି ଉତ୍ତର ନ କରାଇଲେ କିଏ ଆଉ କରିବ ?

କୃଷ୍ଣଦାସଙ୍କ ମନରେ କାହିଁକି କେଜାଣି ଅହେତୁକ ଭୟ ସଞ୍ଚାର ହେବାକୁ ଆରମ୍ଭ କଲା । ସେ ନିଜେ ନିଜକୁ କହିଲେ, ଆରେ ! ତୁ ତ ମରିଥିଲେ କେତେଦିନ ହେବ ମରିସାରନ୍ତୁଣି । ତେଣୁ ମୃତ୍ୟୁ ପାଇଁ ଭୟ କରୁଛୁ କାହିଁକି ? ତୋ ଭିତରେ ଅହେତୁକ ଭୟ ଆସୁଛି କାହିଁକି ?

ତଥାପି ମନ ମାନୁନାହିଁ । ସତେ ଯେପରି ତାଙ୍କ ଭିତରେ ଭୟର ଗୋଟାଏ ବିରାଟ ପାହାଡ଼ ଏ ମଧ୍ୟରେ ସୃଷ୍ଟି ହୋଇଛି । ସେହି ପାହାଡ଼ ମଧ୍ୟରୁ ଖଣ୍ଡେ ଖଣ୍ଡେ ପଥର ଖସିଆସି ତାଙ୍କ ମନର ଦମ୍ଭ, ସାହସକୁ ଭାଙ୍ଗିଦେଉଛି । ହେ କୃଷ୍ଣ ! ତୁମେ ସହାୟ ହୁଅ ।

କାହିଁ··· ? ଆରପାରିରୁ କେହି ତ ଡଙ୍ଗାଟିକୁ ଏ ପାରିକୁ ଆଣିଲା ନାହିଁ । ତେବେ କ'ଣ ସନ୍ଧ୍ୟା ପୂର୍ବରୁ ଏ ପାରିରୁ ଆରପାରିକୁ ଯାଇପାରିବି ନାହିଁ । ହେ କଳିଙ୍ଗର ମହାପ୍ରଭୁ ଜଗନ୍ନାଥ ! ଏହି ଗଙ୍ଗା ନଦୀର ଆରପାରିରୁ ତୁମ ଭୂଇଁ ପଡ଼ିବ । ପୁରୁଷୋତ୍ତମର ପଣ୍ଡା କହୁଥିଲେ, ତୁମେ ଅବତାରୀ; ତୁମରି ଭିତରୁ ସୃଷ୍ଟି ରକ୍ଷା ପାଇଁ ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନାଦି ଅବତାର ଆସି ଦୁଷ୍ଟ ଦଳନ କରି ସନ୍ଥପରି ପାଳନ କରନ୍ତି । ତୁମେ କୁଆଡ଼େ ନିଶ୍ଚିନ୍ତରେ ଅବସ୍ଥାନ କରିଛ କଳିଙ୍ଗର ମହୋଦଧି କୂଳର ପୁରୁଷୋତ୍ତମର ରତ୍ନସିଂହାସନରେ । ମହାପ୍ରଭୁ ! ମୁଁ ଶୁଣିଛି ଗଙ୍ଗାର ଏ ପାରିରେ ଦସ୍ୟୁମାନଙ୍କ ଦୌରାତ୍ମ୍ୟ ବେଶି । ସନ୍ଧ୍ୟା ହେଉ ହେଉ ସେମାନେ ବାହାରିପଡ଼ି ପଥିକର ସର୍ବସ୍ୱ ହରଣ କରନ୍ତି । ପଥିକ ପାଖରେ ଧନ ଥାଉ ନ ଥାଉ ସେ ତାଙ୍କୁ ଜୀବନରେ ମାରିଦିଅନ୍ତି । ହେ ମହାପ୍ରଭୁ ! ତୁମରି ନାମରେ ତୁମ ପଣ୍ଡା ମୋ ବେକରେ ତୁମ ପାଟଡୋରୀ ବାନ୍ଧିଦେଇ ଯାଇଛନ୍ତି । କଠିନ ରୋଗରେ ମୁଁ ମଲାଭଳି ପଡ଼ିଥିଲି; ସମସ୍ତେ ମୋ ଆଶା ଛାଡ଼ି ସାରିଥିଲେ । କେବଳ ଅପେକ୍ଷା କରିଥିଲେ, କେତେବେଳେ ମୁଁ ମରିବି; ମୋତେ ନେଇ ସମାଧିରେ ଶୁଆଇଦେବେ । ସେଦିନ କୁଆଡ଼େ ମୋ ନାଡ଼ି ଛାଡ଼ି ଛାଡ଼ି ଆସୁଥିଲା ! ମରିବା ପୂର୍ବରୁ ଲୋକମାନେ ଯେପରି ବାଳିବକେଇ ହୁଅନ୍ତି, ମୁଁ କୁଆଡ଼େ ସେହିପରି ବାଉଳାଗୁଉଳା ହେଉଥିଲି । ଭାଗ୍ୟକୁ ସେଦିନ ତୁମ ପଣ୍ଡା ଆସି ମୋ ବେକରେ ତୁମ ପାଟଡୋରୀ ବାନ୍ଧିଦେଇ କହିଗଲେ, ଭଲ ହୋଇଗଲା ପରେ ମୁଁ ଯାଇ ଜଗନ୍ନାଥ ଦର୍ଶନ କରିବି । ତେଣୁ ଭଲ ହେଲା ପରେ ମୁଁ ଧାଇଁଆସିଛି ତୁମ ଦର୍ଶନ ପାଇଁ । ହେଲେ ଯାଇପାରୁଛି କେଉଁଠି ? ସନ୍ଧ୍ୟା ହେଲା ପରେ ଦସ୍ୟୁମାନେ ଆସିଯିବେ । ମୋ ପାଖରେ ଧନରତ୍ନ କିଛି ନ ଥିଲେ ବି ସେମାନେ ମାରିଦେଇ ଚାଲିଯିବେ ।

ଏ ସଂସାରରେ ଜନ୍ମ ହେଲେ ମୃତ୍ୟୁ ତ ନିଶ୍ଚିତ । ତେଣୁ ମରିବାପାଇଁ ମୋର ଭୟ ନାହିଁ; କେବଳ ଅବଶୋଷ ରହିଯିବ, ତୁମକୁ ଦର୍ଶନ କରିପାରିଲି

ନାହିଁ ବୋଲି । ଶୁଣିଛି, ତୁମ ଅଦ୍ଭୁତ । ତୁମ ରୂପ ଅପୂର୍ବ । ସେ ରୂପରେ ବିଶ୍ୱର ସମସ୍ତଙ୍କ ସ୍ୱରୂପ ରହିଛି । କୁଆଡ଼େ ଶ୍ରୀକୃଷ୍ଣଙ୍କ ଦେହାବଶେଷ ତୁମ ମଧ୍ୟରେ ଅଛି । ସେଥିପାଇଁ ମୁଁ ଚାଲିଛି ତୁମକୁ ଦର୍ଶନ କରି ଏ ପାପ ଆଖିକୁ ପବିତ୍ର କରିବାପାଇଁ । ମରିଗଲେ ଆଉ ଏ ଜନ୍ମରେ ଦର୍ଶନ କରିପାରିବି ନାହିଁ ।

ମନେ ମନେ ନୁହେଁ—ସେଠାରେ ତ କେହି ନ ଥିଲେ; ତେଣୁ ସ୍ୱତଃ ଅନୁଚ୍ଚ ସ୍ୱରରେ ସେ କହୁଥିଲେ ତାଙ୍କ ମନକଥା । ତେଣେ ଆରପାରିରେ ଥିବା ଡଙ୍ଗାଟିକୁ ସେ ଅନାଇଥା'ନ୍ତି, ଏଣେ ଗୁଣୁଗୁଣୁ ହୋଇ କହୁଥା'ନ୍ତି ।

ହଠାତ୍ ସେ ଦେଖିଲେ ଆରପାରିରୁ କିଏ ଜଣେ ଆସି ଡଙ୍ଗାଟି ଉପରେ ବସିଲା । ତା'ପରେ ହାଲସା ଧରି ଡଙ୍ଗାଟିକୁ ଏ ପାରିକୁ ଆଣିବାକୁ ହାଲସା ଚଳାଇବା ଆରମ୍ଭ କଲା ।

ଆଶା ସଞ୍ଚାର ହେଲା କୃଷ୍ଣଦାସଙ୍କ ମନରେ । ମନେ ମନେ ତାଙ୍କର ଆରାଧ୍ୟ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି ସେ ହାତ ଦୁଇଟିକୁ ଯୋଡ଼ି ମୁଣ୍ଡରେ ଲଗାଇଲେ । ଗୁଣୁଗୁଣୁ ସ୍ୱରରେ କହିଲେ, ହେ କୃଷ୍ଣ ! ତୁମ ଛଡ଼ା ଆଉ ଶ୍ରେଷ୍ଠ କାଣ୍ଡାରୀ ଏ ବିଶ୍ୱରେ କିଏ ଅଛି ? ତୁମେ ଯଦି ପାରି କରିବାକୁ ଇଚ୍ଛା କରିବ, ତେବେ ଏକା କୃଷ୍ଣଦାସ କାହିଁକି – ସମସ୍ତେ ମଧ୍ୟ ପାରି ହୋଇଯିବେ । ତୁମେ ନ ଚାହିଁଲେ, ଯେ ହେଉ ନା କାହିଁକି କେହି ପାରି ହୋଇପାରିବେ ନାହିଁ ।

କୃଷ୍ଣଦାସ ଏକ ଧ୍ୟାନରେ ଡଙ୍ଗାଟି ଆଡ଼କୁ ଅନାଇଥା'ନ୍ତି । ଏ ମଧ୍ୟରେ ଡଙ୍ଗାଟି ସେ କୂଳରୁ ଆସି ମଝି ନଈରେ ହୋଇସାରିଥାଏ । ଆଉ ଅଳ୍ପ ସମୟ ଅପେକ୍ଷା କଲା ପରେ ଡଙ୍ଗାଟି ଆସି ଏ କୂଳରେ ପହଞ୍ଚିଯିବ । ତା'ପରେ ସେ ଆରପାରିକୁ ଚାଲିଯିବେ । ଭଗବାନ କୃଷ୍ଣ ତାଙ୍କ ଡାକ ଶୁଣିଛନ୍ତି । ତା ନ ହେଲେ ଡଙ୍ଗାଟି ଆସନ୍ତା ନାହିଁ । ହେ କୃଷ୍ଣ ! ତୁମଛଡ଼ା ଅନ୍ୟ ପଥ ନାହିଁ । ତୁମର ଦେହାବଶେଷ ଶ୍ରୀଜଗନ୍ନାଥ ରୂପରେ ଆରାଧିତ ହେଉଥିବା ଶୁଣି, ଏ କୃଷ୍ଣଦାସ ଧାଇଁ ଚାଲିଛି ପୁରୁଷୋତ୍ତମ ଆଡ଼େ । ତୁମେ ତାକୁ ପଥ କଢ଼ାଇ ନିଅ ।

ଡଙ୍ଗାଟି କୂଳରେ ଆସି ଲାଗିଲା । କୃଷ୍ଣଦାସ ତାଙ୍କର ଗଣ୍ଠିଲିଟି ଧରି ଚାଲିଲେ ଡଙ୍ଗା ପାଖକୁ । ଡଙ୍ଗା ଚାଳକ ଜଣକ ଦେଖିବାକୁ ବେଶ୍ ମୋଟାମୋଟି କାଳିଆ ହୋଇ । କୃଷ୍ଣଦାସ ଡଙ୍ଗା ଉପରକୁ ଉଠୁ ନ ଉଠୁଣୁ ନାଉରୀ କହିଲା—"ତୁମେ କ'ଣ ଆରପାରିକୁ ଯିବ ? ଯଦି ଯିବ ତେବେ ଶୀଘ୍ର ଆସ; ମୋର ବହୁତ କାମ ଅଛି ।"

ନାଉରୀର କାମ ଥାଉ ନ ଥାଉ, ତାଙ୍କୁ ଆରପାରିକୁ ନେଇଗଲେ ହେଲା । ସେ କୃଷ୍ଣ କୃଷ୍ଣ କହି ଡଙ୍ଗା ଉପରକୁ ଉଠିଗଲେ । ତା'ପରେ ନାଉରୀ ଆଡ଼କୁ ଅନାଇଁ କହିଲେ—"କୃଷ୍ଣ ତୁମର ମଙ୍ଗଳ କରନ୍ତୁ । ମୁଁ ବହୁତବେଳ ହେଲା ଅପେକ୍ଷା କରିଛି ନଈ ପାରି ହେବାପାଇଁ । ଭଗବାନ କୃଷ୍ଣ ବୋଧେ ତୁମକୁ ପଠାଇଲେ ମୋତେ ଆରପାରିକୁ ନେବାପାଇଁ । ବେଳ ଉଚ୍ଛୁର ହେଉଛି, ଟିକିଏ ଶୀଘ୍ର ଶୀଘ୍ର ଡଙ୍ଗାଟି ନେଇଚାଲ !"

ନାଉରୀ କହିଲା—"ହଁ...ହଁ, ମୋତେ କୃଷ୍ଣ ପଠାଇଛନ୍ତି; ତୁମଭଳି ଜଣେ ବୈଷ୍ଣବଙ୍କୁ ପାରି କରିବାକୁ କୃଷ୍ଣ ପରା ମୋତେ ଡାକି କହିଲେ, ଶୀଘ୍ର ଯାଇ ତାଙ୍କୁ ନେଇଆସ ।"

କୃଷ୍ଣଦାସ ଦୁଇ ହାତକୁ ଯୋଡ଼ି ମୁଣ୍ଡରେ ଲଗାଇଲେ । ହେ ଭଗବାନ ! ତୁମର ଅପାର କରୁଣା ମୋ ଉପରେ ଅଛି । ଯୁଗେ ଯୁଗେ ତୁମେ ଭକ୍ତର ସହାୟ ହୋଇଥାଅ । ତୁମେ ହିଁ ଏକମାତ୍ର ଏ ବିଶ୍ୱର ଉଦ୍ଧାର କର୍ତ୍ତା ।

ଡଙ୍ଗା ଉପରେ ବସି କୃଷ୍ଣଦାସ ଜପ କରିବାକୁ ଲାଗିଲେ ଇଷ୍ଟ ନାମ । ନାଉରୀ ଡଙ୍ଗା ବାହି ଚାଲିଲା ପରପାରିକୁ । ବ୍ୟାସ ମହାଭାରତରେ ଲେଖି-ଯାଇଛନ୍ତି, ଗଙ୍ଗାର ପରପାରିରୁ କଳିଙ୍ଗ ରାଜ୍ୟ । ବୈତରଣୀ ପାରି ହେଲେ ବିରଜା କ୍ଷେତ୍ର ପଡ଼ିବ । ପୂର୍ବେ ସେଠାରେ ଦେବତାମାନେ ଯଜ୍ଞ କରୁଥିଲା-ବେଳେ ଯଜ୍ଞ ପଶୁଟିକୁ ରୁଦ୍ର ହରଣ କଲେ । ଦେବତାମାନେ ତାଙ୍କୁ ସ୍ତୁତିକରି କହିଲେ, ହେ ରୁଦ୍ର ! ତୁମେ ସମସ୍ତ ଭାଗ କାହିଁକି ନେଇଯାଉଛ ? ଯଦି ତୁମେ ପଶୁଟିକୁ ଫେରାଇଦେବ, ତେବେ ତୁମକୁ ଯଜ୍ଞରେ ଏକ ଶ୍ରେଷ୍ଠ ଭାଗ

ପ୍ରଦାନ କରିବୁ । ଦେବତାମାନଙ୍କ କଥାରେ ସନ୍ତୁଷ୍ଟ ହୋଇ ରୁଦ୍ର ଯଜ୍ଞ ପଶୁଟିକୁ ଫେରାଇଦେଲେ । ସେହି ଦିନଠାରୁ ରୁଦ୍ର ମହାଦେବ ବୋଲି ଲୋକ ସମାଜରେ ପୂଜିତ ହୋଇଆସିଛନ୍ତି । ସେହିଭଳି ଏକ ମହାନ୍ କ୍ଷେତ୍ରକୁ ଦର୍ଶନ କରି ଚାଲିବେ ପୁରୁଷୋତ୍ତମ ଅଭିମୁଖେ । ବାଟରେ ବିଭିନ୍ନ କ୍ଷେତ୍ର ପଡ଼ିବ । ସେ ସମସ୍ତ କ୍ଷେତ୍ରର ମହାତ୍ମ୍ୟ ଶ୍ରବଣ କରି ସେ ପୁରୁଷୋତ୍ତମ ଯାଇ ଜଗନ୍ନାଥଙ୍କୁ ଦେଖିବେ । ଶ୍ରୀକୃଷ୍ଣଙ୍କର ଦେହାବଶେଷ ଯେଉଁ କ୍ଷେତ୍ରରେ ଜଗନ୍ନାଥ ରୂପେ ଆରାଧିତ, ସେ କ୍ଷେତ୍ର ନିଶ୍ଚୟ ବୃନ୍ଦାବନ ଭଳି ହୋଇଥିବ । ବଂଶୀଧାରୀ କୃଷ୍ଣ ନିଶ୍ଚୟ ସେଠାରେ ଆରାଧିତ ହେଉଥିବେ ଭକ୍ତଙ୍କୁ ଉଦ୍ଧାର କରିବାପାଇଁ ।

—"ହେ ବାବାଜୀ ! କେତେ ଧନ ଆଣିଛୁ ନଈ ପାରି ହେବାପାଇଁ ?"

କୃଷ୍ଣଦାସ କୃଷ୍ଣ ନାମ ଜପ କରିବାରେ ବ୍ୟସ୍ତ । ନାଉରୀର କୌଣସି କଥା ତାଙ୍କ ଶୁଭୁ ନ ଥାଏ । ସେ କିଛି ଉତ୍ତର ନ ଦେବାରୁ ନାଉରୀ ଡଙ୍ଗା ବାହିବା ବନ୍ଦକରି ବଡ଼ ପାଟିରେ କହିଲା, "ବାବାଜୀ ! ତୋତେ କ'ଣ ଶୁଭୁନାହିଁ କି ? ମୁଁ ପରା ପଚାରୁଛି କେତେ କଉଡ଼ି ଆଣିଛୁ ନଈ ପାରି ହେବାପାଇଁ ?"

ଏଥର କୃଷ୍ଣଦାସଙ୍କ କାନକୁ ନାଉରୀର କଥା ଟିକିଏ ଶୁଭିଲା । ସେ ବଡ଼ ପାଟିରେ କହିଲେ, "କ'ଣ କହିଲ ପ······କଉଡ଼ି ! କଉଡ଼ି ମୁଁ କେଉଁଠୁ ପାଇବି ? ଦେଖୁଛ ତ ବୈଷ୍ଣବ ଲୋକ । କୃଷ୍ଣଙ୍କୁ ଜପି ଜପି ଦିନ ସାରୁଛି । ଶୁଣିଲି କୃଷ୍ଣଙ୍କ ଦେହାବଶେଷ କୁଆଡ଼େ ଜଗନ୍ନାଥ ରୂପରେ ଆରାଧିତ ହେଉଛନ୍ତି । ତେଣୁ ଯାଉଛି ତାଙ୍କର ଦର୍ଶନପାଇଁ; କଉଡ଼ି ମୋର ବା କ'ଣ ହେବ ?"

—"ବାବାଜୀ ! ତୁମର କଉଡ଼ି ଦରକାର ହୋଇ ନ ପାରେ, କିନ୍ତୁ ମୋର ଦରକାର । ଗଙ୍ଗାନଦୀ ଭଳି ନଦୀର ଗୋଟିଏ ପାର୍ଶ୍ୱରୁ ଡଙ୍ଗା ଆଣି ତୁମକୁ ଏ ପାରିରୁ ନେଇ ପୁଣି ସେ ପାରିରେ ଛାଡ଼ିବି କାହିଁକି ? ଏହାଦ୍ୱାରା

ମୋର ଲାଭ କ'ଣ ବାବାଜୀ ? ସେ ଯାହାହେଉ, ଶୀଘ୍ର କଉଡ଼ି ବାହାରକର ! ତା' ନ ହେଲେ ତୁମର ନିସ୍ତାର ନାହିଁ ।"

—"ବାବା ! ତୁମେ ତ ଜାଣୁଛ, ମୁଁ ବୈଷ୍ଣବ ଲୋକ; ବୈଷ୍ଣବ-ମାନେ ଜାଣନ୍ତି, ତାଙ୍କର ଇଷ୍ଟ ବିଷ୍ଣୁଙ୍କର ପାଟରାଣୀ ଲକ୍ଷ୍ମୀ । ତେଣୁ ସେମାନେ ଯୁଆଡ଼େ ଗଲେ ମଧ୍ୟ ଗଣ୍ଡାଏ ଖାଇବାକୁ ମିଳିବ । ଧନ ଭଣ୍ଡାରର ମାଲିକ ଯେତେବେଳେ ଲକ୍ଷ୍ମୀ, ସେତେବେଳେ ବିଷ୍ଣୁଙ୍କ ସେବକ କ'ଣ ଅସୁବିଧାରେ ପଡ଼ିବେ ? ଆଉ ତୁମେ ଜଣେ ବୈଷ୍ଣବଙ୍କୁ ପାରି କରିଥିବାରୁ ତୁମପ୍ରତି ମା' ଲକ୍ଷ୍ମୀ ମଧ୍ୟ ସଦୟ ହେବେ ।"

—"ହେ ବାବାଜୀ ! ସେଗୁଡ଼ାକ ମୋ ପାଖରେ ଲୁହନାହିଁ । ଯଦି ଧନ ନ ଥିଲା ତେବେ ନଈ ପାର ପାଇଁ ଆସୁଥିଲୁ କାହିଁକି ? ତୋ'ର ଆରାଧ୍ୟ ଯଦି ବିଷ୍ଣୁ, ତେବେ ତୁ ତୋ ଲକ୍ଷ୍ମୀଙ୍କୁ ଟିକିଏ କହିଦେଉନୁ; ସେ ଯଦି ଏହି ମୁହୂର୍ତ୍ତରେ ଧନ ଦେବେ ତେବେ ମୁଁ କାହିଁକି ତୋତେ କ'ଣ କହିବି ? ସିଧା କହୁଛି ଶୀଘ୍ର କଉଡ଼ି ବାହାର କର ! ତା' ନ ହେଲେ ଏହି ମଝି ନଈରେ ତୋତେ ଫୋପାଡ଼ିଦେଇ ଚାଲିଯିବି ।"

ସତେ ତ··· ! ନାଉରି ଠିକ୍ କଥା କହୁଛି । ମୁଁ ବିଷ୍ଣୁଙ୍କର ସେବକ 'ବୈଷ୍ଣବ' । ଲକ୍ଷ୍ମୀ ଯଦି ମୋ କଥା ନ ଶୁଣନ୍ତି, ତେବେ ନାଉରିଆ କଥା ଶୁଣିବେ କାହିଁକି ? କିନ୍ତୁ ମୁଁ ଡାକିଲେ କ'ଣ ଲକ୍ଷ୍ମୀ ଶୁଣିବେ ? ଡଙ୍ଗା ଭାସି ଭାସି ଚାଲିଥାଏ । ସୁଅ ଭସାଇ ନେଇ ଚାଲୁଥାଏ ଡଙ୍ଗାକୁ ସ୍ରୋତର ଅନୁକୂଳରେ । ଏହି ଅବସ୍ଥାରେ ସେ କ'ଣ କରିବେ ? ଲକ୍ଷ୍ମୀଙ୍କୁ ଡାକିଲେ କ'ଣ ସେ ତାଙ୍କ କଥାରେ ଧନ ଦେଇଦେବେ ?

—"ହେ ବାବାଜୀ ! ଚୁପ୍ ହୋଇ ବସିଲୁ କାହିଁକି ? ଧନ ଦେବୁ ନା ତୋତେ ଏଇଠି ଫୋପାଡ଼ିଦେଇ ଚାଲିଯିବି ? ମୋର ଧନ ଦରକାର । ତୋ ମାଲିକର ଘରଣୀ ଯଦି ଲକ୍ଷ୍ମୀ ତେବେ ତାଙ୍କୁ ଧନ ଦେବାକୁ କହୁନୁ ?"

—"ହେ ମା' ଲକ୍ଷ୍ମୀ ! ମୁଁ କୃଷ୍ଣଦାସ, ଜଣେ ବୈଷ୍ଣବ ତୁମକୁ ଚିନ୍ତା କରୁଛି । ଏ ନାଉରିଆ ଧନ ନ ପାଇଲେ ମୋତେ ଏହି ଗଙ୍ଗା ନଦୀରେ ଫୋପାଡ଼ିଦେଇ ଚାଲିଯିବ । ଏହାଦ୍ୱାରା ନିନ୍ଦା ହେବ ବିଷ୍ଣୁଙ୍କର ଆଉ ତୁମର ।

ତେଣୁ କୃଷ୍ଣଙ୍କର ଦାସ ଏହି କୃଷ୍ଣଦାସକୁ ରକ୍ଷା କରିବାପାଇଁ ତୁମେ କିଛି ବ୍ୟବସ୍ଥା କର ମା' ।"

—"ସେ ପୁଡ଼ାରେ କଣ ଅଛି ବାବାଜୀ ? କ'ଣ ସେଥିରେ ଧନ ରଖିଛୁ ? ଆରେ, ଶୀଘ୍ର ଧନ ଦେ; ଖାଲି ଆଖିବୁଜି ବସିଲେ ମୁଁ ତୋତେ ଛାଡ଼ିଦେବି ନାହିଁ । ଦେ···ଦେ, ତା ନ ହେଲେ ଏଇଠି ତୁ ମଲୁ !"

କୃଷ୍ଣଦାସ ନୀରବ । ଏଣେ ଡଙ୍ଗା ଭାସିଚାଲିଥାଏ । ନାଉରିଆ ବି ବ୍ୟସ୍ତ ହୋଇପଡ଼ିଲାଣି କଉଡ଼ି ପାଇଁ । ଡେରି ହେଲେ ସେ ତାଙ୍କୁ ନଈରେ ଫୋପାଡ଼ିଦେଇ ପାରେ । ତାହାହେଲେ ଉପାୟ କ'ଣ । ତେବେ କ'ଣ ପୁରୁଷୋତ୍ତମ ଆଉ ଯାଇହେବ ନାହିଁ । ଠିକିଏ ଦର୍ଶନ କରିପାରିବ ନାହିଁ ଜଗନ୍ନାଥଙ୍କୁ ? ହେ ମହାପ୍ରଭୁ ଜଗନ୍ନାଥ ! ତୁମେ ପରା ଅନ୍ତର୍ଯାମୀ । ତୁମେ କ'ଣ ଜାଣିପାରୁନାହିଁ କୃଷ୍ଣଦାସ ଅନ୍ତରର ଦୁଃଖ । ଏହି ନଈ ଆରପାରିକୁ ଗଲେ କଳିଙ୍ଗ ଦେଶ ପଡ଼ିବ । ତୁମେ କଳିଙ୍ଗରେ ବାହୁ ମେଲାଇ ବସିରହିଛ; ମୋତେ କ'ଣ ରକ୍ଷା କରିବ ନାହିଁ ମହାପ୍ରଭୁ !"

—"ହେ ବାବାଜୀ ! ତୁ କ'ଣ ଭାବିଛୁ ତୁ ଚୁପ୍ ହୋଇ ବସିଲେ ମୁଁ ତୋତେ ଛାଡ଼ିଦେବି ?"

—"ଦେଖ ବାବା ! ମୁଁ ଜଗନ୍ନାଥଙ୍କ ଦର୍ଶନରେ ଯାଉଛି । କଳିଙ୍ଗର ମହୋଦଧି କୂଳର ଶ୍ରୀପୁରୁଷୋତ୍ତମରେ ସେ କୁଆଡ଼େ ବାହୁ ମେଲାଇ ବସିଛନ୍ତି ବୋଲି ମୁଁ ଶୁଣିଛି । ତାଙ୍କ ନାଁ' ଧରିଲେ ଯମ ଭୟ ପାଇ ପଳାଇଯାଏ । ସେହିଭଳି ଏକ ଦେବତାଙ୍କ ଦର୍ଶନପାଇଁ ଯାଇଥିଲାବେଳେ ତୁମେ ଯଦି ମୋତେ କଷ୍ଟ ଦେବ ତେବେ ମୁଁ ଆଉ କହିବି କ'ଣ ?"

—"ଆରେ, ଏ ବାବାଜୀ ତ କମ୍ ଫିସାଦିଆ ନୁହେଁ । ଏଇଲେ କହୁଥିଲି କୃଷ୍ଣ, ପୁଣି କହିଲାଣି ଜଗନ୍ନାଥ । ମୁଁ ତୋ'ର ସେ କୃଷ୍ଣ କିମ୍ବା ଜଗନ୍ନାଥ କାହାକୁ ଚିହ୍ନେନାହିଁ । ଭଲରେ କହୁଛି କଉଡ଼ି ଦେ'....., ନ ହେଲେ ଏହି ନଈରେ ତୋତେ ଫୋପାଡ଼ିଦେଇ ଚାଲିଯିବି । ତୋତେ ମୋ ହାତରୁ କେହି ରକ୍ଷା କରିପାରିବେ ନାହିଁ ।"

ନାଉରିଆ ବାବାଜୀଙ୍କୁ ନଈରେ ଫୋପାଡ଼ିଦେବାକୁ ଆଗେଇ ଆସିଲା । ଏଥର ବାବାଜୀ ନିରୁପାୟ । ହେ ଜଗତର ନାଥ ଜଗନ୍ନାଥ ! ତୁମେ ମୋତେ ରକ୍ଷାକର ପ୍ରଭୁ ! ହେଇ···ଦେଖାଯାଉଛି ସେହି ତିର ପବିତ୍ର ଭୂମି କଳିଙ୍ଗ । ମୁଁ କ'ଣ ତୁମ ଭୂମିରେ ପଦାର୍ପଣ ନ କରି ମରିଯିବି ? ମୋତେ ତୁମେ ରକ୍ଷା କରିପାରିବ ନାହିଁ ?

ନାଉରିଆ କୃଷ୍ଣଦାସଙ୍କୁ ଦୁଇହାତରେ ଧରିଲା ଟେକିନେଇ ନଦୀରେ ଫୋପା'ଡ଼ି ଦେବାପାଇଁ । ଉଃ···, ଏ କ'ଣ ? ବାବାଜୀଟା ଏତେ ଓଜନ ? ଟିକିଏ ହେଲେ ଉଠାଇ ହେଉନାହିଁ ତ ! ନାଉରିଆ ସମସ୍ତ ଶକ୍ତି ଖଟାଇ ଚେଷ୍ଟାକଲା, ହେଲେ ଡଙ୍ଗାରୁ ଟିକିଏ ହେଲେ କୃଷ୍ଣଦାସଙ୍କୁ ସେ ଉଠାଇ-ପାରିଲା ନାହିଁ । ସେ ମନେ ମନେ ଭାବିଲା, ବାବାଜୀ ବୋଧେ କାମିଆଁ ଜାଣେ; ତେଣୁ ତାକୁ ଉଠାଇ ହେଉନାହିଁ । ତାହାହେଲେ କ'ଣ କରାଯିବ ? ବାବାଜୀକୁ କ'ଣ ଛାଡ଼ିଦେବ ! ହଠାତ୍ ତା' ମନକୁ ଆସିଲା, ଡଙ୍ଗାଟିକୁ କୂଳ ଆଡ଼କୁ ନେଇଯାଇ କୂଳରେ ପହଞ୍ଚିବା ପୂର୍ବରୁ ନାଆଟିକୁ ଓଲଟାଇଦେବ ।

ନାଉରିଆ କୃଷ୍ଣଦା'ସଙ୍କୁ ଛାଡ଼ି କେଲୁଆର ପାଖକୁ ଫେରିଆସିଲା । ହାଲସା ମାରି ଡଙ୍ଗାଟିକୁ ଧୀରେ ଧୀରେ କୂଳ ଆଡ଼କୁ ବାହିନେଲା । କୃଷ୍ଣଦାସ କିନ୍ତୁ ଆଖିବୁଜି ଧ୍ୟାନ କରୁଥା'ନ୍ତି ଜଗନ୍ନାଥଙ୍କୁ । ମନେ ମନେ କହିଚାଲିଥା'ନ୍ତି ତାଙ୍କ ମନର ଦୁଃଖ; "ହେ ବିଶ୍ୱର ମହାପ୍ରଭୁ ଜଗନ୍ନାଥ ! ତୁମେ ସମସ୍ତଙ୍କ ଊର୍ଦ୍ଧ୍ୱରେ, ତୁମେ କୃଷ୍ଣଦାସକୁ ରକ୍ଷା ନ କଲେ ଏଇଠି ଏହି ନଈରେ ଜୀବନ ଗଲା । ତୁମକୁ ଦର୍ଶନ କରି ଏ ପାପ ଆଖିକୁ ଟିକିଏ ପବିତ୍ର କରିବି ବୋଲି ବୃନ୍ଦାବନରୁ ମୁଁ ଧାଇଁଆସିଛି ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟନ୍ତ । ତୁମେ ମୃତ୍ୟୁ ମୁଖରୁ ମୋତେ ବଞ୍ଚାଇଛ । ଆଜି ମୋତେ ରକ୍ଷାକରି ତୁମର ପତିତପାବନ ନାମକୁ ସାର୍ଥକ କର । ମହାଦୁଃଖରେ ପଡ଼ିତ ହୋଇ ମୁଁ ଆଉ କାହାକୁ ନ ଚା'ଇ ତୁମର ଶରଣ ଗଲି ମହାପ୍ରଭୁ ! ତୁମେ ହିଁ ମୋର ଏକମାତ୍ର ଭରସା ।"

କୂଳ ପାଖେଇ ଆସିଲା । ଏଥର ଡଙ୍ଗାଟିକୁ ଓଲଟା'ଇଦେବାକୁ ହେବ । ହଠାତ୍ କ'ଣ ଗୋଟାଏ ଶବ୍ଦ ଶୁଣି ସେ କୂଳ ଆଡ଼କୁ ଅନାଇଦେଲା;

ନଈ କୂଳରେ କଳାଘୋଡ଼ା ଓ ଧଳାଘୋଡ଼ା ଉପରେ ଚଢ଼ି ଦୁଇଜଣ ବୀରପୁରୁଷ ଛିଡ଼ା ହୋଇଛନ୍ତି । ତାଙ୍କ କଟୀରେ ଝୁଲୁଛି କରବାଳ ଓ ହାତରେ ଧନୁଶର ।

—"ରେ ନାଉରିଆ ! ଶୀଘ୍ର ଡଙ୍ଗା କୂଳକୁ ଆଣ । ଆମେ ଦୁହେଁ ବହୁ ସମୟ ଧରି ତୋ ଗତିବିଧି ଲକ୍ଷ୍ୟ କରୁଛୁ । ତୁ କ'ଣ ଶୁଣିନାହୁଁ କଳିଙ୍ଗରେ ଜଗନ୍ନାଥ ବସିଛନ୍ତି ବୋଲି ? ତାଙ୍କ ପାଖକୁ ଯେ ଯାଉଛି, ତାକୁ ତୁ କଟାଳି କରୁଛୁ ? ସାବଧାନ ! ତୁ ଆଉ କଷ୍ଟ କରିବାକୁ ଗଲେ ମରିଯିବୁ; ତୋତେ କେହି ରକ୍ଷା କରିପାରିବେ ନାହିଁ ।"

ନାଉରିଆ ସେ ଦୁଇଜଣଙ୍କୁ ଦେଖି ଭୟ ପାଇଗଲା । ତା'ର ମନେହେଲା, ବଳୁଆ ହାତ ଦୁଇଟି ସତେ ଯେପରି ତା'ର ଦୁର୍ବଳ ହୋଇ-ପଡ଼ୁଛି । ଏଭଳିକି ସେହି ହାତ ଦୁଇଟିକୁ ଟିକିଏ ହେଲେ ଉପରକୁ ଉଠାଇ ହେଉନାହିଁ ।

ଡଙ୍ଗା ଆଗେଇ ଚାଲିଥାଏ କୂଳ ଆଡ଼କୁ । କୃଷ୍ଣଦାସ ଆଖିବୁଜି ମନ-ଆକାଶରେ ଜଗନ୍ନାଥଙ୍କୁ ଦେଖୁଥା'ନ୍ତି ଓ ମନର ଦୁଃଖ ଜଣାଉଥା'ନ୍ତି । ତାଙ୍କ ମନରେ ଦୃଢ଼ ଧାରଣା ହେଉଥାଏ, ସେହି କଳିଙ୍ଗର ମହୋଦଧି କୂଳରେ ଉପାସିତ ପରଂବ୍ରହ୍ମ ମୋତେ ରକ୍ଷା କରିବେ ।

ସେତେବେଳକୁ ସୂର୍ଯ୍ୟ ପଶ୍ଚିମ ଆକାଶର ମଧ୍ୟ ଦେଶରେ ରହି ସେହି ଘୋଡ଼ା ଦୁଇଟି ଉପରେ ଚଢ଼ିଥିବା ବୀରପୁରୁଷ ଦୁହିଁଙ୍କୁ ଦର୍ଶନ କରୁଥିଲେ । ତାଙ୍କର ଉଷ୍ଣ କିରଣ ଧୀରେ ଶୀତଳ ହୋଇଆସୁଥିଲା ।

—:*:—

# ଶ୍ରୀଜଗନ୍ନାଥ ଓ ଗୁରୁ ଅନଙ୍ଗବଜ୍ର

ଠୋ-ଠୋ ହୋଇ ହସିଉଠିଲେ ଅନଙ୍ଗବଜ୍ର । ହସି ହସି କହିଲେ, "ଏତେ ଯଦି ତାଙ୍କର ଶକ୍ତି ଥିଲା, ତେବେ ସାଧବର ହଜିଲା ବୋଇତ ଫେରାଇ ଆଣିଲେ ନାହିଁ କାହିଁକି ? କାହିଁ, ଏ ପର୍ଯ୍ୟନ୍ତ ତ ରାଜାଙ୍କ ଶିଶୁକନ୍ୟାର ସନ୍ଧାନ ମିଳିଲା ନାହିଁ ! ଆଉ ସେହିଭଳି ମଧ୍ୟ ରାଜ୍ୟରେ ସୁବୃଷ୍ଟି କାହିଁ ? ଗତବର୍ଷର ହଇଜାର ଯେଉଁ ପ୍ରକୋପ ତା'ର ଭୟ ଏବେ ବି ଲୋକଙ୍କୁ ଶଙ୍କାକୁଳ କରିପକାଉଛି । ଏପର୍ଯ୍ୟନ୍ତ ଯାଜ୍ଞିକମାନଙ୍କ ଦ୍ୱାରା ରାଜ୍ୟସାରା ଯଜ୍ଞ ହୋଇ ଅଜସ୍ର ଘିଅ ପୋଡ଼ାଗଲାଣି । ନିଗ୍ରନ୍ଥମାନେ ବହୁ ପ୍ରାର୍ଥନା ଉପାସନା କଲେଣି; କିନ୍ତୁ ଫଳ କାହିଁ ? ଯୁଗର ଯେତେବେଳେ ପରିବର୍ତ୍ତନ ଆସିଛି, ସେତେବେଳେ ସେହି ପରିବର୍ତ୍ତନ ପନ୍ଥାରେ ନ ଗଲେ କେବେ ସୁଫଳ ମିଳିବ ନାହିଁ ।"

ସୁବ୍ରତ ସୌଦାଗର ଯୋଡ଼ହସ୍ତରେ କହିଲେ, "ସେଥିପାଇଁ ମୁଁ ଆପଣଙ୍କର ଶରଣାପନ୍ନ ହୋଇଛି । ମୋର ପୂର୍ଣ୍ଣ ବିଶ୍ୱାସ, ଆପଣ ମୋର ବୋଇତକୁ ନିଶ୍ଚୟ ଫେରାଇ ଆଣିପାରିବେ । ସେଥିପାଇଁ ଯାହା ଆବଶ୍ୟକ ତାହା ପ୍ରକାଶ କଲେ ମୁଁ ଯୋଗାଇଦେବି ।"

ଆଖିରୁ ଲୁହ ପୋଛି ସୁମନ୍ତ ଶ୍ରେଷ୍ଠୀ କହିଲେ, "ଗତ ଦୁଇବର୍ଷ ହେଲା ମୋର ଏକମାତ୍ର ପୁତ୍ର ବିଦେଶ ଭ୍ରମଣରେ ଯାଇଥିଲା, ମାତ୍ର ଏ ପର୍ଯ୍ୟନ୍ତ ଫେରିଲା ନାହିଁ । ଯେତେ ବ୍ୟବସ୍ଥା କଲେ ମଧ୍ୟ କୌଣସି ସନ୍ଧାନ ମିଳି-ପାରୁନାହିଁ । ପୁଅ ମୋର ବଞ୍ଚିଛି କି ମରିଛି ତାହା ମଧ୍ୟ ଜାଣିପାରୁନାହିଁ । ମୁଁ ଶୁଣିଲି, ଆପଣ ଏକମାତ୍ର ବ୍ୟକ୍ତି—ଯେ କି ସତକଥା କହିପାରିବେ ଓ ପୁଅକୁ ଫେରାଇ ଆଣିପାରିବେ । ସେଥିପାଇଁ ମୁଁ ଆପଣଙ୍କ ପାଖରେ ବିମୀତଭାବେ ଶରଣ ପଶିଛି । ମୋ'ପ୍ରତି ଆପଣ ଟିକିଏ ଦୟା କରନ୍ତୁ ।"

ଗମ୍ଭୀର ହୋଇ ଅନଙ୍ଗବଜ୍ର କହିଲେ—"ଶ୍ରେଷ୍ଠୀ ! ତୁମେ କାୟ-ମନୋବାକ୍ୟରେ ବଜ୍ର ଉପରେ ଭରସା ରଖିଥାଅ । ମଣିଷର ଶାନ୍ତିପାଇଁ,

ମୁକ୍ତିପାଇଁ ଯଦି କିଛି ପନ୍ଥା ଥାଏ ତାହାହେଲେ ତାହା ହେଉଛି ବଜ୍ର । ସେହି ବଜ୍ର ହେଉଛି ଶୂନ୍ୟ । ଏହି ଶୂନ୍ୟରୁ ସବୁକିଛି ସୃଷ୍ଟି ହୋଇଛି; ଅବଶେଷରେ ସବୁ ମଧ୍ଯ ସେହି ଶୂନ୍ୟରେ ବିଲୟ ହେବ । ଶୂନ୍ୟ ମାର୍ଗ ହିଁ ବଜ୍ରଯାନ । ମୁଁ ସବୁକିଛିର ସନ୍ଧାନ ସେହି ଶୂନ୍ୟରୁ ପାଉଛି । ମୁଁ ନିର୍ଭର-ଭାବେ ପ୍ରତିଶ୍ରୁତି ଦେଉଛି, ସେହି ଶୂନ୍ୟରୁ ତୁମ ପୁତ୍ରର ସନ୍ଧାନ ଦେଇପାରିବି । ଏପରିକି ସମ୍ଭବ ହେଲେ ଶାରଦୀୟ ମହାପୂଜା ସମୟରେ ବା ତା' ପୂର୍ବରୁ ତୁମ ପୁତ୍ର ତୁମ ପାଖକୁ ଫେରିଆସି ପାରିବ । ଏ ବିଶ୍ୱରେ ଶରତ୍ ରୋଗ, ଶୋକ ମୂର୍ତ୍ତି ଧରି ପ୍ରବେଶକରେ । ତାହାର ପ୍ରଭାବରେ ସାରା ଦେଶରେ ହଇଜା ମହାମାରୀ ବ୍ୟାପିଥାଏ । ରୁଦ୍ର ଓ ତାଙ୍କ ଭଉଣୀ ଅମ୍ବିକା ଶରତ୍‌ର ରୂପ ଧାରଣ କରି ତାଣ୍ଡବ ନୃତ୍ୟ କରନ୍ତି । ମୁଁ ଅମ୍ବିକାଙ୍କୁ ରୁଦ୍ରଙ୍କଠାରୁ ପୃଥକ୍ କରିଦେବି । ଅମ୍ବିକା ବଜ୍ର ଧାରଣକରି ରୋଗ-ଶୋକର ମୂର୍ତ୍ତିମନ୍ତ ପ୍ରତୀକକୁ ନିଜର ଅଷ୍ଟଭୁଜରେ ଅଷ୍ଟଦିଗ ବ୍ୟାପୀ ଆକ୍ରମଣ କରି ଧ୍ୱଂସ କରିବେ । ଫଳରେ ସବୁ ଦୁଃଖର ବିନାଶ ହେବ । ସମସ୍ତେ ଶାନ୍ତିରେ ରହିବେ ।"

ରାଜଦୂତ ସନ୍ତୋଷକୁମାର ଯୋଡ଼ହସ୍ତରେ ଦଣ୍ଡାୟମାନ ହୋଇ କହିଲେ, "ଗୁରୁଦେବ ! ମହାରାଜା ଓ ମହାରାଣୀ ବିନୟ ଭାବରେ ଆପଣଙ୍କୁ ପ୍ରଣାମ କରି କହିଛନ୍ତି, ଆପଣଙ୍କ ମାର୍ଗରେ ସେ ବିଶ୍ୱାସ କରନ୍ତି । ତାଙ୍କର କନ୍ୟା ଯଦି ଆଶ୍ୱିନ ପୂର୍ବରୁ ମିଳିଯାଏ, ତେବେ ବଜ୍ରଯାନର ପ୍ରଚାରପାଇଁ ସେ ସବୁକିଛିର ବ୍ୟବସ୍ଥା କରିବେ । ଆପଣଙ୍କ କୃପାରୁ ଦେଶରେ ଯଦି ସୁବୃଷ୍ଟି ହୁଏ, ଆଉ ଦେଶ ଶସ୍ୟଶାଳିନୀ ହୁଏ, ତେବେ ଦେଶର ଆବାଳ-ବୃଦ୍ଧ-ବନିତା ବଜ୍ର ଉପରେ ଭରସା କରିବେ ।"

ଅନଙ୍ଗବଜ୍ର ମୁହଁରେ ହସ ଫୁଟାଇ କହିଲେ—"ମହାରାଜାଙ୍କର କନ୍ୟା ଅବଶ୍ୟ ମିଳିବ । ଦେଶରେ ସୁବୃଷ୍ଟି ହେବ ଓ ଦେଶ ଶସ୍ୟଶାଳିନୀ ହେବ । କିନ୍ତୁ ତୁମ କଥାରୁ ମନେହେଉଛି, ବଜ୍ରର ଯେ ମହିମାମୟ ଶକ୍ତି ଅଛି ଏ କଥା ପ୍ରମାଣିତ ନ ହେବା ପର୍ଯ୍ୟନ୍ତ କାହାର ବିଶ୍ୱାସ ତା' ଉପରେ ନାହିଁ । ବିନା ପ୍ରମାଣରେ ମହାରାଜା ବୋଧେ ଅନଙ୍ଗବଜ୍ରକୁ ବିଶ୍ୱାସ କରିପାରୁନାହାଁନ୍ତି । ହେଉ..., ମହାରାଜାଙ୍କୁ ଜଣାଇଦେବ ବଜ୍ରର କିଭଳି ଶକ୍ତି ଅଛି ତାହା ଯଥା ସମୟରେ ମହାରାଜ ଓ ରାଜ୍ୟର ଲୋକେ ଜାଣିପାରିବେ । ପରମବଜ୍ରୀ

ଦୁଇ ହାତକୁ ଦୁଇ ବାହୁ ବିସ୍ତାର କରି ଆବିର୍ଭାବ ହୋଇସାରିଛନ୍ତି । ସେହି ପରମବଜ୍ରୀଙ୍କର ଶକ୍ତି ବଜ୍ରେଶ୍ୱରୀ ବଜ୍ରଯାନର ପରମାୟୁଧ ବଜ୍ର ଓ ଘଣ୍ଟି ଧାରଣ କରି ଉପାସିତା । ଶକ୍ତି ନ ଥିଲେ ପୁରୁଷ ଶୂନ୍ୟ । ପ୍ରତ୍ୟେକଙ୍କ ମଧ୍ୟରେ ସେହି ଶକ୍ତି ରହିଥିବାରୁ ସେମାନେ କିଛି କହିବାକୁ ସକ୍ଷମ ହେଉଛନ୍ତି; ତେଣୁ ଶକ୍ତି ମୂଳ । ମହାରାଜାଙ୍କୁ ସବୁକଥା କହିଦେବ ତୁମେ ରାଜଦୂତ ।"

ହଠାତ୍ ଗମ୍ଭୀର ହୋଇଗଲେ ଅନଙ୍ଗବଜ୍ର । ତା'ପରେ ଧୀରେ ଧୀରେ ଆଖିର ଡୋଳା ଉପରକୁ ଆଖିପତା ଅଳ୍ପ ନଇଁଆସିଲା । ସତେଯେପରି ସେ ଧ୍ୟାନମଗ୍ନ ଅବସ୍ଥାକୁ ଚାଲିଯାଇଛନ୍ତି । ଏତିକିବେଳେ ରାଜଦୂତ ବିଦାୟ ନେବାପାଇଁ ପ୍ରଣାମ ଜଣାଇଲେ । ଆଖିର ଡୋଳା ଉପରୁ ପରଦା ପୁଣି ଉଠିଗଲା ଉପରକୁ । ସେ ବଡ଼ପାଟିରେ ରାଜଦୂତଙ୍କୁ ସମ୍ବୋଧନ କରି କହିଲେ—"ହଁ, ତୁମେ ମହାରାଜଙ୍କୁ କହିଦେବ, ବଜ୍ରେଶ୍ୱରୀ ତାଙ୍କ ଶକ୍ତିର ପରୀକ୍ଷା ଦେବେ । ମାତ୍ର ତା' ପୂର୍ବରୁ ଦେଶର ଅବସ୍ଥା ସୁସ୍ଥ ହୋଇଯିବ ।"

ରାଜଦୂତ ଆଉ କିଛି ନ କହି ପ୍ରଣାମ ଜଣାଇ ବାହୁଡ଼ିଗଲେ । ସେ ପର୍ଯ୍ୟନ୍ତ ସୁବ୍ରତ ସୌଦାଗର ପୂର୍ବଭଳି ହାତ ଦୁଇଟି ଯୋଡ଼ି ବସି-ରହିଥିଲେ । ସେ ମିନତିଭରା କଣ୍ଠରେ କହିଲେ, "ମୁଁ ଚାହେଁ ନାହିଁ ଆପଣଙ୍କ ଶକ୍ତିର ପରୀକ୍ଷା । ମୋର କେବଳ ଗୋଟିଏ ମାଗୁଣି ଆପଣଙ୍କ ପାଖରେ, ମୋର ହଜିଲା ବୋଇତ ଫେରିଆସୁ ।"

—"ହଁ..., ତୁମେ ସୌଦାଗର ଯାଇପାର ! ଆଉ ଶ୍ରେଷ୍ଠୀ ! ତୁମେ ମଧ୍ୟ ଶୁଣିଯାଅ ! ଅକ୍ଷତ ଅବସ୍ଥାରେ ପୁଅ ତୁମର ଫେରିବ, ଏ ପ୍ରତିଶ୍ରୁତି ତୁମକୁ ଅନଙ୍ଗବଜ୍ର ଦେଉଛି । କିନ୍ତୁ ଗୋଟିଏ କଥା ମନେରଖିବ, ବଜ୍ରେଶ୍ୱରୀ ମୂର୍ତ୍ତି ତୁମେ ଶିଳ୍ପୀ ହସ୍ତରେ ପ୍ରସ୍ତୁତ କରାଅ । ବଜ୍ରେଶ୍ୱରୀ ଆଶ୍ୱିନ ମହାପୂଜାରେ ଆରାଧିତା ହେବେ ।"

ସେତେବେଳକୁ ସୂର୍ଯ୍ୟ ପଶ୍ଚିମ ଆକାଶରେ ବହୁ ତଳକୁ ଓହ୍ଲାଇ-ଯାଇଥା'ନ୍ତି । ସନ୍ଧ୍ୟା ପୂର୍ବରୁ ସମସ୍ତଙ୍କୁ ବିଦାୟ ଦେଇ ରାତ୍ରି ପୂଜାପାଇଁ ଅନଙ୍ଗବଜ୍ରଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ । ସେଥିପାଇଁ ସେ ଜଣ ଜଣ କରି ସମସ୍ତଙ୍କୁ ବିଦାୟ ଦେଇ ବିହାର ଭିତରକୁ ବାହୁଡ଼ିଗଲେ ।

ଅନଙ୍ଗବଜ୍ର ତନ୍ତ୍ରର ଜଣେ ସିଦ୍ଧ ସାଧକ । ବୌଦ୍ଧଧର୍ମରେ ଆଲୋଡ଼ନ ଆଣି ବଜ୍ରଯାନୀମାନେ ତନ୍ତ୍ରର ଯେଉଁ ବାତ୍ୟା ବୁହାଇଦେଲେ, ସେଥିରେ ବହୁ ସାଧକ ନିଜକୁ ତା' ମଧ୍ୟରେ ସାମିଲ୍‌କରି ଲୋକମାନଙ୍କୁ ଅଦ୍ଭୁତ କ୍ରିୟାମାନ ଦର୍ଶାଇ ଚମତ୍କୃତ କଲେ । ବହୁପରେ ଅନଙ୍ଗବଜ୍ର ବଜ୍ରଯାନ ସାଧନାରେ ନିଜକୁ ନିୟୋଜିତ କରି ଧୀରେ ଧୀରେ ନିମ୍ନସ୍ତରରୁ ଉଚ୍ଚସ୍ତରକୁ ଆରୂଢ଼ ହୋଇ ଗ୍ଲଲଥା'ନ୍ତି । ପ୍ରଥମେ ଶରୀର ଶୁଦ୍ଧକରି ଗୋଟିଏ ପବିତ୍ର ଓ ନିର୍ଜ୍ଜନ ସ୍ଥାନରେ ବସି ସେ କରନ୍ତି ସାଧନା । ଯେଉଁ ଦେବତାଙ୍କ ଦର୍ଶନ କରିବାକୁ ସେ ଇଚ୍ଛା କରୁଥା'ନ୍ତି ସେହି ଦେବତାଙ୍କର ମନ୍ତ୍ର ଜପ କରନ୍ତି ହୃଦୟ ମଧ୍ୟରେ । ପ୍ରଥମେ ପ୍ରଥମେ ସେ ଅବ୍ୟବସ୍ଥିତ ଚିତ୍ତ ହେଉଥିଲେ, ମାତ୍ର ଅଭ୍ୟାସ ଦ୍ୱାରା ସେ ଏଭଳି ହୋଇଗଲେ ଯଦ୍ଦ୍ୱାରା ସାଧନା ସମୟରେ ଦେବତାଙ୍କ ବ୍ୟତୀତ ଅନ୍ୟ କୌଣସି ବିଷୟରେ ମନ ତାଙ୍କର ଧାବିତ ହେଲନାହିଁ । ତା'ପରେ ଦୃଢ଼ଚିତ୍ତରେ ଏକାନ୍ତ ମନରେ ଧ୍ୟାନ ଓ ଜପ କରିବା ଦ୍ୱାରା ସେ କ୍ରମଶଃ ବାହ୍ୟଜ୍ଞାନ ଶୂନ୍ୟ ହୋଇଯା'ନ୍ତି । ବାହାର ଜଗତଠାରୁ ଇନ୍ଦ୍ରିୟାଦିର ସମ୍ପର୍କ ଯେତେବେଳେ ସମ୍ପୂର୍ଣ୍ଣ ଛିନ୍ନ ହୋଇଯାଏ, ସେତେବେଳେ ସେ ହୋଇଯା'ନ୍ତି ସମାଧିସ୍ଥ । ସମାଧି ସମ୍ପୂର୍ଣ୍ଣ ସୁଷୁପ୍ତି ଅବସ୍ଥା ଆଣିଥାଏ । ସେ ହୃଦୟର ଷଟ୍‌ଚକ୍ର ଭେଦକରି ଶୂନ୍ୟ ମହାଶୂନ୍ୟରେ ଘୂରିବୁଲନ୍ତି ।

ସାଧନାର ଊର୍ଦ୍ଧ୍ୱ ସ୍ତରରେ ଆରୂଢ଼ ହୋଇ ଦେବତାଙ୍କର ସାନ୍ନିଧ୍ୟ ଲାଭକରନ୍ତି । ଯେଉଁଭଳି ଗଛରେ ଫୁଟିଥିବା ଫୁଲ ଦେବତାଙ୍କୁ ଦେଲା ପରେ ସେ ଆଉ ସାଧାରଣ ଫୁଲ ହୋଇ ରହେନାହିଁ, ସେହିଭଳି ଅନଙ୍ଗବଜ୍ର ଦେବତାଙ୍କ ସଂସ୍ପର୍ଶରେ ଆସି ସେ ଦେବତା ହେଇଯା'ନ୍ତି । ତେଣୁ ତାଙ୍କ ଆଶୀର୍ବାଦରେ ବିଶ୍ୱର ମଙ୍ଗଳ ହୁଏ ।

ଭାଦ୍ରବ ମାସ । ସାରା ଶ୍ରାବଣ ମାସ ଗଲା ବର୍ଷା ନାହିଁ । ଆଷାଢ଼ରେ ଯାହା ଅଳ୍ପକେତୁ ବର୍ଷା ହୋଇଥିଲା । ତା'ପରେ ଆଉ ନାହିଁ । ବେଳେ ବେଳେ ଆକାଶରେ ମେଘ ଆସେ, ମାତ୍ର ବର୍ଷା ହୁଏନାହିଁ । ଖେତରେ ଫସଲର ପ୍ରଶ୍ନ ଯେପରି ନାହିଁ । କେଉଁଠି କିପରି ଲୋକେ ପାଣି ମନ୍ଦାଏ ମନ୍ଦାଏ ବୋହି ଧାନ ଗଛକୁ ବଢ଼ାନ୍ତି । ମାତ୍ର ତାହା ବା କେତେ ଜାଗାରେ ସମ୍ଭବ ? ତେଣୁ କାଁ-ଭାଁ କ୍ଷେତରେ ଧାନ ଗଛ ଦେଖାଯାଏ ।

ରାତ୍ରର ଶେଷ ପ୍ରହରକୁ ଅନଙ୍ଗବଜ୍ର ଧ୍ୟାନରୁ ଉଠିଲେ । ସେତେ-ବେଳକୁ ସମଗ୍ର ଆକାଶକୁ ମେଘ ଘୋଡ଼ାଇ ଦେଇଥାଏ । ଅନଙ୍ଗବଜ୍ର ଧ୍ୟାନରୁ ଉଠି ଆକାଶକୁ ଲକ୍ଷ୍ୟ କରି ଟିକଏ ହସିଲେ । ତା'ପରେ ମନକୁମନ କହିଲେ, ଆଉ ଡେରି କରୁଛ କାହିଁକି ? ରାତ୍ର ପାହିଲାବେଳକୁ ତୁମେ ମୂଷଳଧାରାରେ ବୃଷ୍ଟି ନ କଲେ ବଜ୍ରର ଅବମାନନା ହେବ । ସେଥିପାଇଁ ତୁମେ ତୁମ କାର୍ଯ୍ୟରେ ଲାଗିଯାଅ ।

ପାଟିରୁ କଥା ସରିଛି କି ନାହିଁ ବୃଷ୍ଟିପାତ ଆରମ୍ଭ ହୋଇଗଲା । ରାତ୍ର ପାହିଲାବେଳକୁ ଏତେ ବୃଷ୍ଟି ହୋଇଥିଲା, ଯଦ୍ଦ୍ୱାରା ଗ୍ରାମ ନଗରର ଜୀବନଯାତ୍ରା ଅଚଳ ହୋଇପଡ଼ିଲା; ପୂରିଗଲା ନଦୀ-ନାଳ । ଶୁଖି ଫାଟି-ଯାଇଥିବା ଶସ୍ୟକ୍ଷେତ୍ରଗୁଡ଼ିକ ବର୍ଷାପାଣିରେ ଭରିଗଲା । ଯେଉଁ ଜମିରେ ଧାନଗଛଗୁଡ଼ିକ ମରି ମରି ଆସୁଥିଲା, ବର୍ଷା ହେବାଦ୍ୱାରା ସେହି ଗଛଗୁଡ଼ିକ ସତେଜ ହୋଇଆସିଲା । ଫଳରେ ଦୁଃଭିକ୍ଷର ଯେଉଁ ଭୟ ସମସ୍ତଙ୍କୁ ଆଚ୍ଛନ୍ନ କରିରଖିଥିଲା, ତାହା ଦୂରେଇଗଲା ମେଘବର୍ଷା ହେବାଦ୍ୱାରା ।

ସକାଳଠାରୁ ଅବିଶ୍ରାନ୍ତଭାବେ ସାରା ଦିନଟି ବର୍ଷା ଲାଗିରହିଲା । ତା' ଆରଦିନ ସକାଳ ହେଲାବେଳକୁ ନୀଳ-ଆକାଶ ଧୀରେ ଧୀରେ ନିର୍ମଳ ହୋଇଆସିଲା । ବର୍ଷା ଛାଡ଼ିବାମାତ୍ରେ ଅନଙ୍ଗବଜ୍ର ରହିଥିବା ବିହାରରେ ଲୋକ ଜମିବାକୁ ଲାଗିଲେ । ଅନଙ୍ଗବଜ୍ର କରୁଥିବା ପରମବଜ୍ରୀ ଓ ବଜ୍ରେଶ୍ୱରୀଙ୍କ ପୂଜାରେ ଲୋକମାନେ ଯୋଗଦେଲେ । ଯାହାଙ୍କ ଯୋଗୁଁ ବର୍ଷା ହୋଇ ମରୁଡ଼ିର କରାଳଛାୟା ବିଦୂରିତ ହୋଇଛି, ତାଙ୍କ ପ୍ରଦର୍ଶିତ ମାର୍ଗ ଯାହା ହେଉ ନା କାହିଁକି ଲୋକମାନେ ସେହି ମାର୍ଗରେ ଆଗେଇଯିବେ ।

ବିହାର ମଧ୍ୟରେ ବିପୁଳ ଲୋକ ସମାଗମ ଦେଖି ମଧ୍ୟ ଅନଙ୍ଗବଜ୍ରଙ୍କ ମୁହଁରେ ଉତ୍ଫୁଲ୍ଲତାର କୌଣସି ଚିହ୍ନ ନ ଥିଲା । ସବୁଦିନ ପରି ସେ ଦେବତାଙ୍କ ଉପାସନା ସାରି ନୈବେଦ୍ୟ ସାମଗ୍ରୀ ଲୋକମାନଙ୍କ ମଧ୍ୟରେ ବାଣ୍ଟିଦେଲେ । ଲୋକମାନେ ଅତି ନମ୍ରତାର ସହିତ ଯେତେବେଳେ ଗୁରୁ ଅନଙ୍ଗବଜ୍ରଙ୍କୁ ପ୍ରଣାମ ଜଣାଉଥିଲେ, ସେତେବେଳେ ସେମାନଙ୍କୁ ଆଶୀର୍ବାଦ କରିବାରେ ସେ ହେଳା କରୁ ନ ଥିଲେ । ସେ ଜାଣନ୍ତି, ଲୋକମାନେ ବଶ ହୁଅନ୍ତି କେବଳ ବିଭୂତିଦ୍ୱାରା । ସେ କହିଥିଲେ, ଖୁବ୍ ଶୀଘ୍ର ବର୍ଷା ହେବ;

ତେଣୁ ବର୍ଷା ହେବାରୁ ଲୋକମାନେ ଆସିଛନ୍ତି । ତା’ ନ ହେଲେ ତାଙ୍କ ଶିଷ୍ୟମାନେ ମଧ୍ୟ ତାଙ୍କଠାରୁ ଦୂରେଇ ଯାଇଥା’ନ୍ତେ ।

ଶୂନ୍ୟର ପୂଜକ ସେ—ସେହି ଶୂନ୍ୟ ନିଆଁରେ ପୋଡ଼ିଯାଏ ନାହିଁ, ପାଣିରେ ବୁଡ଼ିଯାଏ ନାହିଁ କିମ୍ବା ଅସ୍ତ୍ରରେ ଖଣ୍ଡବିଖଣ୍ଡ ହୁଏନାହିଁ । ସେ ଅରୂପ—ଅଚିନ୍ତ୍ୟ--ଅସୀମ । ତାହାର ଆଦି ନାହିଁ କିମ୍ବା ଅନ୍ତ ବି ନାହିଁ । ତାହାର ଦେହରେ ମାଳ ମାଳ ହୋଇ ଗ୍ରହ-ନକ୍ଷତ୍ର ଘୂରିବୁଲୁଛନ୍ତି । ଯୋଗୀମାନେ ତା’ ବିଷୟରେ ସମ୍ୟକ୍ ଜ୍ଞାନ ଆହରଣ କରିବାକୁ ଧ୍ୟାନମଗ୍ନ । ସେହି ଧ୍ୟାନଦ୍ୱାରା ସେମାନେ ଜାଣିପାରନ୍ତି ସେହି ବିରାଟ ଶୂନ୍ୟର ସାମାନ୍ୟ ଅଂଶ ବିଷୟ ।

ଶେଷ ମୂହୂର୍ତ୍ତ ପର୍ଯ୍ୟନ୍ତ ମଧ୍ୟ ତାଙ୍କୁ ପରୀକ୍ଷା ଦେଇ ଯିବାକୁ ପଡ଼ିବ । କେବେ ସେ ଶାଣିତ ଖଡ଼୍‌ଗର ଧାର ଉପରେ ଚାଲିବେ ତ, କେବେ ଜ୍ୱଳନ୍ତ ଅଗ୍ନିଶିଖା ଉପରେ ହସି ହସି ଚାଲିବେ । ଯେତିକି ସେ ଲୋକମାନଙ୍କୁ ଚମତ୍କୃତ କରିବେ, ସେତିକି ଲୋକେ ତାଙ୍କର ଆଡ଼କୁ ଧାଇଁଆସିବେ ।

କିନ୍ତୁ ଲୋକଙ୍କୁ ସେ ଚମତ୍କୃତ କରିବେ କାହିଁକି ? ସେଥିରେ ଲାଭ କାହାର ବା କେତେ ?

କ’ଣ ହେଲା ...... ଲାଭ ନାହିଁ ? ଏହାଦ୍ୱାରା ଲୋକମାନଙ୍କର କୌଣସି ଲାଭ ନାହିଁ ? ନିର୍ଦ୍ଦିଷ୍ଟ ସ୍ଥାନକୁ ଯିବାପାଇଁ ବାଟଭୋଇ ବାଟରେ ଚାଲିଛି; କିନ୍ତୁ ତା’ର ଲକ୍ଷ୍ୟସ୍ଥଳ କେଉଁଠି, ତାହା ତାକୁ ଜଣାଇଦେବା କ’ଣ ଉଚିତ ନୁହେଁ ? ପୁଣି ସେହି ଲକ୍ଷ୍ୟସ୍ଥଳକୁ କେଉଁ ବାଟ ଦେଇ ଯିବାକୁ ପଡ଼ିବ, ତାହା ଜଣାଇଦେବା କ’ଣ କର୍ତ୍ତବ୍ୟ ନୁହେଁ ? ସେହି କର୍ତ୍ତବ୍ୟ ସମ୍ପାଦନ କରିବାରେ ସେ ଯଦି ହେଳା କରନ୍ତି, ତାଙ୍କ ପକ୍ଷରେ ତାହା ଉଚିତ ହେବ କି ? ସେଥିପାଇଁ ତ ନିଜକୁ ତିଳ ତିଳ କରି ସାଧନା ଦ୍ୱାରା ଦଗ୍ଧ କରି ଆଗେଇ ଚାଲିଛନ୍ତି । କେବଳ ଲୋକମାନଙ୍କୁ ସତ୍‌ପଥରେ ଚାଳିତ କରିବାକୁ, ଏ ଦୁଃଖ ଶୋକ ଜଗତରୁ ଉଦ୍ଧାର କରିବାକୁ । ତା’ ନ ହେଲେ ଏ ଜଗତକୁ ଆସିବା ତାଙ୍କର ଆବଶ୍ୟକ କ’ଣ ଥିଲା ?

ଜନ୍ମହେବା ପରଠାରୁ ପଦ୍ଧୁଣ୍ଟ ପଦ୍ଧୁଣ୍ଟ କରି ମୃତ୍ୟୁ ଆଗେଇ ଆସୁଛି । ସେ କଥା କ'ଣ ମଣିଷ ବୁଝୁଛି ? କ୍ଷଣିକ ଆନନ୍ଦରେ ଉଦ୍‌ବେଳିତ ହୋଇ ସେ ସାରାଜୀବନ ବୃଥାରେ ବିତେଇଦେଇଛି । ବାଲ୍ୟ, ଯୌବନ ଗତ ହୋଇଗଲା ପରେ ବାର୍ଦ୍ଧକ୍ୟରେ ଯେତେବେଳେ ଉପସ୍ଥିତ ହୁଏ, ସେତେବେଳେ ମଧ୍ୟ ଥରକପାଇଁ ଶାଶ୍ୱତ ପଥକୁ ଅନାଏ ନାହିଁ । ଲୋଭ, ମୋହ, ମାୟାରେ ଆଚ୍ଛନ୍ନ ହୋଇ ସେ ସବୁକିଛି ଭୁଲିଯାଏ ।

—"ବାହାରର ବାହାରେ ଉତ୍କଳ ଦେଶର ମହାରାଜା ଅପେକ୍ଷା କରିଛନ୍ତି ଗୁରୁ !"

ହଠାତ୍ ଚିନ୍ତାର ଖିଅ ଛିଡ଼ିଗଲା ତାଙ୍କର । ସେ ଅନାଇଦେଲେ, ଆଗରେ ତାଙ୍କର ଶାନ୍ତିଭଦ୍ର ଦଣ୍ଡାୟମାନ ଯୋଡ଼ହସ୍ତରେ । ସେ କହିଲେ, "ଉତ୍କଳ ଦେଶର ମହାରାଜା······ ? ତାଙ୍କୁ ଆସିବାକୁ କୁହ ।"

ଶାନ୍ତିଭଦ୍ର ନଇଁପଡ଼ି ଧୀରେ ପଛେଇଗଲେ ଅନଙ୍ଗବଜ୍ରଙ୍କ ଆଗରୁ । ଅନଙ୍ଗବଜ୍ରଙ୍କ ମସ୍ତକ ଟିକିଏ କୁଞ୍ଚିତ ହୋଇଗଲା । ଉତ୍କଳ ଦେଶର ମହାରାଜା କାହିଁକି··· ? କ'ଣ ବର୍ଷା ହେଲା ପରେ ତାଙ୍କୁ ବଧେଇ ଜଣାଇବାକୁ ଆସିଛନ୍ତି ନା ତାଙ୍କ ଶିଶୁକନ୍ୟାର ସନ୍ଧାନ ପାଇଁ ଆସିଛନ୍ତି ?

ତାଙ୍କ ଭିତରୁ କିଏ ଯେପରି କହିଉଠିଲା, 'ଉଭୟପାଇଁ ସେ ଆସିଛନ୍ତି । ତାଙ୍କର କିଛି ପରିମାଣରେ ହୃଦ୍‌ବୋଧ ହୋଇଛି, ଅନଙ୍ଗବଜ୍ର ତାଙ୍କ ସାଧନା ବଳରେ ରାଜ୍ୟର ମଙ୍ଗଳ ବିଧାନ କରିପାରିବେ ।

ଉତ୍କଳ ଦେଶର ମହାରାଜା ପ୍ରଣାମ ଜଣାଇଲେ ଗୁରୁ ଅନଙ୍ଗବଜ୍ରଙ୍କୁ । ଡାହାଣ ହାତଟିକୁ ଟେକି ଅନଙ୍ଗବଜ୍ର ଆଶୀର୍ବାଦ କରିବା ସଙ୍ଗେ ସଙ୍ଗେ ପଚାରିଲେ, "ମହାରାଜ କୁଶଳରେ ଅଛନ୍ତି ତ ?"

—"ଆଜ୍ଞା ! ମୋର କୁଶଳ ଆଉ କ'ଣ ? ଆପଣ ଜାଣନ୍ତି ଗତବର୍ଷ ହଇଜାରେ ବହୁଲୋକ ମରିଗଲେ । ଏ ବର୍ଷ ସେହି ସମୟ ଆସିଯାଉଛି । କିଏ ଜାଣେ, ଏ ବର୍ଷ ହଇଜାରେ କେତେ ଲୋକ ନ ମରିବେ ? ଝିଅଟି ମୋର ହଜିଗଲା ଦିନଠାରୁ ରାଜ୍ୟର ଲୋକମାନେ

ମୋ'ପ୍ରତି ଆସ୍ଥା ହରାଇଦେଲେଣି । ପ୍ରକୃତରେ ଯଦି ମୁଁ ମୋ ଝିଅଟିକୁ ନ ପାଇପାରିଲି, ତେବେ ରାଜ୍ୟ ଲୋକଙ୍କର ବା କ'ଣ କରିପାରିବ ? ପୁଣି ଆପଣ ଶୁଣିଥିବେ ସାଧବର ବୋଇତ ବାଣିଜ୍ୟ କରିବାକୁ ଯାଇ ଫେରିଲା ନାହିଁ । ତେଣୁ ସାଧବମାନେ ବୋଇତ ଧରି ଦେଶ-ବିଦେଶକୁ ଯିବାକୁ କୁଣ୍ଠିତ ହେଉଛନ୍ତି । ସାଧବମାନେ ସମୁଦ୍ରରେ ବୋଇତ ନ ମେଲିଲେ ଦେଶ ଦରିଦ୍ର ହୋଇଯିବ । ଏହିଭଳି ବହୁ ଘଟଣାପାଇଁ ମୁଁ ସବୁବେଳେ ଚିନ୍ତିତ ଆଉ ବିବ୍ରତ । ତେଣୁ ଆଜି ମୁଁ ଆପଣଙ୍କର ଶରଣାପନ୍ନ ହେବାକୁ ଧାଇଁଆସିଛି । ମୋତେ ଆପଣ ଅଭୟ ଦିଅନ୍ତୁ—ଏତିକି ମୋର ପ୍ରାର୍ଥନା ।"

—"ମହାରାଜ ! ଅନଙ୍ଗବଜ୍ର କେହି ନୁହେଁ; ସେ ଶୂନ୍ୟର ପୂଜକ । ଆପଣ ସେହି ଶୂନ୍ୟ ଉପରେ ବିଶ୍ୱାସ ରଖିପାରନ୍ତି । ମୁଁ ଆପଣଙ୍କ ଲୋକଙ୍କୁ କହିଛି, ରୁଦ୍ର ଓ ତାଙ୍କ ଭଗ୍ନୀ ଅମ୍ବିକା ଏକତ୍ର ହୋଇ ଶରତର ରୂପ ଧାରଣ କରି ସୃଷ୍ଟି ସଂହାର କରନ୍ତି । ମୁଁ ସେ ଦୁହିଁଙ୍କୁ ଶୂନ୍ୟର ଆଶୀର୍ବାଦରେ ଏକତ୍ର କରାଇ ଦେବିନାହିଁ । ତେଣୁ ରାଜ୍ୟରେ ଏ ବର୍ଷ ମହାମାରୀ ଦେଖା ଦେବ ନାହିଁ । ଆଉ ଆପଣଙ୍କ କନ୍ୟା କଥା—ଆପଣ ଶୂନ୍ୟ ଉପରେ ଭରସା ରଖନ୍ତୁ; ଅଚିରେ ସେ ଆପଣଙ୍କ କନ୍ୟାର ସନ୍ଧାନ ଦେଇପାରିବେ । ସାଧବର ବୋଇତ ଖୁବ୍ ଶୀଘ୍ର ବିପୁଳ ଧନରତ୍ନ ଧରି ଫେରୁଥିବାର ସଙ୍କେତ ମୁଁ ପାଇସାରିଛି । ତେଣୁ ଆପଣ ନିଶ୍ଚିନ୍ତରେ ନବରକୁ ଫେରି-ଯାଇପାରନ୍ତି ।"

—"ମୁଁ ଶୂନ୍ୟର ପୂଜା କରିବି । ତାହା କିପରି କ'ଣ ହୋଇପାରିବ ଆପଣ ବତାଇ ଦେବେ । ସାରା ରାଜ୍ୟରେ ମଧ୍ୟ ମୁଁ ଘୋଷଣା କରିବି, ଶୂନ୍ୟ ହିଁ ଏକମାତ୍ର ସମସ୍ତଙ୍କର ଦେବତା । ତେଣୁ ତା'ର ଉପାସନା ସମସ୍ତଙ୍କର କର୍ତ୍ତବ୍ୟ । ତା' ନ ହେଲେ ଦେଶରେ ଶାନ୍ତି ଆସିପାରିବ ନାହିଁ ।"

—"ମହାରାଜ ! ଶୂନ୍ୟ କହିଲେ କିଛି ନାହିଁ ବୋଲି ବୁଝିବେ ନାହିଁ । ଶୂନ୍ୟରେ ସବୁକିଛି ରହିଛି । ଆମର ଏହି ପୃଥିବୀ—ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ସମସ୍ତେ ଶୂନ୍ୟରେ ଘୂରିବୁଲୁଛନ୍ତି । ଆମେ ଯେତେବେଳେ ଏ ଦେହ ତ୍ୟାଗ କରିବୁ ସେତେବେଳେ ଶୂନ୍ୟରେ ବିଶ୍ରାମ ନେବୁ । ପୁଣି

ସେହି ଶୂନ୍ୟରୁ ଆସି ଏ ବିଶ୍ୱରେ ଜନ୍ମହୋଇ ଲୋକଙ୍କର ମଙ୍ଗଳ ବିଧାନ କରିବୁ । ଏହି ଶୂନ୍ୟରେ ପୂଜା କରନ୍ତୁ ମହାରାଜ ! ସେହି ଶୂନ୍ୟ ହେଉଛନ୍ତି ଏ ଜଗତର ନାଥ ଜଗନ୍ନାଥ । ସେ ସନ୍ତୁଷ୍ଟ ହେଲେ ଆପଣଙ୍କର ସବୁ ପ୍ରକାରର ମଙ୍ଗଳ ହେବ । ସେ ଅରୂପ ହେଲେ ମଧ୍ୟ ତାଙ୍କର ରୂପ ଅଛି । ସେ ରୂପ ଅରୂପର ।"

—"ମୋତେ ଆଶୀର୍ବାଦ କରନ୍ତୁ ! ମୁଁ ସେହି ଶୂନ୍ୟର ପୂଜା କରିବି ।"

ଅନଙ୍ଗବଜ୍ର ହାତ ଉଠାଇ ଆଶୀର୍ବାଦ କଲେ । ଉଡ୍ର ଦେଶର ମହାରାଜ ତାଙ୍କୁ ପ୍ରଣାମ ଜଣାଇ ବିଦାୟ ନେଲେ । ତାଙ୍କ ସହିତ ଆସିଥିବା ପରିଷଦମାନେ ମଧ୍ୟ ନମସ୍କାର କରି ଚାଲିଗଲେ ସେଠାରୁ ।

ସିଦ୍ଧସାଧକ ଅନଙ୍ଗବଜ୍ର ଜାଣିଛନ୍ତି, ସେ ଯାହା କହିଛନ୍ତି ତାହା ନିଶ୍ଚୟ ହେବ । ତେଣୁ ସେ ବ୍ୟସ୍ତ ନ ହୋଇ ତାଙ୍କ ସାଧନାରେ ସମୟ କଟାଇଲେ । ବର୍ଷା ହୋଇଯିବା ଫଳରେ ଲୋକମାନେ ବଜ୍ରଯାନ ପ୍ରତି ଶ୍ରଦ୍ଧାଶୀଳ ହୋଇପଡ଼ିବା ସ୍ୱାଭାବିକ । ଉଡ୍ର ଦେଶର ମହାରାଜ ଶାନ୍ତଭଦ୍ର ପୁଣି ସାଧନା ପାଇଁ ଅଧିକ ଉତ୍ସାହିତ କରିବାଦ୍ୱାରା ଲୋକମାନେ ବଜ୍ରଯାନ ଆଡ଼କୁ ଆଗେଇ ଯିବାକୁ ଲାଗିଲେ । ଅନ୍ୟ ପନ୍ଥୀମାନେ ଏହାଦ୍ୱାରା ବିବ୍ରତ ହୋଇପଡ଼ିଲେ ମଧ୍ୟ ଉପାୟ ନାହିଁ । ପ୍ରତ୍ୟେକ ଅପେକ୍ଷା କରି ରହିଲେ ଆଶ୍ୱିନ ମହାପୂଜାକୁ । ପ୍ରକୃତରେ କ'ଣ ସାଧବର ହଜିଥିବା ବୋଇତ ଶାରଦୀୟ ପୂଜା ପୂର୍ବରୁ ଫେରିଆସିବ ? ଉଦ୍ୟାନରୁ ଉଭେଇଯାଇଥିବା ରାଜାଙ୍କର ଶିଶୁକନ୍ୟା କ'ଣ ପୁଣି ଫେରିଆସିବ ରାଜବାଟୀକୁ ? ସେହିଭଳି ଶ୍ରେଷ୍ଠୀଙ୍କ ପୁଅ ଫେରିଆସିବ ଏହି କେଇଦିନ ଭିତରେ ?

ଅନୁଗାମୀମାନେ ଅନଙ୍ଗବଜ୍ରଙ୍କୁ କହନ୍ତି ଅନ୍ୟାନ୍ୟ ଧର୍ମପନ୍ଥୀଙ୍କ କଥା । ଶୁଣି ଶୁଣି ଗମ୍ଭୀର ହୋଇଯା'ନ୍ତି ଅନଙ୍ଗବଜ୍ର । ତା'ପରେ ଧୀରେ ନମ୍ରସ୍ୱରରେ କହନ୍ତି, ଯେଉଁମାନେ ବଜ୍ର ଉପରେ ଓ ଶୂନ୍ୟ ଉପରେ ବିଶ୍ୱାସ କରନ୍ତି ନାହିଁ, ସେମାନେ ସେହିଭଳି କହିବା ସ୍ୱାଭାବିକ । ସେମାନଙ୍କୁ ଆମର କହିବାକୁ କିଛି ନାହିଁ । କେବଳ ସେମାନେ ଅପେକ୍ଷା କରିବା

ଉଚିତ । ଶାରଦୀୟ ପୂଜା ମାତ୍ର ଆଉ କେତୋଟି ଦିନ ରହିଲା । ସେହି କେତୋଟି ଦିନ କ'ଣ ସେମାନେ ଅପେକ୍ଷା କରିବେ ନାହିଁ ?

ରାତି ପାହି ସକାଳ ହୁଏ । ପୁଣି ଦିନଯାଇ ରାତି ଆସେ । ଏହିଭଳି ଦିନ ପରେ ଦିନ ଯାଇ ମାତ୍ର ଆଉ ଆଠଦିନ ରହିଥାଏ । ଶାରଦୀୟ ମହାପୂଜା । ବଜ୍ରଯାନୀମାନେ ଗ୍ରାମ ନଗର ଚତୁର୍ଦ୍ଦିଗରେ ବୁଲି ମହାପୂଜା କଥା ପ୍ରଚାର କରୁଥାନ୍ତି । ଅଧିକାଂଶଙ୍କ ମନରେ ସେହି ଗୋଟିଏ କଥା; ପ୍ରକୃତରେ କଣ ଏଭଳି କଥା ଘଟିବ ? ହଜିଲା ବୋଇତ ଫେରିବ, ରାଜକନ୍ୟା ଅକ୍ଷୁଣ୍ଣ ଭାବରେ ଫେରି ଆସିବେ; ଶ୍ରେଷ୍ଠୀର ପୁଅ ଫେରିଆସିବ ? ଉତ୍ତରରେ ବଜ୍ରଯାନୀମାନେ କହନ୍ତି, ତାହା ନ ହେଲେ ଆମେ ଉତ୍କଳ ଦେଶର ମହାରାଜାଙ୍କ ବନ୍ଦୀଶାଳାରେ ବନ୍ଦୀହୋଇ ରହିବୁ ବା ପ୍ରାଣଦଣ୍ଡ ପାଇବୁ । ଶୂନ୍ୟର ପୂଜକ କେବେ ମିଥ୍ୟା କହନ୍ତି ନାହିଁ । ଯାହା ଘଟିବ ତାହାହିଁ ସେମାନେ କହନ୍ତି ।

ସେଦିନ ରାତି ପାହି ଆସୁଥାଏ । ଅନଙ୍ଗବଜ୍ର ହଠାତ୍ ଧ୍ୟାନରୁ ଉଠି କହିଲେ, ଆଜି ସନ୍ଧ୍ୟା ପୂର୍ବରୁ ଉତ୍କଳଦେଶ ସାଧବର ବୋଇତ ଫେରି ଆସିବ । ଖବର ଦିଅ ସାଧବ ବୁଢ଼ାଙ୍କୁ, ସମ୍ବାଦ ଦିଅ ମଧ୍ୟ ମହାରାଜାଙ୍କୁ । ସେମାନେ ନଦୀ ମୁହାଣକୁ ଆସିବେ । ଯେଉଁମାନେ ସନ୍ଦେହ ପ୍ରକାଶ କରୁଥିଲେ ଶୂନ୍ୟ ଉପରେ ସେମାନେ ମଧ୍ୟ ଚାଲନ୍ତୁ ନଦୀ ମୁହାଣକୁ । ପ୍ରତ୍ୟେକ ପ୍ରତ୍ୟକ୍ଷ କରିବେ ଶୂନ୍ୟ କଣ କରିପାରେ ?

ଅନଙ୍ଗବଜ୍ର କଥା ଶୁଣୁ ଶୁଣୁ ବଜ୍ରଯାନୀମାନେ ସେହିକଥା ପ୍ରଚାର କରିବାକୁ ବାହାରି ପଡ଼ିଲେ । ଆଜି ସନ୍ଧ୍ୟାପୂର୍ବରୁ ସେହି ଅଦ୍ଭୁତ କଥା ଘଟିବ ଶୁଣୁ ଶୁଣୁ ଲୋକେ ଧାଇଁଲେ ମହାନଦୀର ମୁହାଣକୁ । ସୂର୍ଯ୍ୟ ମୁଣ୍ଡ ଉପରକୁ ଯିବା ପୂର୍ବରୁ ନଦୀ ମୁହାଣ ଲୋକାରଣ୍ୟ ହୋଇଉଠିଲା । ସାଧବ ବୁଢ଼ା ଶୁଣୁ ଶୁଣୁ ଧାଇଁଆସିଲା ଅନଙ୍ଗବଜ୍ରଙ୍କ ନିକଟକୁ । ଅନଙ୍ଗବଜ୍ର ସାଧବ ବୁଢ଼ାଙ୍କୁ ଦେଖୁ ଦେଖୁ କହିଲେ, ନଦୀ ମୁହାଣକୁ ଯା'ନ୍ତୁ । ସନ୍ଧ୍ୟା ପୂର୍ବରୁ ନିଶ୍ଚୟ ତୁମ ବୋଇତ ବହୁ ଧନ ରତ୍ନ ଧରି ଫେରିବ । ଫେରିବ ମଧ୍ୟ ଶ୍ରେଷ୍ଠୀଙ୍କ ପୁତ୍ର ।

ସୂର୍ଯ୍ୟ ମୁଣ୍ଡ ଉପରୁ ଧୀରେ ଧୀରେ ତଳକୁ ଖସିବାକୁ ଲାଗିଲେ । ଲୋକମାନେ ଚାହିଁ ରହିଥା'ନ୍ତି ସାଗର ବକ୍ଷକୁ । ସାଗରର ନୀଳ-ଜଳ ଉପରେ କିଛି ଗୋଟାଏ ଦେଖାଗଲେ, ବୋଇତ ବୋଲି ଲୋକେ ଧାରଣା କରନ୍ତି । ମାତ୍ର ଅଳ୍ପ ସମୟ ପରେ ଜଣାଯାଏ ତାହା ବୋଇତ ନୁହେଁ । ପୁଣି ଲୋକମାନେ ଅନାଇଁ ରହନ୍ତି ସାଗର ଆଡ଼କୁ । ଯେଉଁଠି ନୀଳ-ସାଗର ଓ ନୀଳ-ଆକାଶ ଏକାଠି ହୋଇଛି, ସେହି ସନ୍ଧିସ୍ଥଳକୁ ଅନାଇ ରହିଥା'ନ୍ତି ଲୋକମାନେ ।

ସୂର୍ଯ୍ୟ ଧୀରେ ଧୀରେ ତଳରୁ ତଳକୁ ଖସି ଚାଲିଥା'ନ୍ତି । ମାତ୍ର ଆଉ ଅଳ୍ପ ସମୟ—ଆଉ ଅଳ୍ପ ସମୟ ପରେ ସନ୍ଧ୍ୟା ମାଡ଼ିଆସିବ । କିନ୍ତୁ ବୋଇତ କାହିଁ ? ତାହାହେଲେ ଅନଙ୍ଗବଜ୍ର ଏତେଗୁଡ଼ାଏ ଲୋକଙ୍କୁ ଏଠାକୁ ଡାକିଆଣି ବୋକା ବନେଇ ଦେବ ? ଖାଲି ସାଧାରଣ ଲୋକ ନୁହନ୍ତି—ଉଡ୍ର ଦେଶର ମହାରାଜା ଓ ତାଙ୍କ ରାଜପରିଷଦମାନେ କେତେବେଳୁ ଆସି ଅପେକ୍ଷା କରିଛନ୍ତି ବୋଇତକୁ । ଯଦି ବୋଇତ ନ ଆସେ ପରିଣାମ କ'ଣ ହେବ ତାହା କ'ଣ ବଜ୍ରଯାନୀମାନେ ଜାଣନ୍ତି ନାହିଁ ? ଅନ୍ୟମାନଙ୍କ ଭଳି ଅନଙ୍ଗବଜ୍ର ଓ ବଜ୍ରଯାନୀମାନେ ସେଠାକୁ ଆସିଯାଇଥା'ନ୍ତି । ସେଠାକୁ ଆସିବା ପରେ ପରେ ଧ୍ୟାନସ୍ଥ ହୋଇସାରିଥା'ନ୍ତି । ତେଣୁ ତାଙ୍କୁ କେହି କିଛି କହିବା ସମ୍ଭବପର ହେଉ ନ ଥାଏ ।

ଧୀରେ ଧୀରେ ନିରାଶ ହୋଇଗଲେଣି ଉପସ୍ଥିତ ଲୋକମାନେ । କାରଣ, ସୂର୍ଯ୍ୟ ପ୍ରାୟ ପଶ୍ଚିମ ଆକାଶରେ ବୁଡ଼ିଯିବା ଅବସ୍ଥାରେ । ଲୋକଙ୍କ ସହିତ ଛିଡ଼ା ହୋଇଥିବା ଅନ୍ୟାନ୍ୟ ବଜ୍ରଯାନୀମାନେ ବ୍ୟସ୍ତ ହୋଇପଡ଼ିଲେଣି । ମାତ୍ର କେତୋଟି ମୂହୂର୍ତ୍ତ; ତା'ପରେ ଚାରିଆଡ଼ ଅନ୍ଧାର ହୋଇଯିବ, ପୃଥିବୀ ବକ୍ଷକୁ ଅନ୍ଧକାର ମାଡ଼ିଆସିବା ସଙ୍ଗେ ସଙ୍ଗେ ବଜ୍ରଯାନର ବିଲୋପ ହୋଇଯିବ ।

ହଠାତ୍ ଅନଙ୍ଗବଜ୍ର ଆଖି ଖୋଲି ପାଟି କରିଉଠିଲେ—"ଆଉ ଟିକିଏ ରହିଯାଅ ସୂର୍ଯ୍ୟ ! ଆସ...ଆସ ସାଧବ ପୁଅ ତୁମେ ତୁମର ବୋଇତ ଧରି । ତୁମକୁ ବଜ୍ରର ରାଣ । ଆଉ ଡେରି ନ କରି ତୁମେ ଦେଖାଦିଅ ! ......ହଁ ମହାରାଜ ! ଆପଣଙ୍କ କନ୍ୟାକୁ ଏହି ଅଳ୍ପ ସମୟ

ମଧ୍ୟରେ ପାଇବେ । ତା' ନ ହେଲେ ଆଜିର ସୂର୍ଯ୍ୟ ଅସ୍ତାଚଳରେ ଅସ୍ତ ହେବେ ନାହିଁ ।"

ଏଁ······ଦୂର ଦିଗ୍‌ବଳୟରେ ସମୁଦ୍ର ଉପରେ କ'ଣ ଗୋଟାଏ ଦେଖାଯାଉଛି । ତାହା କ'ଣ ସାଧବର ହଜିଲା ବୋଇତ ? ଅସ୍ତଗାମୀ ସୂର୍ଯ୍ୟକିରଣରେ ତାହା ଝକ୍ ଝକ୍ କରୁଛି ।

ଏକସଙ୍ଗରେ ଲୋକମାନେ ଶୂନ୍ୟର ଜୟଧ୍ୱନି କରିବାକୁ ଲାଗିଲେ । ହୁଳହୁଳି ଦେଲେ ଲଳନାମାନେ । ଧୀରେ ଧୀରେ ଦିଗ୍‌ବଳୟରେ ଦେଖାଯାଉଥିବା ବସ୍ତୁଟି ସ୍ପଷ୍ଟ ହୋଇଆସିଲା । ତାହା ଯେ ଗୋଟିଏ ବୋଇତ ଏଥିରେ କାହାରି ସନ୍ଦେହ ରହିଲା ନାହିଁ ।

ନିକଟରୁ ନିକଟତର ହୋଇଆସିଲା ବୋଇତଟି । କେତେଜଣ ନଦୀରେ ଡଙ୍ଗାମେଲି ଦ୍ରୁତ ବେଗରେ ଆଗେଇଗଲେ ବୋଇତ ଆଡ଼କୁ । ବୋଇତଟି ଧୀରେ ଧୀରେ ନଦୀ ମୁହାଣ ଆଡ଼କୁ ଆଗେଇ ଆସିଲା ।

ଉଃ···କି ଆନନ୍ଦ କୂଳରେ ଛିଡ଼ା ହୋଇଥିବା ଉତ୍କଳ ଦେଶର ଲୋକଙ୍କର । ବୋଇତଟି ସେହି ହଜିଲା ବୋଇତ କି ନୁହେଁ ସେ ବିଷୟ କେହି ଥରୁଟିଏ ବି ଭାବୁ ନ ଥିଲେ । ସମସ୍ତେ ଯେପରି ନିଶ୍ଚିତ ଏହି ସେହି ସାଧବର ହଜିଲା ବୋଇତ । ଯାହା କହିଛନ୍ତି ଅନଙ୍ଗବଜ୍ର ତାହା ଅକ୍ଷରେ ଅକ୍ଷରେ ଠିକ୍ ।

ଅନଙ୍ଗବଜ୍ରଙ୍କ ଗୁରପଟେ ଘେରି ଛିଡ଼ା ହୋଇଥା'ନ୍ତି ଲୋକମାନେ । ସେମାନଙ୍କ ମୁଖରୁ ନିନାଦିତ ହେଉଥାଏ ଶୂନ୍ୟର—ଅନଙ୍ଗବଜ୍ରଙ୍କର ଜୟଧ୍ୱନି । ସ୍ତ୍ରୀଲୋକମାନେ ଘନ ଘନ ହୁଳହୁଳି ନାଦରେ ସ୍ଥାନଟିକୁ ମୁଖରିତ କରୁଥା'ନ୍ତି । ସତେ ଯେପରି ଏତେବଡ଼ ଆନନ୍ଦ କେବେ ସେମାନଙ୍କର ଆସିନାହିଁ । ସେଠାରେ ଉତ୍କଳ ଦେଶର ମହାରାଜ ଉପସ୍ଥିତ ଥିଲେ ମଧ୍ୟ ତାଙ୍କର ଗୁରୁତ୍ୱ ମୋଟେ ନାହିଁ । ସେଠାରେ ସର୍ବେସର୍ବା ଅନଙ୍ଗବଜ୍ର ।

ଖୁବ୍ ଅଳ୍ପ ସମୟ ମଧ୍ୟରେ ଗୋଟିଏ ଛୋଟ ପଟେଇ (ଛୋଟ ଡଙ୍ଗା) ଛୁଟିଆସିଲା ନଈ ଭିତରେ ସେହି ଲୋକମାନଙ୍କ ପାଖକୁ । ଦଳେ ସମ୍ବାଦ କ'ଣ ବୁଝିବାକୁ ଧାଇଁଗଲେ ।

ଅଳ୍ପ ସମୟ ମଧ୍ୟରେ ସେହି ପଟେଇ ମଧ୍ୟରୁ ସେଠାରେ ଅପେକ୍ଷା କରିଥିବା ମହାରାଜାଙ୍କ ପାଖକୁ ଦୁଇଜଣ ବୋଇତର କର୍ମଚାରୀ ଧାଇଁଯାଇ ପ୍ରଣାମ କରି କହିଲେ—"ମଣିମା ! ଦସ୍ୟୁମାନେ ଆପଣଙ୍କ କନ୍ୟାକୁ ବୋଇତରେ ନେଇ ଚାଲିଯାଉଥିଲେ । ସମୁଦ୍ର ମଧ୍ୟରେ ଆମ ବୋଇତ ସହିତ ସେମାନଙ୍କର ଲଢ଼େଇ ହେଲା । ଲଢ଼େଇରେ ସେମାନେ ପରାସ୍ତ ହେଲେ । ମହାରାଜଙ୍କ ଦ୍ୱାରା ଜଣେ ନିର୍ବାସିତ ପଣାୟତ ଦସ୍ୟୁ ସାଜି ମଣିମାଙ୍କ କନ୍ୟାକୁ ହରଣଚାଲ କରିନେଇଥିଲା । ସେ ମଧ୍ୟ ବନ୍ଦୀ ହୋଇ ବୋଇତରେ ଅଛି । ତାଙ୍କର କେତେଜଣ ସୈନ୍ୟ ନିହତ ହୋଇଛନ୍ତି ଓ ଗୋଟିଏ ବୋଇତଟି ପାଣିରେ ବୁଡ଼ିଯାଇଛି । ଖୁବ୍ ଚତୁରତାର ସହିତ ସେମାନଙ୍କୁ କାବୁ କରି ନ ଥିଲେ ରାଜକନ୍ୟାକୁ ଉଦ୍ଧାର କରିପାରି ନ ଥା'ନ୍ତୁ । ବନ୍ଦୀ ପଣାୟତ ଯେତେବେଳେ କହିଲା, ସେହି ଗୋଟିଏ ଝିଅଟି ରାଜକନ୍ୟା ବୋଲି ସେତେବେଳଠାରୁ ତାଙ୍କୁ ଅତି ଯତ୍ନରେ ରଖାଯାଇଛି ।"

ଆନନ୍ଦରେ ଉଦ୍‌ବେଳିତ ହୋଇପଡ଼ିଲେ ସମସ୍ତେ । ଉତ୍କଳ ଦେଶର ମହାରାଜ ହଠାତ୍ କ'ଣ କହିବେ କିଛି ସ୍ଥିର କରିପାରିଲେ ନାହିଁ । ଟିକିଏ ପରେ ସେ ନିଜ ବେକରୁ ହୀରାଜଡ଼ିତ ସୁନାହାରଟି କାଢ଼ି ଏହି ସୁସମ୍ବାଦ ଦେଇଥିବା ଲୋକଟିର ବେକରେ ପକାଇଦେଲେ । ଫାଟିପଡ଼ିଲା ପୁଣି ସମୁଦ୍ର କୂଳ ଜୟ-ଜୟକାର ନାଦରେ ।

ଅନଙ୍ଗବଜ୍ର କହିଲେ—"ସେହି ବୋଇତରେ ଶ୍ରେଷ୍ଠୀଙ୍କ ପୁଅ କ'ଣ ଆସିନାହାନ୍ତି ?"

—"ହଁ...ହଁ, ଶ୍ରେଷ୍ଠୀଙ୍କ ପୁଅ; ସେ କି ବିଦେଶ ଯାଇ ଆଉ ଫେରିନାହାନ୍ତି ?"

—"ହଁ..., ସୁମନ୍ତ ଶ୍ରେଷ୍ଠୀଙ୍କ ପୁଅ ଅର୍ଜୁନ ଶ୍ରେଷ୍ଠୀଙ୍କ ସହିତ ସୌଦାଗରଙ୍କର ସିଂହଳରେ ଭେଟ ହେଲା । ସେହି ସିଂହଳଠାରୁ ସେ ଆମ ବୋଇତରେ ଅଛନ୍ତି ।"

ଏହାପରେ ଆଉ କ'ଣ ବାକି ରହିଲା ? କ'ଣ ଆଉ ଆବଶ୍ୟକ ଉତ୍କଳ ଦେଶର...ଓଡ଼ିଆ ଜାତିର ?

ଅନଙ୍ଗବଜ୍ର କହିଲେ—"ଜାତିର ଇଷ୍ଟ, ଉତ୍ତ୍ର ଦେଶର ମହୋଦଧି କୂଳରେ ଆରାଧିତ ସେହି ଜଗନ୍ନାଥ ହେଉଛନ୍ତି ଶୂନ୍ୟ । ଶୂନ୍ୟର ସଙ୍କେତ ଧରି ସେ ଏବେ ବି ଉଭା ନୀଳାଚଳରେ । ତାଙ୍କୁ ଉପାସନା କରି ତାଙ୍କର ଜୟଗାନ କଲେ ସବୁକିଛି ହୋଇପାରିବ ।"

ସେତେବେଳକୁ ସାଧବର ବୋଇତ କୂଳର ଖୁବ୍ ନିକଟରେ ଥାଏ । ଲୋକଙ୍କ ଦୃଷ୍ଟି ଥାଏ ସେହି ବୋଇତ ଉପରେ । ମୁହଁରୁ ତାଙ୍କର ବାରମ୍ବାର ଉଚ୍ଚାରିତ ହେଉଥାଏ ଜୟ-ଜୟକାର । ସେ ଜୟଧ୍ୱନି ଶୂନ୍ୟର···ଶୂନ୍ୟରୂପୀ ଶ୍ରୀଜଗନ୍ନାଥଙ୍କର ।

ସେହି ଶୂନ୍ୟରୂପୀ ଜଗନ୍ନାଥଙ୍କୁ ସ୍ପଷ୍ଟରୂପେ ଦେଖୁଥା'ନ୍ତି ଗୁରୁ ଅନଙ୍ଗବଜ୍ର । ସତେ ଯେମିତି ନୀଳ-ଆକାଶ ଘନୀଭୂତ ହୋଇ କଳା ହୋଇଯାଇଛି ଓ ସେହି ଚକ୍‌କଣ କଳା ଗୋଲାକାର ମୁଖ ଭଳି ହୋଇ-ଯାଇଛି । ସେହି ମୁହଁରେ ସୂର୍ଯ୍ୟ-ଚନ୍ଦ୍ର ଦୁଇଟି ଆଖିଭଳି ଦିଶୁଛନ୍ତି ଓ ତା' ତଳକୁ ଦ୍ୱିତୀୟା ଚନ୍ଦ୍ର ଭଳି ଗୋଟିଏ ବଧୂଳି ଅଧର । ସେ ହସି ହସି କହୁଥା'ନ୍ତି, "ଭକ୍ତ ଅନଙ୍ଗବଜ୍ର ! ମୁଁ ଇଚ୍ଛାକଲେ ଅସମ୍ଭବ ସମ୍ଭବ ହୋଇପାରେ । କାହିଁକି ନା, ମୁଁ ହେଉଛି ଏ ବିଶ୍ୱର ସ୍ରଷ୍ଟା···ସବୁର ନିୟନ୍ତା । ତେଣୁ ମୋ'ଠାରେ ସମଗ୍ର ବିଶ୍ୱ ଧର୍ମର ସଙ୍କେତ ତୁମେ ଦେଖିପାରୁଛ ।"

ଅନଙ୍ଗବଜ୍ର ମଥାନତ କଲେ ସେହି ଶୂନ୍ୟପୁରୁଷଙ୍କ ଉଦ୍ଦେଶ୍ୟରେ । ସେପର୍ଯ୍ୟନ୍ତ ମଧ୍ୟ ସୂର୍ଯ୍ୟ ସମ୍ପୂର୍ଣ୍ଣ ଅସ୍ତ ହୋଇ ନ ଥା'ନ୍ତି । ବୋଇତ କୂଳରେ ଲାଗିବା ସଙ୍ଗେ ସଙ୍ଗେ ମହାରାଜ କୂଳ ଆଡ଼କୁ ଧାଇଁଗଲେ । ବୋଇତରୁ କେହି ଜଣେ ରାଜଜେମାଙ୍କୁ କାନ୍ଧରେ ବସାଇ ଛିଡ଼ା ହୋଇଗଲେ ବୋଇତ ଉପରେ ମହାରାଜ ଚିହ୍ନିଲେ ତାଙ୍କର କନ୍ୟାକୁ ।

ସେତେବେଳେ ସୂର୍ଯ୍ୟଙ୍କର ଶେଷରଶ୍ମି ସମୁଦ୍ର କୂଳରେ ପଡ଼ି ସବୁକୁ ସୁନାରଙ୍ଗରେ ରଙ୍ଗେଇ ଦେଉଥାଏ ।

—0✻0—

---

ଅନଙ୍ଗବଜ୍ର ଓଡ଼ିଶାର ଲୋକ ଓ ସେ ବୌଦ୍ଧ ବଜ୍ରଯାନର ସାଧକ । ତାଙ୍କ ଶିଷ୍ୟ ସମ୍ବଲର ରାଜା ଇନ୍ଦ୍ରଭୂତି । ସେ ଅଷ୍ଟମ ଶତାବ୍ଦୀର ସିଦ୍ଧପୁରୁଷ ଥିଲେ । ତାଙ୍କ ରଚିତ କେତେଗୁଡ଼ିଏ ଗ୍ରନ୍ଥ ଦେଖିବାକୁ ମିଳେ ।

# ଭକ୍ତ ଅଚ୍ୟୁତାନନ୍ଦ

ନୀଳାଚଳରେ ଚହଳ ପଡ଼ିଯାଇଛି । ସତେ ଯେପରି ନୀଳାଚଳଆ ନୀଳାଚଳ ଛାଡ଼ି ଚାଲିଯାଇଛନ୍ତି । ଏ ଦେହ ଛାଡ଼ି ଆତ୍ମା ଚାଲିଗଲେ ଯେପରି ଦେହଟା ଅସାର ହୋଇଯାଏ ସେହିଭଳି ପୁରୁଷୋତ୍ତମ କ୍ଷେତ୍ର ହୋଇଯାଇଛି ଶ୍ରୀହୀନ । ପୂର୍ବେ ଯାହା ଥିଲା, ସବୁ ନୀଳାଚଳରେ ସେମିତି ଥିଲେ ମଧ୍ୟ ପ୍ରାଣବିହୀନ ପିଣ୍ଡ ଭଳି ଅସାର ହୋଇ ପଡ଼ିରହିଛି ନୀଳାଚଳ । ସୁଆରମାନେ ବିବିଧ ସାମଗ୍ରୀ ରାନ୍ଧି ରତ୍ନସିଂହାସନ ତଳେ ବାଢ଼ିଦେଉଛନ୍ତି । ପୂର୍ବଭଳି ପୂଜକ ମୁରୁଜରେ ଶ୍ରୀଚକ୍ର ଅଙ୍କାଯାଇଥିବା ସ୍ୱର୍ଣ୍ଣମୟ ପାତ୍ରରେ ନୈବେଦ୍ୟ ବାଢ଼ି ଥୋଇଦେଉଛନ୍ତି । ମନ୍ତ୍ରରାଜ ଦ୍ୱାଦଶାକ୍ଷରୀ ନୃସିଂହ ମନ୍ତ୍ରରେ ସେହି ନୈବେଦ୍ୟ ସାମଗ୍ରୀ ପ୍ରେକ୍ଷିତ ହେଉଛି । ଅଷ୍ଟାଦଶାକ୍ଷରୀ ଗୋପାଳ ମନ୍ତ୍ରରେ ତାହା ନିବେଦିତ ହେଉଛି । ଭୈରବୀ ଚକ୍ରର ଉଚ୍ଛିଷ୍ଟ ଭୈରବୀ ବିମଳାଙ୍କ ପାଖକୁ ସମର୍ପଣ କରିବାକୁ ନେଲାବେଳକୁ କାହିଁ ନା କାହିଁ ବିଘ୍ନ ଘଟୁଛି । ସତେ ଯେପରି ମା' ବିମଳା ଚାହୁଁ ନାହାଁନ୍ତି ତାହା ଗ୍ରହଣ କରିବାକୁ । ତା' ନ ହେଲେ ସମର୍ପଣବେଳକୁ ବିଘ୍ନ ଘଟନ୍ତା କାହିଁକି ? ତାହାହେଲେ କ'ଣ ସୁଆରମାନେ ବୈଷ୍ଣବ ଚୂଲରେ ସମସ୍ତ ଯୋଗାଡ଼ କୁଢ଼ କୁଢ଼ ଆଗୁଡ଼ିକରେ ବସାଇଦେଲା ପରେ ଲକ୍ଷ୍ମୀ ସାଆନ୍ତାଣୀ ରାନ୍ଧୁ ନାହାଁନ୍ତି ?

ଏହାର ଉତ୍ତର କିଏ ଦେବ ? ପୂଜାପଣ୍ଡା କହିଲେ, "ଆମେ ଯେତେବେଳେ ନୈବେଦ୍ୟ ସାମଗ୍ରୀକୁ ନିବେଦିତ କଲୁ, ସେତେବେଳେ ସିଏ ଚକ୍ଷୁରେ ଦେଖା ଦେଇ ନ ଥିଲେ । ସେଥିପାଇଁ ଦୀର୍ଘ ସମୟ ମଧ୍ୟ ଅତୀତ ହେଲା । ମାତ୍ର ମହାପ୍ରସାଦ ନ ବାହାରିଲେ ଅସୁବିଧା । ଭକ୍ତମାନେ ଅପେକ୍ଷା କରି ବସିଥିବେ, ଚଣ୍ଡ ଟିକିଏପାଇଁ ବିଶ୍ୱକେଶନ ଅନାଇଥିବେ । ଶୁକ, ପ୍ରହ୍ଲାଦ, ହନୁମାନ, ନାରଦ, ବୈନେତେୟ, ଦେବଳ, ଇନ୍ଦ୍ରଦ୍ୟୁମ୍ନ ଆଦି କୈବଲ୍ୟ ଟିକିଏପାଇଁ ଚାହିଁବସିଥିବେ ! ଏହିଭଳି ଅବସ୍ଥାରେ ଆମେ, ଚକ୍ଷୁରେ ସିଏ ଦର୍ଶନ ନ ଦେଲେ ମଧ୍ୟ ଚକ୍ରୁ ବୁଲାଇଦେଲୁ ।"

ପୂଜାପଣ୍ଡା ଖାଲି ଚକ୍ଷୁ ବୁଲାଇଦେଲେ ତ ହେବନାହିଁ ! ପ୍ରକୃତରେ ନବେଦ୍ୟ ସାମଗ୍ରୀ ଯଦି ଷଡ଼ଅଙ୍ଗ ସଂସ୍କାର ନ ହୋଇଥିବ, ତେବେ ତାହା ମହାପ୍ରସାଦ ହେବନାହିଁ । ମହାପ୍ରସାଦ ନ ହେଲେ ବିମଳା ତ କେବେ ଗ୍ରହଣ କରିବେ ନାହିଁ । ତା' ପରବର୍ତ୍ତୀ ସଂସ୍କାର ସାତ୍ତ୍ୱିକ ବୈଷ୍ଣବମାନଙ୍କୁ ଅବଶେଷାନ୍ନ ବଳି ଦିଆଯିବ କପରି ?

ଉତ୍ତର ନାହିଁ—ସମସ୍ତେ ସେହି କଥାଗୁଡ଼ିକୁ ଖାଲି ଦୋହରାଇ ଦେଉଛନ୍ତି ସିନା; ପ୍ରକୃତରେ କାହିଁକି ଏପରି ହେଉଛି, ତାହାର ସଠିକ ଉତ୍ତର କେହି ଦେଇ ପାରୁନାହାନ୍ତି ।

ମୁକ୍ତିମଣ୍ଡପର ପଣ୍ଡିତମାନଙ୍କ ମଧ୍ୟରୁ କେତେକ ସ୍ମୃତି ଶାସ୍ତ୍ର ଓଲଟାଇ ଓଲଟାଇ ଥକିଲେଣି; କାହିଁକି ଏଭଳି ହେଉଛି, ତା'ର ଯଥାଯଥ ଉତ୍ତର ଖୋଜି ପାଉନାହାନ୍ତି । ନିୟମ ମୁତାବକ ସାତ୍ତ୍ୱିକଭାବେ ସବୁକାର୍ଯ୍ୟ ତ ହେଉଛି, ତେବେ ଏଭଳି ହେଉଛି କାହିଁକି ?

ତାହାହେଲେ ଓଡ଼ିଶା ଦେଶ ଉପରେ, ଓଡ଼ିଆ ଜାତିକୁ ପଦାନତ କରି କ'ଣ ଗୋଟାଏ କଳାଗ୍ଲାନି ମାଡ଼ିଆସୁଛି । ସେଥିପାଇଁ ରତ୍ନସିଂହାସନ ଗ୍ଲାନି ଧୂଆଁ କୁଆଡ଼େ ପଳାଇଲେଣି ।

ଭକ୍ତମାନଙ୍କ ଆଖିରେ ଲୁହ । ସତେ···, ଏ କ'ଣ ହେଲା; ଏଭଳି ଅଘଟଣ ଘଟୁଛି କାହିଁକି ? କେତେକ ଶ୍ରୀମନ୍ଦିର ଉପରେ ଥିବା ନୀଳଚକ୍ରକୁ ଅନାଇଁ ଧୈର୍ଯ୍ୟହରା ହୋଇଯାଉଛନ୍ତି । ନୀଳ-ଆକାଶରେ ନାଦ ବିନ୍ଦୁର ସଙ୍କେତ ଧରି ପତିତପାବନ ବାନା; ନୀଳ-ସାଗର ଉପର ଦେଇ ପବନ ବହିଆସୁଛି ପତିତପାବନ ବାନା ଉଡ଼ାଇଦେବାକୁ । ଉଡ଼ାଇଦେଉଛି ମଧ୍ୟ—ହେଲେ ପୂର୍ବଭଳି ଆଉ ପତିତପାବନ ବାନା ଉଡ଼ୁନାହିଁ । ସତେ ଯେପରି ବେଶି ଓଜନିଆ ହୋଇଯାଇଛି ନୀଳଚକ୍ର ଉପରର ପତାକା । ସାମାନ୍ୟଭାବେ ତାକୁ ଖାଲି ହଲାଇଦେଇ ସେ ଗ୍ଳଲଯାଉଛି ।

ଭୋଗମଣ୍ଡପ ଆଗରେ ଗରୁଡ଼ ହାତଯୋଡ଼ି ଉଭା । କିନ୍ତୁ ଭକ୍ତମାନେ ମନେକରୁଛନ୍ତି ଗରୁଡ଼ ଯେପରି ନିର୍ବାକ ହୋଇଯାଇଛନ୍ତି । ସତେ ଯେପରି ସେ ମୂର୍ତ୍ତିରେ ଆଉ ନାହିଁ ।

ଦେଉଳର କରଣେ, ପରିଛା ନବାବ ହୋଇଯାଇଛନ୍ତି । କ'ଣ ହେଲ..., ସେଆଁମାନେ କ'ଣ ଶ୍ରୀମନ୍ଦିର ଶ୍ରୀକ୍ଷେତ୍ର ଛାଡ଼ି ଚାଲିଯାଇଛନ୍ତି ? ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱର ବୀରାଧିବୀରବର ପ୍ରତାପରୁଦ୍ର କ'ଣ ମହାପ୍ରଭୁଙ୍କ ନିକଟରେ କିଛି ଅପରାଧ କରିଛନ୍ତି ?

ପୂର୍ବର ସୋମବଂଶୀ ରାଜାମାନେ ମହାପ୍ରଭୁଙ୍କପାଇଁ ମନ୍ଦିର ନିର୍ମାଣ କରୁଥିଲେ । ମାତ୍ର ସୋମବଂଶର ଶେଷରାଜା ଅବହେଳା କଲରୁ ଓଡ଼ିଶାର ଲୋକମାନେ ତାଙ୍କୁ ଆଉ ଶ୍ରଦ୍ଧା କଲେନାହିଁ । ବାସୁଦେବ ବାହିନୀପତି ଲିଙ୍ଗରାଜଙ୍କ ଆଦେଶରେ ଗଙ୍ଗରାଜଙ୍କୁ ଡାକିଆଣିଲେ । ସେ ମନ୍ଦିର ମୁଣ୍ଡିମାରି ସେଆଁଙ୍କୁ ପ୍ରତିଷ୍ଠା କଲେ । କିନ୍ତୁ ସେହି ଗଙ୍ଗବଂଶର ଶେଷରାଜା ନିଶଙ୍କଭାନୁଙ୍କର ସାମାନ୍ୟ ଦୋଷପାଇଁ ଶ୍ରୀଜଗନ୍ନାଥ ତାଙ୍କୁ ଆଉ ଚନ୍ଦନହାଡ଼ି କଲେନାହିଁ । ସୂର୍ଯ୍ୟବଂଶର କପିଳେଶ୍ୱରଙ୍କୁ ଓଡ଼ିଶା ମୂଲକର ରଜା କଲେ । ସେ ମହାପ୍ରଭୁଙ୍କର ଆଦେଶ ନେଇ ଗଙ୍ଗାଠାରୁ ସମସ୍ତ ଦାକ୍ଷିଣାତ୍ୟ ଜୟଲାଭ କରିଗଲେ । ଖାରବେଳର ପରେ କଳିଙ୍ଗ କୁହ, ଉଡ୍ରଦେଶ କୁହ ବା ଉତ୍କଳ କୁହ—ଆଉ ସେଭଳି କୌଣସି ରଜା ଆସି ନ ଥିଲେ, ଯେ କି ଭାରତର ଅର୍ଦ୍ଧେକ ରାଜ୍ୟର ଶାସନଭାର ନିଜ ହାତକୁ ନେଇ ସୁଶାସନ ଚଳାଇଥିଲେ । ତାଙ୍କ ପୁଅ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ଆଶ୍ରେକରି କପିଳେନ୍ଦ୍ରଙ୍କ ରାଜ୍ୟକୁ କୌଣସିମତେ ରକ୍ଷା କରିଗଲେ । ତାଙ୍କ ପରେ ପ୍ରତାପରୁଦ୍ର ରଜା ହେବା ପରଠାରୁ ଓଡ଼ିଶାର, ଉତ୍ତର-ଦକ୍ଷିଣ ଶତ୍ରୁସଙ୍କୁଳ ହୋଇପଡ଼ିଲା । ଉତ୍ତରର ନବାବମାନେ ଯେଉଁଭଳି ପ୍ରବଳ ହେଲେ, ସେହିଭଳି ଦକ୍ଷିଣରେ କାକତୀୟ ବଂଶର କୃଷ୍ଣଦେବରାୟ ବଳଶାଳୀ ହୋଇଉଠିଲେ । ଫଳରେ ପ୍ରତାପରୁଦ୍ର କେବେ ଉତ୍ତରତ କେବେ ଦକ୍ଷିଣକୁ ଧାଇଁଚାଲିଛନ୍ତି । ଏହିଭଳି ଅବସ୍ଥାରେ ଶ୍ରୀମନ୍ଦିର, ଶ୍ରୀକ୍ଷେତ୍ର ଛାଡ଼ି ଶ୍ରୀଜଗନ୍ନାଥ ଯଦି କେଉଁଆଡ଼େ ଚାଲିଯା'ନ୍ତି, ତେବେ ଓଡ଼ିଶାର ସାହା-ଭରସା କିଏ ହେବ ?

ହଠାତ୍ ମୁକ୍ତିମଣ୍ଡପର ପଣ୍ଡିତଙ୍କ କିଏ ଜଣେ କହିଲ—"ଗୌଡ଼ୀୟ ବୈଷ୍ଣବମାନେ କହୁଛନ୍ତି କୁଆଡ଼େ ଚୈତନ୍ୟ ମହାପ୍ରଭୁଙ୍କୁ ଓଡ଼ିଶାର ପଣ୍ଡିତମାନେ ଅବହେଳା କଲରୁ ସେଆଁ ଶ୍ରୀକ୍ଷେତ୍ର ଛାଡ଼ି ଚାଲିଯାଇଛନ୍ତି ।"

ଗର୍ଜି ଉଠିଲା ମୁକ୍ତିମଣ୍ଡପ ପଣ୍ଡିତମାନଙ୍କ ସଭାସ୍ଥଳୀ । କ'ଣ ହେଲା, ଚୈତନ୍ୟ ପୁଣି ମହାପ୍ରଭୁ ହୋଇଗଲାଣି ? ତାଙ୍କୁ ଅବହେଳା କଲାରୁ ଏଭଳି ଅଘଟଣ ଘଟୁଛି ? ଏ କଥା କହିବାକୁ ଗୌଡ଼ୀୟମାନେ ଲଜ୍ଜାବୋଧ କରୁନାହାଁନ୍ତି ? ଆମ୍ଭେମାନେ ବେଦ-ବେଦାନ୍ତ ଭଲରୂପେ ପାଠ କରିଛୁ ଓ ସ୍ମୃତି ଶାସ୍ତ୍ର ଅନୁସାରେ ଶ୍ରୀଜଗନ୍ନାଥଙ୍କ ଆରାଧନା କରୁଛୁ । ତାହାଠାରୁ ଆଉ ଶ୍ରେଷ୍ଠ ଆରାଧନା କ'ଣ ଅଛି ? ବରଂ ସେହି ଚୈତନ୍ୟ ଏ କ୍ଷେତ୍ରକୁ ଆସିବାଦିନରୁ ସବୁ ଗଣ୍ଡଗୋଳର ସୂତ୍ରପାତ ହୋଇଛି । ସେ ଓଡ଼ିଶାରୁ ଗ୍ଭଲିଗଲେ ଓଡ଼ିଶାର ଶ୍ରୀ ଅତୁଟ ରହିବ ।

"ପଣ୍ଡିତ ମହାସଭାକୁ ଉତ୍ତର ଦେବ କିଏ ? ସେମାନେ ହେଉଛନ୍ତି ହିନ୍ଦୁଧର୍ମର ଓ ବେଦ-ବେଦାନ୍ତର ବାର୍ତ୍ତାବହ । ଋଗ୍‌ବେଦ ଅନୁସାରେ ସେମାନେ ବିରାଟ ପୁରୁଷର ମୁଖଦେଶରୁ ଜନ୍ମ । ଯୁଗେ ଯୁଗେ ତାଙ୍କର ନିର୍ଦ୍ଦେଶରେ ରାଜାମାନେ ଚାଲିଆସିଛନ୍ତି । ଆଜି କ'ଣ ପ୍ରତାପରୁଦ୍ର ସେମାନଙ୍କ କଥାକୁ ଅବମାନନା କରିବେ ?

ନାଥ ପ୍ରତିହାରୀ କହିଲେ—"ପଣ୍ଡିତମାନେ ଯାହା କହୁଛନ୍ତି ତାହା ଠିକ୍ ଯେ, କିନ୍ତୁ ମହାପ୍ରଭୁଙ୍କର ପଞ୍ଚୁଭଗତଙ୍କୁ ଦେଉଳରୁ ବାଛନ୍ଦ କରିବାଦ୍ୱାରା ବୋଧେ ହିଅଁ ରୁଷିଥିବେ ।"

—"ହିଅଁ ରୁଷିଥିବେ···କାହିଁକି ? ଏଥିରେ ଦୁଃଖ କରିବାର କ'ଣ ଅଛି ? ତୁମେ ଯେଉଁ ପଞ୍ଚୁଭଗତଙ୍କ କଥା କହୁଛ, ସେହି ବଳରାମ, ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ ଆଉ ଅନନ୍ତଙ୍କ କଥା କହୁଛ ତ ? ସେମାନେ ତ ସେହି ନବଦ୍ୱୀପରୁ ଆସିଥିବା ଚୈତନ୍ୟଙ୍କ ଚେଲା । ସେମାନେ ମନ୍ଦିରକୁ ନ ଆସିଲେ କ'ଣ ବେଦ ଅଶୁଦ୍ଧ ହୋଇଯିବ ? ତାଙ୍କଭଳି ଲୋକଙ୍କପାଇଁ ହିଅଁ କ'ଣ ରୁଷିବେ ?"

ମାଧବ ପ୍ରତିହାରୀ କହିଲେ—"ଜଇ ପଣ୍ଡିତେ କହିଲେ ଯେ, ହେଲେ କଥାଟା ମନକୁ ପାଉନାହିଁ । କେହି ଦେଖିଛି ବଳରାମ, ଜଗନ୍ନାଥ, ଅଚ୍ୟୁତ ଆଦିଙ୍କୁ ଚୈତନ୍ୟ ଦୀକ୍ଷା ଦେବା । ବଳରାମ ଦାସଙ୍କଠାରୁ ଜଗନ୍ନାଥ ଦାସ ଦୀକ୍ଷା ନେଇଥିଲେ । ଆଉ ଅଚ୍ୟୁତ ତ ମହାପ୍ରଭୁ ଜଗନ୍ନାଥଙ୍କ

ପ୍ରସାଦରୁ ଜନ୍ମ । 'ଯେ ଜଗନ୍ନାଥଙ୍କ ଦୟାରୁ ଜନ୍ମ, ସେ ଚୈତନ୍ୟଙ୍କଠାରୁ କାହିଁକି ଦୀକ୍ଷା ନେବ ? ନିଜେ ପରା ଜଗନ୍ନାଥ ମହାପ୍ରଭୁ ତାଙ୍କୁ ଛଦ୍ମ ବେଶରେ ଦୀକ୍ଷା ଦେଇଥିଲେ । ସେମାନେ ପ୍ରକୃତ ଖାଣ୍ଟି ଜଗନ୍ନାଥି । ତାଙ୍କୁ ଏଣୁତେଣୁ କହିବା ଅପରାଧ...... ।"

ଜଇ ପଣ୍ଡିତେ ଆଉ କ'ଣ କହିଆସୁଥିଲେ, ଏତିକିବେଳେ ମାଧବ ପ୍ରତିହାରୀ କହିଲେ—"କିଏ ଜାଣେନାହିଁ ବଳରାମ ଦାସ ସମସ୍ତଙ୍କଠାରୁ 'ବଡ଼; ଆଉ ତାଙ୍କଠାରୁ ଜଗନ୍ନାଥ ଦାସ ଦୀକ୍ଷା ନେଇଛନ୍ତି ବୋଲି । ସେମାନଙ୍କୁ ତ ବହୁ ପରୀକ୍ଷା କରାଯାଇଥିଲା, ସେମାନେ ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ନା ନାହିଁ ? ପରୀକ୍ଷା ସରିଲା ପରେ ପୁଣି ତାଙ୍କୁ ମନ୍ଦିର ବାଛନ୍ଦ କରିବା ଉଚିତ ନୁହେଁ । କିଏ ନାହିଁ କରିବ ଯେ, କେବଳ ସେଇଥିପାଇଁ 'ମହାପ୍ରଭୁ ଶ୍ରୀମନ୍ଦିରରେ ଥାଇ ମଧ୍ୟ ନ ଥିଲା ପରି ହୋଇ-ଯାଇଛନ୍ତି ।"

କେବଳ ଶ୍ରୀମନ୍ଦିର ଭିତରେ ନୁହେଁ; ହାଟ, ଘାଟ, ରାସ୍ତା, ପଡ଼ିଆ ସବୁଠାରେ ସେହି ଗୋଟିଏ ଆଲୋଚନା; ପଞ୍ଚସଖାଙ୍କୁ ମନ୍ଦିରକୁ ଆସିବାପାଇଁ ଯେଉଁଦିନୁ ବାରଣ ହେଲାଣି, ସେହିଦିନୁ ମହାପ୍ରଭୁ ମନ୍ଦିର ଛାଡ଼ି ଚାଲିଗଲେଣି । ମହାରାଜା ପ୍ରତାପରୁଦ୍ରଙ୍କୁ ବୁଝାଗଲା ପଞ୍ଚସଖା ହେଉଛନ୍ତି ବୌଦ୍ଧମାନେ, ବୌଦ୍ଧମାନେ ଈଶ୍ୱର ବିଶ୍ୱାସୀ ନୁହନ୍ତି । ତେଣୁ କେତେବେଳେ ସେମାନେ ଜଗନ୍ନାଥଙ୍କୁ କ'ଣ କରିବେ ତାହା କିଏ କହିବ ? ତେଣୁ ବେଳ ଥାଉଁ ଥାଉଁ ତାଙ୍କୁ ମନ୍ଦିରରୁ ବାଛନ୍ଦ କରିବା ଉଚିତ୍ ।

ରାଜ୍ୟ ସମ୍ଭାଳିବାକୁ ମହାରାଜା ପ୍ରତାପରୁଦ୍ରଙ୍କ ବେଳ ନାହିଁ, ସେ ଶ୍ରୀମନ୍ଦିର ବିଷୟ ବୁଝିବାକୁ ସମୟ କେଉଁଠୁ ପାଇବେ ? ଦେଉଳର କର୍ମଚାରୀ, ପଣ୍ଡା, ପଡ଼ିହାରୀ ଯେ ଯାହା କହିଲେ ସେ କଥା ସତ କି ମିଛ ତାହା ବୁଝି ବିଚାର କାର୍ଯ୍ୟ କରିବାକୁ ସେ ବେଳ ନ ପାଇ ମୁଣ୍ଡ ଝୁଙ୍କାଉଛନ୍ତି । ମହାରାଜାଙ୍କ ଲିଖିତ ଆଦେଶ ନ ପାଇଲେ ମଧ୍ୟ ତାଙ୍କର ସମ୍ମତି ଅଛି ଏତିକି ଜାଣିଲେ ଯଥେଷ୍ଟ ହୋଇଯାଏ । ତାହାର ଫଳରେ ବଞ୍ଚିତ ହେଲେ ପଞ୍ଚସଖା ଶ୍ରୀଜଗନ୍ନାଥଙ୍କ ଦର୍ଶନରୁ ।

ଜଗନ୍ନାଥ ଶ୍ରୀମନ୍ଦିରରେ ନାହାଁନ୍ତି; ସେ ଶ୍ରୀକ୍ଷେତ୍ର ଛାଡ଼ି ଚାଲିଯାଇଛନ୍ତି ଏହା ଶୁଣିଲା ପରେ ବହୁ ଭକ୍ତ ନିର୍ବାକ ହୋଇଗଲେ । ସତରେ, ଜଗନ୍ନାଥ ଯଦି ଶ୍ରୀମନ୍ଦିରରେ ନାହାଁନ୍ତି କିମ୍ବା ଶ୍ରୀକ୍ଷେତ୍ରରେ ନାହାଁନ୍ତି, ତେବେ ସେଠାକୁ ଯାଇ ଆଉ ଲାଭ କ'ଣ ? କେତେକ ମଧ୍ୟ କହିଲେ, ହଇହେ ! କହ୍ନା ଯୋଗୁଁ ସିନା ଗୁହାଳ, ଗୋଠ । କହ୍ନା ନ ଥିଲେ ସେ ଗାଈ ଗୁହାଳରୁ କ'ଣ ମିଳିବ ?

ଧୀରେ ଧୀରେ ଲୋକମାନେ ଶ୍ରୀକ୍ଷେତ୍ରକୁ ଶ୍ରୀମନ୍ଦିରକୁ ଆସିବା କମାଇଦେଲେ । ଭକ୍ତଙ୍କୁ ଯଦି ମନ୍ଦିର ବାଛନ୍ଦ କରାଯାଏ, ତାହାହେଲେ ସେ ମନ୍ଦିରରେ କ'ଣ ଭଗବାନ ରହିପାରିବେ । ଭକ୍ତ ଓ ଭଗବାନ ଏ ଦୁହେଁ ଅଭେଦ ଆତ୍ମା । ଭକ୍ତଙ୍କୁ ବାରଣ କରାଗଲେ ଭଗବାନ ରହନ୍ତି ନାହିଁ । ଭଗବାନ ନ ଥିଲେ ଭକ୍ତମାନେ ଯେ କାହିଁକି ଯିବେ ?

ଅଚ୍ୟୁତ ନେପାଳ ବଟତଳେ ଭୋ-ଭୋ ହୋଇ କାନ୍ଦଉଠୁଥା'ନ୍ତି । ହେ ମହାପ୍ରଭୁ ! ଶେଷରେ ତୁମେ ଏପ୍ରା କଲ ? ଆମ ପଞ୍ଚସଖାଙ୍କୁ ଶ୍ରୀମନ୍ଦିର ବାରଣ ହେଲା, ଶ୍ରୀକ୍ଷେତ୍ର ବାରଣ ହେଲା, ଏହାପରେ ଆଉ କ'ଣ ରହିଲା ? କହି କହି ମୁଁ କହୁଛି, ତୁମେ ହେଉଛ ଶୂନ୍ୟପୁରୁଷ ସେହି ବୁଦ୍ଧ । ଏହା କ'ଣ ମୋର ଅପରାଧ ହେଲା ? ତୁମର ଯଦି ଇଚ୍ଛା ନ ଥାନ୍ତା ବୁଦ୍ଧରୂପେ ବନ୍ଦିତ ହେବାକୁ, ତେବେ କ'ଣ ଏ ଅଚ୍ୟୁତ ଦାସ ତୁମକୁ ବୁଦ୍ଧ ବୋଲି ଲେଖିପାରିଥା'ନ୍ତା ? ତୁମେ ଅଣାକାର—ତୁମର ଆକାର ନାହିଁ । ତୁମର ଯେଉଁ ରୂପ ତାକୁ ଶୂନ୍ୟ ବୋଲି କହୁଛି; ଏହା କ'ଣ ଅପରାଧ ? ମୋ ପୂର୍ବରୁ ଶାରଳାଦାସ ତୁମକୁ ବୁଦ୍ଧ ବୋଲି କହିଯାଇଛନ୍ତି । ତାଙ୍କୁ କ'ଣ ସେତେବେଳକାର ଗଜପତି ମହାରାଜା କପିଳେଶ୍ୱର ମନ୍ଦିର ବାଛନ୍ଦ କରିଥିଲେ ? ହେ ମହାପ୍ରଭୁ ! ତୁମବିନା ଏ ଜଗତରେ କିଛି ହେଉନାହିଁ । ତୁମେ ସବୁକିଛି କରିପକାଉଛ; ତୁମଛଡ଼ା ଦ୍ୱିତୀୟ ଏ ଜଗତରେ କେହି ନାହିଁ । ମୋତେ, ଆମର ଅନ୍ୟମାନଙ୍କୁ ମନ୍ଦିର ବାଛନ୍ଦ କରି କି ସୁଖ ପାଉଛ ମହାପ୍ରଭୁ !

ତୁମର ମହିମା ଦେବ-ମାନବରେ ଅଗୋଚର । ସେ ଲୀଳାପାଇଁ କୃଷ୍ଣ ରୂପରେ ଅବତୀର୍ଣ୍ଣ ହେଲ । ଗୋପରେ ସର-ଲବଣୀ ଖାଇ ଗୋପ-

ବାଳକଙ୍କ ମେଳରେ ବୁଲିଲ । ପୁଣି କେଳି କଲ ଗୋପାଙ୍ଗନାଙ୍କ ସହିତ । ତୁମେ ବାଳକ ହେଲେ ମଧ୍ୟ ଗୋପାଙ୍ଗନାଙ୍କ ସହିତ କେଳି କଲାବେଳେ ହୋଇଯାଅ ଯୁବକ ପୁରୁଷ । ତୁମର ଲୀଳା···ତୁମର ମହିମା ବୁଝିବାକୁ ଏ ଅଚ୍ୟୁତ ଦାସର ଶକ୍ତି କାହିଁ ? ଏ ବିଶ୍ୱ ତୁମରି ସେହି ଓଁକାର ଭଜନରେ ବ୍ୟସ୍ତ । ମୁଁ କିନ୍ତୁ ନିତି ଶୁଣିଛି···ଦେଖିଛି; କଳପବଟ ଉପରେ ଭୁଷଣ୍ଡ କାକ ବସି ସବୁବେଳେ ଗଉ ଗଉ ହେଉଛି । ମୁଁ ଯେତେବେଳେ ତାଙ୍କୁ ପଚାରିଲି, ଓଁକାର ଜପ ନ କରି ତୁମେ ଭୁଷଣ୍ଡ ଗଉ ଗଉ କାହିଁକି ହେଉଛ ? ଉତ୍ତରରେ ଭୁଷଣ୍ଡ କହିଲେ, ଅଚ୍ୟୁତ ! ଏକମାତ୍ର ତୁମେ ହିଁ ପ୍ରଥମେ ଏ ପ୍ରଶ୍ନ ପଚାରିଲ । ତୁମ ପୂର୍ବରୁ କେହି ମୋତେ ଏ ପ୍ରଶ୍ନ ପଚାରି ନାହାନ୍ତି । ବ୍ରହ୍ମା, ବିଷ୍ଣୁ, ରୁଦ୍ର, ସମସ୍ତେ ଓଁକାରରେ ଆଶ୍ରିତ । ମୁଁ କିନ୍ତୁ ଅଣାକାର ଜପ କରୁଛି । ଅଣାକାର ଜପରେ ଜଗନ୍ନାଥ ପ୍ରସନ୍ନ ହୁଅନ୍ତି । ମନପବନକୁ ଦୃଢ଼ କରି, ଅପାନ ବାରୁଦ୍ଧ୍ୟପବନକୁ ଧାରଣ ଦ୍ୱାରା ଉଦାନ ବା କଣ୍ଠ ବାୟୁରେ ତ୍ରିବେଣୀକୁ ନିରୋଧ କରି ବଙ୍କନାଳରେ ପବନକୁ ନେଇ ନାସିକା ରନ୍ଧ୍ରର ମୂଳଶିଖ ସେହି ତ୍ରିକୂଟରେ, ଯେଉଁଠି କମାରଶାଳ ଅଛି ସେଇଠି—ସେହି ସହସ୍ରାରେ ଯଦି ଅଣାକାର ଭଜନ କରିବ, ତେବେ ମହାଶୂନ୍ୟରେ ଶ୍ରୀଜଗନ୍ନାଥଙ୍କୁ ପାଇବ । ଅଣ-ଅକ୍ଷରରେ ଜଗନ୍ନାଥଙ୍କ ଦେହ ଗଠିତ । ସେହି ଅଣାକାର ଶୂନ୍ୟ ହେଉଛନ୍ତି ନିଜେ ମହାପ୍ରଭୁ ।

ହେ ମହାପ୍ରଭୁ ! ମୋତେ ତୁମ ମନ୍ଦିର ବାଛନ୍ଦ କରି ଭୁଷଣ୍ଡ କାକଠାରୁ ଦୂରେଇ ନେଲ । ମୁଁ କାହାଠାରୁ ଶିଖିବି ଅମାପ ମାପିବାକୁ, ଅଭକ୍ଷ ଭକ୍ଷିବାକୁ, ଅଦୃଷ୍ଟି ଦେଖିବାକୁ ? ସମସ୍ତ କାମନାର ବିନାଶରେ ଦୁଃଖର ବିନାଶ । ଏହା ତୁମେ ବୌଦ୍ଧ ଅବତାରରେ କହିଛ । ତେଣୁ ସକଳ କର୍ମ ନାଶକରି ଅକର୍ମରେ ଧ୍ୟାନ ଦେଲି । ତଥାପି ତୁମ ମନ୍ଦିର ବାଛନ୍ଦ ହେଲି ? ମୁଁ ତ୍ରିବେଣୀରେ ସୁଷୁମ୍ନା ବା ସରସ୍ୱତୀକୁ ଠାବ କରିସାରିଛି । ବଙ୍କନଳାରେ ତାଙ୍କୁ ଟେକିନେଇ ସହସ୍ରାରେ ପହଞ୍ଚାଇଛି । ସେଠାରେ ମୁଁ ଆସନପାତି ସ୍ଥିରହୋଇ ବସିଛି । ଯେ ସ୍ଥିର ସେ କ'ଣ ନାସ୍ତିକ ହୋଇପାରେ ? ଏ ବିଚାର ତୁମେ କିପରି କଲ ମହାପ୍ରଭୁ ! ତୁମର ଯଦି ଦୟା ନ ହୁଏ, ତେବେ ଏ ନେମାଳ ବଟ ମଧ୍ୟ ମୋ'ପାଇଁ ଉପଯୁକ୍ତ ସ୍ଥାନ ହେବନାହିଁ । ଗଜପତି ମନ୍ଦିର ବାଛନ୍ଦ କଲେ, ଆଜି ପୁଣି

ସେମାନଙ୍କରୁ ତଡ଼ ଦେଇପାରନ୍ତି ! ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଭୂଖଣ୍ଡର ସେ ହେଉଛନ୍ତି ଶାସନକର୍ତ୍ତା । ସେମାନେ କାଳେ କାଳେ ତାଙ୍କର ଶାସନାଧୀନ ହୋଇ ରହିବେ । ଚଣୋପୂଳା କେବେ ଓଡ଼ିଶାରୁ ବାହାର ହେବ ନାହିଁ ।

ହଠାତ୍ ଶଙ୍ଖଧ୍ୱନି ଶୁଭିଲା । ସଙ୍ଗେ ସଙ୍ଗେ ଏକସ୍ୱରରେ ବାଜିଉଠିଲା ଘଣ୍ଟ, ଘଣ୍ଟା, ମର୍ଦ୍ଦଳ, ଝମ୍ପକ । ଅଚ୍ୟୁତ ବିସ୍ମିତ ହୋଇଗଲେ । ଶଙ୍କା ବି ଜାତହେଲା ତାଙ୍କ ମନରେ । ସତେ କ'ଣ ସେଭଳି କେହି ବିଦୁଜନ ଆସୁଛନ୍ତି ନା କେହି ରାଜକର୍ମଚାରୀ ଆସୁଛନ୍ତି ? ରାଜକର୍ମଚାରୀ ଯଦି ଆସୁଛନ୍ତି, ତେବେ ନିଶ୍ଚିତଭାବେ ଏଠାରୁ ସମଗ୍ର ଉତ୍କଳ ଭୂଖଣ୍ଡରୁ ତାଙ୍କୁ ତଡ଼ିଦେବାକୁ ଆସୁଥିବେ । ଆଉ ବିଦୁଜନ ଯଦି ଆସନ୍ତି ? ନା···, ଏହା ତୁମର ଭ୍ରାନ୍ତ ଧାରଣା ଅଚ୍ୟୁତ ! ବିଦୁଜନ କେବେ ଏଠାକୁ ଆସିବେ ନାହିଁ । ଯେ ଶ୍ରୀମନ୍ଦିରରୁ ବାଛନ୍ଦ, ଶ୍ରୀକ୍ଷେତ୍ରରୁ ବାଛନ୍ଦ, ତା' ପାଖକୁ କେଉଁ ବିଜ୍ଞଜନ ଆସିବେ ?

ବାଦ୍ୟ ଧ୍ୱନି ନିକଟରୁ ନିକଟତର ହୋଇଆସିଲା । ଅଚ୍ୟୁତଙ୍କ ମନରେ ଦ୍ୱନ୍ଦ୍ୱ । ସ୍ଥିର ମନ ତାଙ୍କର ଦୋହଲିଉଠିଲା । ହେ ମହାପ୍ରଭୁ ! ଏ ତୁମର କି ଲୀଳା ? କେଉଁ ମହିମା ଏ ଲୀଳାରେ ପ୍ରକଟିତ ହେବ ? ଶୂନ୍ୟର ଉପାସକ, ତୁମକୁ ଆଶ୍ରେକରି, ତୁମକୁ ଭରସାକରି ଯେ ଦିନ ବିତାଉଥିଲା ତା' ପ୍ରତି ଏ କପଟ କାହିଁକି ?

ବେଶି ବାଟ ନୁହେଁ—ବଟଠାରୁ ବୋଧହୁଏ ଶହେ ହାତ ଦୂର ହେବ, ସେଥି ବାଦ୍ୟଗୋଳ ଆସି ପହଞ୍ଚିଲେ ଭଳି ତାଙ୍କୁ ଲାଗିଲା । ତାଙ୍କ କାନକୁ ଶୁଭିଲା ସେହି ବାଦ୍ୟ ଧ୍ୱନି ମଧ୍ୟରେ ଖଜଣି ସହିତ ଖୋଳ, କରତାଳ ଶୁଭାଯାଉଛି । ତାହାହେଲେ କ'ଣ କୌଣସି ରାଜକର୍ମଚାରୀ ଆସୁନାହାନ୍ତି ? ରାଜକର୍ମଚାରୀ ତ ଖୋଳ, କରତାଳ, ଖଜଣି ବଜାଇ ଆସନ୍ତି ନାହିଁ······ ?

ହେ ମହାପ୍ରଭୁ ! ଅଚ୍ୟୁତ ପାମର—ଅଜ୍ଞାନ । ତୁମର ଲୀଳା, ତୁମର ମହିମା ସେ ବୁଝିପାରିବ ନାହିଁ । କୁହ ମହାପ୍ରଭୁ ! ରାଜକର୍ମଚାରୀ

ଏଠାରେ ପହଞ୍ଚିବା ପୂର୍ବରୁ ମୁଁ କେଉଁଆଡ଼େ ପଳାଇଯିବି । ଗଜପତି ରାଜା ପ୍ରତାପରୁଦ୍ର ବୌଦ୍ଧ ବିରୋଧୀ । ମୁଁ ବୌଦ୍ଧ ନୁହେଁ ଏହା ସତ୍ୟ; ମାତ୍ର ତୁମେ ଯଦି ବୁଦ୍ଧ ହୁଅ, ମୁଁ ବୌଦ୍ଧ ନ ହୋଇ ଆଉ କ'ଣ ହେବି । ତୁମେ ଆଦେଶ କରିଥିଲ ଚୈତନ୍ୟଙ୍କ ସହିତ ମିଶି ତୁମରି ନାମ ଗାଇବାକୁ । ମୁଁ ତାହା ହିଁ କରୁଛି । ତଥାପି ମୁଁ ଜାଣିଛି, ତୁମେ ହେଉଛ ଶୂନ୍ୟ ଅଣାକାର । ଅଣାକାରରେ ଆକାର ମିଶି ଯେଉଁ ରୂପ ପ୍ରକଟ ହେଲା, ସେହି ରୂପରେ ତୁମେ ନୀଳାଚଳରେ ବିଜେ କରିଛ । ତୁମର କିଛି ନାମ ନାହିଁ; କିନ୍ତୁ ଦେଖିଲାବେଳକୁ ଜଗତର ସମସ୍ତ ନାମ ହେଉଛି ତୁମର । ତୁମେ ଅବ୍ୟକ୍ତ-ଅନାଦି-ଅବିନାଶୀ-ବ୍ରହ୍ମ—ସର୍ବରୂପର ପ୍ରକାଶ ହେ ପରମପୁରୁଷ ! ତୁମେ ମୋତେ ଶୂନ୍ୟବାଣୀ କରି କହିଛ ଯେ, ମୁଁ ଦ୍ୱାପର ଯୁଗରେ ଭକ୍ତ ସୁଦାମା ଥିଲି । କଳିଯୁଗରେ ଜନ୍ମ ହୋଇଛି ଅଚ୍ୟୁତ ନାମ ଧରି । ତୁମର ସେହି ଦ୍ୱାପର ଯୁଗର ସଖାକୁ—ଭକ୍ତକୁ ରକ୍ଷାକର !

ବେଳୁ-ବେଳ ନିକଟେଇ ଆସୁଥାଏ ବାଦ୍ୟଶବ୍ଦ । କେହି ଭକ୍ତ ଆସୁଥିଲେ ଅଚ୍ୟୁତଙ୍କର ଦୁଃଖ ନାହିଁ; ମାତ୍ର ଯଦି ବୌଦ୍ଧ ବିରୋଧି ପ୍ରତାପରୁଦ୍ରଙ୍କର କେହି ଆସୁଥାଏ ତାଙ୍କୁ ଧରିନେବାପାଇଁ, ତାହାହେଲେ··· ?

ହଠାତ୍ ଅଚ୍ୟୁତଙ୍କ କାନକୁ ଶୁଭିଲା, କିଏ ଯେପରି ତାଙ୍କୁ ଡାକି କହୁଛି, "ଅଚ୍ୟୁତ ! ବ୍ୟସ୍ତ ହେବାର କିଛି ନାହିଁ । ମୋର ଭକ୍ତକୁ ରାଜଦଣ୍ଡ ସ୍ପର୍ଶ କରିପାରିବ ନାହିଁ । ପ୍ରତାପରୁଦ୍ରର ଶକ୍ତି ନାହିଁ ତୋତେ ଧରିନେଇ ଦଣ୍ଡ ଦେବ । ଅବତାରମାନେ ମୋ'ଠାରୁ ଭିନ୍ନ ନୁହଁନ୍ତି । ପ୍ରତାପରୁଦ୍ର ବୌଦ୍ଧ ବିରୋଧି ହେବାଯୋଗୁଁ ତାହାରିଠାରୁ ସୂର୍ଯ୍ୟବଂଶ ବୁଡ଼ିଯିବ । ମୋ ଭଗତଙ୍କୁ ଯେ ହୀନଚକ୍ଷୁରେ ଦେଖେ, ତା'ର ବଂଶ ରହେନାହିଁ । ତୁ ସ୍ଥିର ହୁଅ ! ତୋ'ର କେହି କିଛି ଅନିଷ୍ଟ କରିପାରିବେ ନାହିଁ ।"

ବିସ୍ମିତ ହୋଇ ଅଚ୍ୟୁତ ଚାରିଆଡକୁ ଅନାଇଲେ । କାହିଁ···, କେହି ତ କେଉଁଠି ନାହାଁନ୍ତି । ତାହାହେଲେ ତାଙ୍କୁ କିଏ ଡାକି କହିଲା ? ·········ଆରେ, ଏ କ'ଣ ସେ ଭାବୁଛନ୍ତି ? ଯେ ଅଣାକାର

ତାଙ୍କୁ ସେ ଦେଖିବେ କପରି ? କେବଳ ଚିତ୍ତକୁ ସ୍ଥିରକରି ଅନ୍ତର ଭିତରେ ନିଷ୍ଠାଳରେ ତାହାଙ୍କ ରୂପକୁ ଦର୍ଶନ କରାଯାଏ । ଏହିଭଳି ଅନାଇଲେ କ'ଣ ତାଙ୍କୁ ଦେଖିହେବ ?

ବାଦ୍ୟଘୋଷ ନିକଟେଇ ଆସିଲା । ଗଛ-ପତ୍ର ଗହଳରୁ ଦେଖାଗଲେ କେତେକ ଲୋକ । ସେମାନେ ହରି ନାମ ଧରି ନାଚୁଛନ୍ତି । ହରି ପ୍ରେମରେ ବିଭୋର ହୋଇପଡ଼ିଛନ୍ତି ସମସ୍ତେ । ସେ ସ୍ୱର ଅସ୍ପଷ୍ଟରୁ ସ୍ପଷ୍ଟ ହୋଇଆସିଲା । ଧୀରେ ଧୀରେ ସେହି ଲୋକମାନେ ତାଙ୍କ ନିକଟତର ହୋଇଗଲେ । ଅଚ୍ୟୁତ ଲକ୍ଷ୍ୟକରି ଦେଖିଲେ, ସେମାନଙ୍କ ମଧ୍ୟରେ କେତେକ ତାଙ୍କର ଚିହ୍ନା ଚିହ୍ନା ମନେହେଉଛନ୍ତି ।

ଆରେ ହେ···, ଏ ତ ଯଶୋବନ୍ତ ଆଉ ଅନନ୍ତ—ତାଙ୍କର ଆପଣାର; ପୁରାପୁରି ଅନ୍ତରଙ୍ଗ । ଧାଇଁଗଲେ ଅଚ୍ୟୁତ ସେମାନଙ୍କ ପାଖକୁ । ସେତେବେଳେ ସେମାନେ ହରିନାମରେ ବିଭୋର ହୋଇପଡ଼ିଥିଲେ । ତଥାପି ତାଙ୍କର ଅନ୍ତରଙ୍ଗ ସଖା ଅଚ୍ୟୁତଙ୍କୁ ଦେଖି ସେମାନେ ତାଙ୍କୁ ଚିହ୍ନିପାରି କେଇପାଦ ତାଙ୍କ ପାଖକୁ ଧାଇଁଆସିଲେ । ମିଳନ ହେଲା ସଖା ସହିତ ସଖାଙ୍କର, ହୃଦୟ ସହିତ ହୃଦୟର । ପରସ୍ପର ପରସ୍ପରଙ୍କୁ କୁଣ୍ଢାଇ ଆଖିରୁ ଲୁହ ବୁହାଇବାକୁ ଲାଗିଲେ ।

ବହୁ କଷ୍ଟରେ ଅଚ୍ୟୁତ ପଚାରିଲେ—"ଗଜପତି ପ୍ରତାପରୁଦ୍ର ଭଗତଙ୍କୁ କ'ଣ କ୍ଷମା ଦେଲେ ?"

ଯଶୋବନ୍ତ କହିଲେ, "ମହାପ୍ରଭୁ ଜଗନ୍ନାଥ ଗ୍ରହଣ କରିଛନ୍ତି ଆମ ପାଞ୍ଚଜଣଙ୍କୁ······ ।" ଏତିକି କହି ଯଶୋବନ୍ତ ଆଉ କିଛି କହିପାରିଲେ ନାହିଁ । ମହିମାମୟ ଜଗନ୍ନାଥ ତାଙ୍କୁ ଭକ୍ତଭାବେ ଗ୍ରହଣ କରିଛନ୍ତି—ଏହା ତାଙ୍କୁ ଭାବବିହ୍ୱଳ କରିପକାଇଲା । ତାଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇଗଲା ।

ଜଗନ୍ନାଥ ଯେଉଁଠି ତାଙ୍କୁ ଭକ୍ତଭାବେ ଗ୍ରହଣ କରିଛନ୍ତି, ସେତେବେଳେ ଗଜପତି ମହାରାଜା ପ୍ରତାପରୁଦ୍ର କ'ଣ କରିବେ ? ଏ ଦେଶର ରାଜା ଶ୍ରୀଜଗନ୍ନାଥ । ତାଙ୍କର ରାଉତ ଗଜପତି ମହାରାଜା । ରାଜା ତାଙ୍କୁ ଗ୍ରହଣ କଲାପରେ ରାଉତ କ'ଣ ତାଙ୍କୁ ଦଣ୍ଡ ଦେଇପାରିବେ ?

ମହାପ୍ରଭୁଙ୍କ ମହିମା ଅତୁଳନୀୟ । ଅଚ୍ୟୁତଙ୍କ ମନ ଧାଇଁଗଲା ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିର ଭିତରକୁ । ରତ୍ନସିଂହାସନ ଉପରେ ମହାପ୍ରଭୁ ବାହୁ ବିସ୍ତାରି ବସିଛନ୍ତି । ଅଚ୍ୟୁତ ହାତଦୁଇଟିକୁ ଶୂନ୍ୟକୁ ଟେକି ବଡ଼ପାଟିରେ କହିଉଠିଲେ, ମହାପ୍ରଭୁ...... !

ସେତେବେଳେ ମହାପ୍ରଭୁ ନୀଳମାଳ ଆକାଶରେ ବିଜେ କରିଥିଲେ । ଅନନ୍ତ ଶୂନ୍ୟକୁ ଅନାଇ ତାଙ୍କୁ ଦେଖି କହିଲେ, ହେଇ..., ମହାପ୍ରଭୁ ବିଜେ କରିଛନ୍ତି । ସମସ୍ତେ ମୁହଁ ଉପରକୁ କରି ଶୂନ୍ୟରେ ମହାପ୍ରଭୁଙ୍କୁ ଦର୍ଶନ କଲେ । ତଳେ ଲମ୍ବହୋଇ ଶୋଇଯାଇ ପ୍ରଣିପାତ କଲେ ।

ମାତ୍ର ଗୋଟିଏ ମୁହୂର୍ତ୍ତ; ତା'ପରେ ଶୂନ୍ୟଦେବତା ଶୂନ୍ୟରେ ମିଶି ଏକ ହୋଇଗଲେ ।



ଇତିହାସ କହେ, ପ୍ରତାପରୁଦ୍ରଙ୍କ ପରେ ତାଙ୍କ ପୁଅମାନଙ୍କୁ ତାଙ୍କ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ହତ୍ୟାକରି ରାଜସିଂହାସନ ଆରୋହଣ କରିଥିଲେ । ତେଣୁ ସୂର୍ଯ୍ୟବଂଶର ଶେଷ ରାଜା ପ୍ରତାପରୁଦ୍ର ବୋଲି ଧାରଣା କରାଯାଏ । ପ୍ରତାପରୁଦ୍ରଙ୍କ ପୁଅ ବୀରଭଦ୍ର ଖୁବ୍ ବୀର ଥିଲେ । ଏକଦା ଖଡ୍ଗ ଚାଳନାରେ ସେ ନିଜେ ନିଜକୁ ଖଣ୍ଡାରେ ହାଣି ମରିଯାଇଥିଲେ ବୋଲି କଥିତ ଅଛି ।

# ବଳିଆରଭୁଜ

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା । ବଡ଼ଦାଣ୍ଡରେ ଲକ୍ଷ ଲକ୍ଷ ଲୋକଙ୍କ ସମାଗମ । ସେ ପର୍ଯ୍ୟନ୍ତ ରଥକୁ ଦାଉଁ ବିଜେ କରି ନ ଥା'ନ୍ତି; ତେବେ ପହଣ୍ଡି ବିଜେ ହୋଇସାରିଲାଣି । ବଡ଼ଦେଉଳର ବେଢ଼ା ଭିତରୁ ବାଦ୍ୟଗୋଳ ଭାସିଆସୁଥାଏ । ଘଣ୍ଟ, ଘଣ୍ଟା, ମର୍ଦ୍ଦଳ ଓ କାହାଳୀର ଶବ୍ଦ ଶୁଣାଯାଉଥାଏ ବଡ଼ଦାଣ୍ଡକୁ । ଯେତିକି ବାଦ୍ୟଗୋଳ ନିକଟେଇ ଆସୁଥାଏ, ସେତିକି ବଡ଼ଦାଣ୍ଡରେ ଠୁଳହୋଇଥିବା ଲୋକେ ଉଦ୍‌ଗ୍ରୀବ ହୋଇପଡ଼ୁଥା'ନ୍ତି । ସମସ୍ତଙ୍କ ଦୃଷ୍ଟି ଥାଏ ସିଂହଦ୍ୱାର ଆଡ଼େ । ଲୋକେ ମନେକରୁଥା'ନ୍ତି ମହାପ୍ରଭୁ ଆସିଗଲେ ପରା । ଜୀବନ ସାର୍ଥକ ହୋଇଯିବ ମହାପ୍ରଭୁଙ୍କୁ ଦର୍ଶନ କରି । ଦେଉଳ ମଧ୍ୟରେ ସେ କେବଳ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଗୋଷ୍ଠୀଙ୍କ ପାଇଁ ବିଜେ କରିଛନ୍ତି । ବର୍ତ୍ତମାନ ସେ ତାଙ୍କର ଜଗତର ନାଥ ନାମକୁ ସାର୍ଥକ କରିବାପାଇଁ ଆସୁଛନ୍ତି ବଡ଼ଦାଣ୍ଡକୁ—ରଥ ଉପରକୁ । ଏଠି କୌଣସି ଜାତିଭେଦ ନାହିଁ କି ଛୁଆଁ ଅଛୁଆଁର ବାରଣ ନାହିଁ । ସମସ୍ତେ ସେଠି ଗୋଟିଏ ମଣିଷ; ବ୍ରାହ୍ମଣ-ଶବର-ଚଣ୍ଡାଳ ସବୁ ଏକାକାର । ସେ ତ ଦୃଷ୍ଟି କରିଛନ୍ତି ସମସ୍ତଙ୍କୁ, ତେଣୁ ସମସ୍ତେ ତାଙ୍କର ।

ରଥ ଉପରକୁ ବହୁ ଲୋକ ଚଢ଼ିଯାଉଥିଲେ । ବର୍ତ୍ତମାନ ଆଉ କାହାରିକୁ ଚଢ଼ାଇ ଦିଆଯାଉନାହିଁ । ଯେତେବେଳେ ମାଲିକ ନିଜ ଯାନ ଉପରକୁ ଆସୁଛନ୍ତି, ସେତେବେଳେ ଅନ୍ୟମାନଙ୍କୁ ଚଢ଼ାଇ ଦିଆଯିବ ବା କିପରି ? ତେଣୁ ରଥ ଉପରୁ ତଳକୁ ଓହ୍ଲାଇଯିବାକୁ ନିର୍ଦ୍ଦେଶ ଦିଆଯାଉଛି । ମହାପ୍ରଭୁଙ୍କର ସେବକ ହେଉଛନ୍ତି ଗଜପତି ମହାରାଜା । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଯାହାର ନାମ ଶୁଣିଲେ ଗର୍ଭିଣୀ ଗାଈ ବାଟ ଛାଡ଼ିଦେଉଛି, ତା' ଆଦେଶକୁ ଅମାନ୍ୟ କରିବ କିଏ ?

ରଥ ତିନୋଟି ଗୋଟିଏ ଧାଡ଼ିରେ ସିଂହଦ୍ୱାର ଆଗରେ ଛିଡ଼ା । ପୂର୍ବ ଦିଗରେ ସବୁଜ କପଡ଼ାରେ ଘୋଡ଼ାଇ ହୋଇ ଛିଡ଼ା ହୋଇଛି

ବଳଭଦ୍ରଙ୍କ ରଥ । ସେହି ରଥ ପାଖରେ ପଶ୍ଚିମ ତରଫକୁ ଲାଗି ଛିଡ଼ାହୋଇଛି ସୁଭଦ୍ରାଙ୍କ ରଥ । ଶ୍ରୀଜଗନ୍ନାଥଙ୍କ ରଥ ସିଂହଦ୍ୱାର ପାଖକୁ ଲାଗି ଛିଡ଼ାହୋଇଛି । ସବୁ ରଥର ମୁହଁ ଉତ୍ତରକୁ । ରଥ ଉପରେ ଟିକି ଟିକି କପଡ଼ାରେ ପାଞ୍ଚଟି ପତାକା ରଥ ଉପରେ ଉଡ଼ୁଛି ।

ହଠାତ୍ ବାଦ୍ୟବାଜା ମାଡ଼ିଆସିଲା ସିଂହଦ୍ୱାର ଡେଇଁ । ହୋଇ..., ଆସିଗଲେ ସୁଦର୍ଶନ । ରତ୍ନସିଂହାସନ ଉପରେ ମହାପ୍ରଭୁ ଜଗନ୍ନାଥ ବସିଥିଲାବେଳେ ସୁଦର୍ଶନ ତାଙ୍କ ବାମ ଦିଗରେ ଥା'ନ୍ତି । ରଥଯାତ୍ରାରେ ସେ ଧାଇଁଆସନ୍ତି ବାଇଶି-ପାହାଚ, ରଥ ଦାଣ୍ଡ ଡେଇଁ । ବହୁ ଦଇତା ସୁଦର୍ଶନଙ୍କୁ କାନ୍ଧେଇ ମାଡ଼ିଆସିଲେ ସୁଭଦ୍ରାଙ୍କ ରଥ ପାଖକୁ । ବାଦ୍ୟବାଜାରେ କମ୍ପି ଉଠିଲା ବଡ଼ଦାଣ୍ଡ । ଦେଖୁ ଦେଖୁ ଦଇତାମାନେ ବଜୁଳିଭଳି ସୁଦର୍ଶନଙ୍କୁ ଧରି ସୁଭଦ୍ରାଙ୍କ ରଥ ଉପରକୁ ଉଠିଗଲେ । ସେମାନେ ସୁଭଦ୍ରାଙ୍କ ରଥ ଉପରେ ସୁଦର୍ଶନଙ୍କୁ ବିଜେ କରାଇ ପୁଣି ଫେରିଗଲେ ଶ୍ରୀମନ୍ଦିର ବେଢ଼ା ଭିତରକୁ ।

ଧାଡ଼ି ପହଣ୍ଡି ଚାଲିଥାଏ । ତେଣୁ ବେଢ଼ା ଭିତରୁ ଭାସିଆସୁଥାଏ ବାଦ୍ୟବାଜା । ଫେରିଲାବେଳେ ଠାକୁରମାନେ ଗୋଟିପହଣ୍ଡିରେ ଫେରନ୍ତି । ଗୋଟିଏ ଠାକୁରଙ୍କୁ ରତ୍ନସିଂହାସନ ଉପରେ ବିଜେ କରାଇସାରିଲା ପରେ ଆଉ ଜଣଙ୍କର ପହଣ୍ଡି ବିଜେ ହୁଏ । ଧାଡ଼ି ପହଣ୍ଡିରେ ଏକାବେଳେ ଚାରିଦେବତା ପହଣ୍ଡି ବିଜେ କରନ୍ତି । ତେଣୁ ସୁଦର୍ଶନଙ୍କ ପରେ ପରେ ବଳଭଦ୍ର ଦେଖାଦେଲେ ସିଂହଦ୍ୱାର ପାଖରେ । ବଡ଼ଠାକୁର ବଳଦେବ ବାଇଶି-ପାହାଚରୁ ଓହ୍ଲାଇ ଆସି ବାହାର ସିଂହଦ୍ୱାରରେ ଟିକିଏ ଛିଡ଼ାହେଲେ । ତାଙ୍କ ଚାରିପାଖଯାକ ମହୁମାଛି ଭଳି ବେଢ଼ିଯାଇଥା'ନ୍ତି ଲୋକମାନେ । ହେଲେ ବଡ଼ଦାଣ୍ଡକୁ ତାଙ୍କ ମୁଣ୍ଡରେ ଥିବା ଟାହିଆର କିଛି ଅଂଶ ଦେଖାଯାଉଥାଏ ।

ଟିକିଏ ଦମ୍ ନେଲା ପରେ ଦଇତାମାନେ ବଡ଼ଠାକୁରଙ୍କୁ ରଥଦାଣ୍ଡର ପୂର୍ବ ତରଫରେ ଥିବା ତାଳଧ୍ୱଜ ରଥକୁ ନେଇଗଲେ । ତାଙ୍କ ପରେ ପରେ ଦଇତାମାନେ କାନ୍ଧରେ ବୋହି ଆଣିଲେ ସୁଭଦ୍ରାଙ୍କୁ । ମହାଶକ୍ତି ସୁଭଦ୍ରାଙ୍କୁ

ଦଇତାମାନେ ବୋହିନେଇ ଦୁଇଟି ରଥ ମଝିରେ କଳାକନା ଘୋଡ଼ା-ହୋଇଥିବା ଦର୍ପଦଳନ ରଥରେ ବିଜେ କରାଇଲେ ।

ଏଥର ଆସିବେ ଜଗତର ନାଥ ଜଗନ୍ନାଥ । ସମସ୍ତେ ଅନାଇଥା'ନ୍ତି କେତେବେଳେ ମହାପ୍ରଭୁ ଜଗନ୍ନାଥ ପହଣ୍ଡି ବିଜେ କରିବେ ଦେଖିବାକୁ । କଥାରେ କହନ୍ତି, କାଳିଆପାଇଁ ସିନା ଗୁହାଳ ଗୋଠ । ସେ ହେଉଛନ୍ତି ଏକମାତ୍ର ତ୍ରାଣକର୍ତ୍ତା । ସୃଷ୍ଟି ରକ୍ଷାପାଇଁ ତାଙ୍କର ଭିତରୁ ଅବତାରପୁରୁଷ-ମାନେ ବାହାରି ଯାଇ ଜନ୍ମ ନଅନ୍ତି ବିଭିନ୍ନ ନାମରେ, ରୂପରେ । ଦୁଷ୍ଟ ଦଳନକରି ସନ୍ଥଙ୍କୁ ରକ୍ଷା କଲାପରେ ସେ ପୁଣି ଆସି ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ଲୀନ ହୋଇଯା'ନ୍ତି । ତେଣୁ ସେହି ମହାପ୍ରଭୁ ଯେତେବେଳେ ମଣିଷମାନଙ୍କ ଭଳି ପହଣ୍ଡି ପହଣ୍ଡି କରି ତାଙ୍କ ରଥ ନନ୍ଦିଘୋଷକୁ ଆସିବେ, ତାଙ୍କର ସେହି ଗୋଟି—ସେହି ରୂପ ଦେଖିବାକୁ କାହାର ମନ ନ ହେବ ?

ଦେଖୁ ଦେଖୁ ସିଂହଦ୍ୱାରକୁ ଆସିଗଲେ ଜଗନ୍ନାଥ । ବାଦ୍ୟରୋଳରେ ଫାଟିପଡୁଥାଏ ବଡ଼ଦାଣ୍ଡ । ଶଙ୍ଖ ଶଙ୍ଖ ଚାମର ପଡୁଥାଏ । ଗୋଟିଆସିବା ହେତୁ ମହାପ୍ରଭୁଙ୍କ ଶ୍ରୀଅଙ୍ଗରୁ କାଳେ ଝାଳ ବୋହିବ ସେଥିପାଇଁ ଆଲଟ ପଡୁଥାଏ । ତାଙ୍କ ଉପରେ ଛତ୍ରଧାରୀମାନେ କଳା-ଧଳା ଛତ୍ର ଧରିଥା'ନ୍ତି ।

ବଡ଼ଦାଣ୍ଡରେ କାହିଁରେ କେତେ ଲୋକ । ସମସ୍ତେ ବ୍ୟାକୁଳ ମହାପ୍ରଭୁଙ୍କ ପହଣ୍ଡି ବିଜେ ଦେଖିବାକୁ । ଯେତେହେଲେ ସେ ବିଶ୍ୱର ମଣିମା । ସମସ୍ତ ଜୀବ ତାଙ୍କ ମଧ୍ୟରେ ଅଣୁ-ପରମାଣ ଆକାରରେ ଥାଆନ୍ତି । ଏଭଳି କି ସମଗ୍ର ବିଶ୍ୱରେ ଯାହା ଅଛି, ଯାହା ଭବିଷ୍ୟତରେ ହେବ, ସମସ୍ତ କଥା ତାଙ୍କ ମଧ୍ୟରେ ରହିଛି । ତାହା ତାଙ୍କ ସୃଷ୍ଟ ଜୀବ ଜାଣିବା ସହଜ ନୁହେଁ । ତେଣୁ ବାରମ୍ବାର ଜୀବ ଛୁଟିଯାଏ ତାଙ୍କ ପାଖକୁ ତାଙ୍କର ବଳୟୁରିଭୁଜ ତଳେ ଟିକିଏ ଆଶ୍ରୟ ଖୋଜିବାକୁ ।

ସେହି ବଳୟୁରିଭୁଜର ମହାତ୍ମ୍ୟ ଅନୁଭବ କରିଥିଲେ ଶବରମାନେ । ବଣର ଫଳମୂଳ ସହିତ ମଦ-ମାଂସରେ ତାଙ୍କୁ ଆରାଧନା କରୁଥିଲେ । ତାଙ୍କର ଆତ୍ମୀୟତାରେ ଭୁଲି ଠାକୁରେ ରହିଗଲେ ଅନେକ କାଳ ତାଙ୍କ ପାଖରେ । ତାଙ୍କ ବଳରେ ବଳୀୟାନ ହୋଇଯାଇଥିଲେ ଶବରମାନେ ।

ମାତ୍ର ଦେବତାଙ୍କ ବଳରେ ବଳୀୟାନ ହୋଇ ସେମାନେ ଯେତେବେଳେ ନିଜକୁ ଗର୍ବିତ ମନେକଲେ, ଶରଦ୍ୱାରା ତାଙ୍କୁ ଆଘାତ କଲେ ସେତେବେଳେ ସେଓଁ ଅଦୃଶ୍ୟ ହୋଇଗଲେ । ଫଳରେ ପତନ ହେଲା ଶବରମାନଙ୍କର । ତାଙ୍କର ସନ୍ଧାନ ପାଇଲେ ଆର୍ଯ୍ୟମାନେ । କିନ୍ତୁ ଅନ୍ତ ଆପଣାର ଶବରମାନଙ୍କୁ ଛାଡ଼ି କେବଳ ଆର୍ଯ୍ୟମାନଙ୍କ ଦ୍ୱାରା ଆରାଧିତ ହେବାକୁ ସେ ଚାହିଁଲେ ନାହିଁ । ଶବର ସମ୍ପ୍ରଦାୟ ଦଇତା ଆଖ୍ୟା ବହନ କରି ତାଙ୍କର ସେବା କଲେ ।

ଆଗେ ଏକମାତ୍ର ଶ୍ରୀଜଗନ୍ନାଥ ପୂଜା ପାଉଥିଲେ । ସେ ଥିଲେ ନାରୀ ଆଉ ପୁରୁଷର ସମ୍ମିଶ୍ରିତ ରୂପ । ସେ ଯେତେବେଳେ ଏକରୁ ବହୁ ହେବାକୁ ଇଚ୍ଛାକଲେ, ସେତେବେଳେ ତାଙ୍କ ମଧ୍ୟରୁ କାରଣ ଭିନ୍ନ ହୋଇଗଲେ—ଶକ୍ତି ଭିନ୍ନ ହୋଇଗଲେ; ଭିନ୍ନ ମଧ୍ୟ ହୋଇଗଲେ ଲିଙ୍ଗ । ତଥାପି ସେ ବଳୟାରଭୁଜ । ସୃଷ୍ଟିର ଆଦ୍ୟ-ଅନ୍ତ କର୍ତ୍ତା । ତେଣୁ ଭଦ୍ର, ଭଦ୍ରାଙ୍କଠାରୁ ତାଙ୍କର ମହିମା ସୁଦୂରପ୍ରସାରୀ ।

ପୁରୁଷୋତ୍ତମ କ୍ଷେତ୍ରର ନିକଟରେ ବହିଯାଉଛି ଭାର୍ଗବୀ ନଦୀ । ତାହାର କୂଳରେ ବୀର ନରସିଂହପୁର ଗାଁ । ସେ ଗ୍ରାମରେ ରାମ ମିଶ୍ରଙ୍କ ଘର । ରାମ ମିଶ୍ରଙ୍କର ସେଭଳି କେହି ନାହାନ୍ତି । ମାମୁଁ-ମାଇଁ ଦୁଇପ୍ରାଣୀ ଆଉ ଜଗନ୍ନାଥ ନାମରେ ଗୋଟିଏ ଛୋଟ ପୁଅ । କାହିଁ କେତେବର୍ଷ ତଳେ ଗଙ୍ଗବଂଶର ରାଜା ନରସିଂହଦେବ ସେ ଗାଁଟି ବସାଇଥିବାରୁ ତାଙ୍କ ନାମାନୁସାରେ ସେ ଗାଁର ନାମ ବୀର ନରସିଂହପୁର ହୋଇଛି ।

ରଥଯାତ୍ରା ଦେଖିବାକୁ ପାଞ୍ଚ-ଛ' ବର୍ଷର ପୁଅ ଜଗୁ ଆଉ ତା' ମା'କୁ ଧରି ରାମ ମିଶ୍ରେ ଯାଇଥିଲେ ପୁରୁଷୋତ୍ତମ । ସେମାନେ ପହଞ୍ଚିଲାବେଳକୁ ଛେରାପହଁରା ଆରମ୍ଭ ହେଉଥାଏ । ଗଜପତି ମହାରାଜା ସୁନାମୁଠା ଝାଡ଼ୁ ଧରି ରଥ ଉପରୁ ସଫା କରୁଥା'ନ୍ତି । ସୂର୍ଯ୍ୟବଂଶୀ ପୁରୁଷୋତ୍ତମଦେବ ରଥରେ ଛେରାପହଁରା କରୁଥିବାରୁ କାଞ୍ଚିରାଜା ତାଙ୍କ ଝିଅକୁ ଗଜପତି ପୁରୁଷୋତ୍ତମଙ୍କୁ ବାହା ଦେବାକୁ ରାଜି ହେଲେ ନାହିଁ । ଏଥିପାଇଁ ଓଡ଼ିଆ ପାଇକଙ୍କ ସହିତ ଜଗନ୍ନାଥ ଓ ବଳଭଦ୍ର ଧଳାଘୋଡ଼ା,

କଳାଘୋଡ଼ା ଚଢ଼ି ଯୁଦ୍ଧ କରିବାକୁ ଯାଇଥିଲେ । ସେହି ସମୟରୁ ଛେରାପହଁରାର ମହତ୍ତ୍ୱ ଆହୁରି ବଢ଼ିଗଲା ।

ଗଜପତି ମହାରାଜା ଛେରାପହଁରା କରୁଥା'ନ୍ତି । ଘନ ଘନ ଖାରକାହାଳୀ ବାଜିଉଠୁଥାଏ । ବଡ଼ଦାଣ୍ଡରେ ଅସୁମାରି ଲୋକ । ସମସ୍ତେ ନୀରବରେ ଛେରାପହଁରା ଦେଖୁଥା'ନ୍ତି । ଘନ ଘନ ହୁଳହୁଳି, ହରିବୋଲ ପଡ଼ୁଥାଏ । ଲୋକେ ହାତଦୁଇଟିକୁ ଉପରକୁ ଟେକି ନିଜର ଅସାମର୍ଥ୍ୟ ଜଣାଉଥା'ନ୍ତି । କେହି କେହି ମହାପ୍ରଭୁଙ୍କ ସ୍ତୋତ୍ର ଜଣାଣ ମନେ ମନେ ପଢ଼ୁଥା'ନ୍ତି ।

ଛେରାପହଁରା ପରେ ରଥରେ ଘୋଡ଼ାମାନଙ୍କ ପାଇଁ ଦଉଡ଼ି ଲାଗିଗଲା । ରଥ ଦଉଡ଼ିକୁ ଧରି ତିନି ଠାକୁରଙ୍କୁ ଗୁଣ୍ଡିଚା ଘରକୁ ଟାଣିନେବାକୁ ଲୋକେ ତତ୍ପର ହୋଇଉଠିଲେ । ତିନୋଟିଯାକ ରଥର ଚକ ହେଉଛି ବୟାଳିଶ । ନର୍କ ହେଉଛି ଚୌରାଅଶି । ଯେ ତିନୋଟି ରଥର ବୟାଳିଶ ଚକକୁ ଗୁଣ୍ଡିଚା ମନ୍ଦିରକୁ ଟାଣିନଅନ୍ତି ଓ ବାହୁଡ଼ାଦଶମୀ ଦିନ ଫେରାଇ ଆଣନ୍ତି, ସେ ଚୌରାଅଶି ନର୍କରୁ ଉଦ୍ଧାର ପାଆନ୍ତି । ତେଣୁ ଲୋକେ ରଥ ଦଉଡ଼ି ଧରିବାକୁ ବ୍ୟଗ୍ର ।

ଅନ୍ୟାନ୍ୟ ଭକ୍ତମାନଙ୍କ ସହିତ ରାମ ମିଶ୍ରେ ଆଉ ତାଙ୍କ ସ୍ତ୍ରୀ ରଥ ଦଉଡ଼ିରେ ହାତ ପକାଇଲେ । ରଥ ଟାଣିବାକୁ ବହୁତ ଭିଡ଼ । ଲୋକେ ଖାବଦାହାଳ ହୋଇପଡ଼ୁଥା'ନ୍ତି । ହଜମାଉଥାଏ ତାଙ୍କର ମନ୍ତ୍ର, ରଥ ଟାଣିଲେ ଯେତେବେଳେ ନର୍କରୁ ଉଦ୍ଧାର ମିଳିବ, ସେତେବେଳେ ବାଂଶୋର ମନ ସ୍ୱତଃ ବିଷୟ ବାସନାଠାରୁ ଦୂରରେ ରହେ । ତେଣୁ ମିଶ୍ରେ ଆଉ ତାଙ୍କ ସ୍ତ୍ରୀ ପୁଅକଥା ପୁରାପୁରି ଭୁଲିଯାଇଥିଲେ ।

କିଛି ବାଟ ରଥ ଟାଣିନେଲା ପରେ ତାଙ୍କ ସ୍ତ୍ରୀ'ଙ୍କର ପୁଅକଥା ମନେପଡ଼ିଗଲା । ସେ ରଥ ଦଉଡ଼ି ଛାଡ଼ ଦେଖିଲାବେଳକୁ ପୁଅ ତାଙ୍କ ପାଖରେ ନାହିଁ । ସଙ୍ଗେ ସଙ୍ଗେ ସେ ସ୍ୱାମୀଙ୍କୁ ପୁଅ କୁଆଡ଼େ ଗଲା ବୋଲି ପଚାରିଲେ । ମିଶ୍ରେ ହାଉଳଖାଇ ଜଗୁ··ଜଗୁ ବୋଲି ଡାକ ପକାଇଲେ । ରଥ ଘୋ-ଘା'ରେ ତାଙ୍କ ଡାକ କେଉଁଆଡ଼େ ହଜିଯାଉଥାଏ । ମିଶ୍ରେ ମଧ୍ୟ ଭାବିଲେ ପିଲାଟା ସେଇଠି କେଉଁଠି ଥିବ, ରଥ ଚାଲିଗଲେ ତାକୁ ସେ ପାଇବେ ।

ରଥ ଗ୍ଲଲଗଲା ପରେ ସେ ଖୋଜିଲେ । ତାଙ୍କ ଗାଁ'ବାଲା ଚାହ୍ନା-ପରିଚୟ ଲୋକମାନେ ଖୋଜିଲେ । ପୁରୀ ସହରର ଗଳି-କନ୍ଦି, ସମୁଦ୍ରବାଲି କେଉଁ ଗୋଟାକ ବାଦ୍ ଗଲା ନାହିଁ । ଦିନେ ଦୁଇଦିନ ନୁହେଁ, ପନ୍ଦରଦିନ ମାସେ ଧରି ଖୋଜା ଗ୍ଲଲା । କିନ୍ତୁ କେଉଁଠି ତା'ର ସନ୍ଧାନ ମିଳିଲା ନାହିଁ । ସତେ ଯେପରି ସେ ଶୂନ୍ୟ ହୋଇଗଲା । କେହି କେଉଁଠି ତାକୁ ଦେଖିଛନ୍ତି—ଏହା ମଧ୍ୟ କେହି କହିଲେ ନାହିଁ ।

ମିଶ୍ରଙ୍କ ସ୍ତ୍ରୀ'ଙ୍କର ଜଗନ୍ନାଥଙ୍କ ଉପରେ ଅଗାଧ ବିଶ୍ୱାସ । ପ୍ରଥମେ ସେ ଧାରଣା କରୁଥିଲେ, ଦଳିସ୍ୟାରଭୁଜ ତାଙ୍କ ଜଗୁକୁ ନିଶ୍ଚୟ ଆଣିଦେବେ । ମାତ୍ର ଯେତିକି ଡେରି ହେଉଥାଏ, ସେତିକି ମନ ତାଙ୍କର ମହାପ୍ରଭୁଙ୍କଠାରୁ ଦୂରେଇ ଆସୁଥାଏ । ଶେଷରେ ଯେତେବେଳେ ଖୋଜି ଖୋଜି ନିରାଶ ହୋଇଗଲେ, ସେତେବେଳେ ସେ ଭାବିଲେ, ସେ ମହାପ୍ରଭୁ ନୁହନ୍ତି—କାଠ । ତା' ନ ହେଲେ ତାଙ୍କର ବିଶ୍ୱାସ, କାକୁତି-ମିନତି ନିଷ୍ଫଳ ହୁଅନ୍ତା କିପରି ?

ରାମ ମିଶ୍ରଙ୍କର ଧାରଣା ଭିନ୍ନ ପ୍ରକାରର । ସେ କହନ୍ତି, ମହାପ୍ରଭୁଙ୍କୁ ସେଭଳି ବୁଝିହାଏ ନାହିଁ । କର୍ମର ଫଳ ଆମକୁ ନିଶ୍ଚୟ ଭୋଗ କରିବାକୁ ହେବ । ହୁଏତ ଆମର ପୂର୍ବ ଜନ୍ମରେ ସେଭଳି କିଛି ଦୁଷ୍କୃତ ଅଛି । ତାହାରି ଫଳସ୍ୱରୂପ, ବୁଢ଼ାଦିନେ ଆମେ ଆମର ଏକମାତ୍ର ପୁଅକୁ ହରାଇ-ବସିଲୁ । ଏଥିପାଇଁ ଭଗବାନଙ୍କୁ ଦୋଷ ଦେବା ଉଚିତ ନୁହେଁ ।

ତାଙ୍କ ସ୍ତ୍ରୀ କହନ୍ତି, ଦଳିସ୍ୟାରଭୁଜ ହୋଇ ସେ ଯଦି ପୂର୍ବଜନ୍ମର ଦୁଷ୍କୃତକୁ କାଟି ନ ପାରିବେ, ତେବେ ତାଙ୍କୁ କାହିଁକି କିଏ ଡାକିବ ?

କାନ୍ଦି କାନ୍ଦି ବ୍ରାହ୍ମଣ-ବ୍ରାହ୍ମଣୀ ଦୁହେଁ ଫେରିଗଲେ ନିଜ ଗ୍ରାମକୁ—ସେହି ଦେବୀ ଭାର୍ଗବୀ ଯେଉଁଠି ନିଦାରୁପେ ବହିଯାଉଛନ୍ତି, ତାହାରି କୂଳକୁ । ଯେତେହେଲେ ଭିଟାମାଟି ଖଣ୍ଡେ ପଡ଼ିଛି ତ ! ସେହି ମାଟିରେ ତାଙ୍କର ବାପ ଜନ୍ମ ହୋଇ କିଶୋର, ଯୌବନ, ବାର୍ଦ୍ଧକ୍ୟ ଅତିକ୍ରମ କରି ସେହି ଗାଁ' ମଶାଣିରେ ଚିରଦିନ ପାଇଁ ମାଟିରେ ମିଶିଯାଇଛନ୍ତି । ସେହିଭଳି ତାଙ୍କ ଅଜା, ପଣଅଜା ମଧ୍ୟ ଲୀଳା-ଖେଳା ସାରି ସେହି ଗାଁ' ମଶାଣିରେ

ପୋଡ଼ା ହୋଇଛନ୍ତି । ସେ ଭାବଥିଲେ, ପୁଅଟି ବଡ଼ହୋଇ ଯଦି ମଣିଷ ହୋଇଥା'ନ୍ତା, ତାହାହେଲେ ମଲା ପୂର୍ବରୁ ପୁଅକୁ କହିଯାଇଥା'ନ୍ତେ— ମୁଁ ମଲାପରେ ମୋ ଦେହକୁ ନେଇ ସ୍ୱର୍ଗଦ୍ୱାରରେ ପୋଡ଼ିଦେବ । ବଡ଼ପୁରୁଷେ କହିଯାଇଛନ୍ତି, ତୁମେ ଯେତେ ଯାହା କର ନା, କାହିଁକି ସ୍ୱର୍ଗଦ୍ୱାରରେ ପୋଡ଼ାହେଲେ ମୁକ୍ତି ପାଇଯିବ । ଭୈରବୀ ବିମଳା ଓ ଭୈରବ ଜଗନ୍ନାଥ, ସେ ବାଲିରେ ପଡ଼ିଥିବା ଅସ୍ଥି ଆଉ ପାଉଁଶ ଉପରେ ଚାଲିଯା'ନ୍ତି । ତାଙ୍କ ପରଶରେ ପାପୀ-ତାପୀ ସମସ୍ତେ ତରିଯା'ନ୍ତି ।

ଖାଲି ସେତିକି ନୁହେଁ, ମହୋଦଧି ପରଶରେ ତାଙ୍କର ବହୁତ ପୁଣ୍ୟ ହୋଇଥାଏ । ମହୋଦଧି ଅହରହ ଧୁ-ଧୁ ଗର୍ଜ୍ଜନ କରି ଡାକ ଦେଉଥାଏ ଯମଗଣଙ୍କୁ, ଖବରଦାର, ଯାହାର ଅସ୍ଥି ପାଉଁଶ ସ୍ୱର୍ଗଦ୍ୱାରରେ ପଡ଼ିଛି ତାକୁ ତୁମେ ସ୍ପର୍ଶ କରିପାରିବ ନାହିଁ । ଏଠି ହରିହର ଏକାତ୍ମାହୋଇ ରତ୍ନସିଂହାସନରେ ବସିଛନ୍ତି । ଜଗତର ଆଦ୍ୟମାତା ସୁଭଦ୍ରାରୂପେ ଦୁହିଁଙ୍କ ମଧ୍ୟରେ ବିଜେ କରିଛନ୍ତି । ହରିହରଙ୍କର ସେହି ପରମାସ୍ତ୍ର ସୁଦର୍ଶନ ଆଉ ତ୍ରିଶୂଳ ଏକ ହୋଇ ସୁଦର୍ଶନ ନାମ ବହି ମହାପ୍ରଭୁଙ୍କ ବାମ ଭାଗରେ ରହିଛି । ସେ ସମସ୍ତଙ୍କ ଅଜଣାରେ ଶ୍ରୀକ୍ଷେତ୍ରର ଚତୁର୍ଦ୍ଦିଗରେ ଘୂରି ଭୟ ଭ୍ରାନ୍ତି ବିଦୂରିତ କରେ । ଏଭଳି କ୍ଷେତ୍ରରେ ଦାହ ହେଲେ ଯଦି ମୁକ୍ତି ନ ମିଳିବ ତେବେ ଆଉ କେଉଁଠି ମୁକ୍ତି ମିଳିବ ?

ସବୁ ଆଶା ତାଙ୍କର ଉଭେଇଯାଇଛି । ନ'ଟା ନୁହେଁ, କିମ୍ବା ଛ'ଟା ନୁହେଁ—ଗୋଟିଏ ବୋଲି ପୁଅ; ସେ ଯଦି କୁଆଡ଼େ ଚାଲିଗଲା, ତେବେ ଆଉ ଜୀବନରେ ରହିଲା କ'ଣ ? ଏ ଦୁଃଖରେ ସେ ହୁଏତ ଆତ୍ମହତ୍ୟା କରିଥା'ନ୍ତେ; ମାତ୍ର ଆତ୍ମହତ୍ୟା ମହାପାପ ! ଜାଣିଶୁଣି ସେ ଏଭଳି ଦୁଷ୍କର୍ମ କରିବେ କିପରି ? ଜୀବନ ସଂଗ୍ରାମରେ ହୁଏତ କେହି କିଛି ସମୟ ପାଇଁ ହାରିଯାଇ ପାରେ; ମାତ୍ର ଏହାବୋଲି ସେ ଯଦି ପଳାୟନ କରେ ତା'ର ମୁକ୍ତି କାହିଁ ? ବାରମ୍ବାର ତାକୁ ଜୀବନ ସଂଗ୍ରାମର ସମ୍ମୁଖୀନ ହେବାକୁ ପଡ଼ିବ । ପଳାୟନ କେବେ କାହାକୁ ବିଜୟମଣ୍ଡିତ କରେ ନାହିଁ । ବିଜୟମଣ୍ଡିତ ନ ହେଲେ ଭଗବାନଙ୍କ ଆଶୀର୍ବାଦ ମିଳେ ନାହିଁ । ତେଣୁ ତାଙ୍କୁ ପରବର୍ତ୍ତୀ ସମୟପାଇଁ ଅପେକ୍ଷା କରିବାକୁ ପଡ଼ିବ । କିଏ ଜାଣେ ଜଗନ୍ନାଥଙ୍କର ଇଚ୍ଛା କ'ଣ ?

ସେ ଘର ଗରିବ···ଖୁବ୍ ଦରିଦ୍ର । ଭୂଇଁ-ବାଡ଼ି ତାଙ୍କର କିଛି ନାହିଁ । କେବଳ ଜଗନ୍ନାଥଙ୍କ ନାମ ନେଇ ଯା'-ତା' ପାଖରେ ହାତପାତି ଚଳନ୍ତି । ଯେତେହେଲେ ସେ ବ୍ରାହ୍ମଣ ପିଲା, କାହା ପାଖରେ ହାତ ପାତିଲେ ତାଙ୍କର ଦୁଃଖ ନାହିଁ । ମୁନି-ଋଷିମାନେ ତପସ୍ୟା କରି ବ୍ରହ୍ମର୍ଷି ହୋଇ-ପାରିଥିଲେ ବି ଅନ୍ୟ ପାଖରେ ହାତ ପାତନ୍ତି । ତେଣୁ ଭିକ ମାଗିବାକୁ ସେ ସଙ୍କୋଚ କରିବେ କାହିଁକି ?

ସେ ବର୍ଷ ତାଙ୍କର ବହୁତ ଖରାପ ସମୟ ଚାଲିଥାଏ ସେ ବର୍ଷ ଅଶିଣ ମାସରେ ଝଡ଼ତୋଫାନ ହେଲା । ଘରଟି ତାଙ୍କର ପୁରୁଣା । ଅଜା-ପଣଅଜା ଅମଳର । ଗଜପତି ରାଜାଙ୍କ ଅନୁଗ୍ରହରେ ଘରଟି ତାଙ୍କର ହୋଇପାରିଥିଲା । ରାଜା ଭୂଇଁ-ବାଡ଼ି ବି କିଛି ଦେଇଥିଲେ । ମାତ୍ର ସେ ଭୂଇଁ-ବାଡ଼ିକୁ ତାଙ୍କର ନନା ଆଉ ସେ ନିହାତି ଅସମୟବେଳେ କିଛି କିଛି ବନ୍ଧୀକରି ସବୁ ହାରିଦେଇଛନ୍ତି । କେବଳ ପୁରୁଣା ଘରଟିକୁ ଯାହିତାହି ଛପର କରି ଚଳନ୍ତି । ହେଲେ ତା' ବି ଭଗବାନ ସହିପାରିଲେ ନାହିଁ । ତାଙ୍କର ପଡ଼ିଶା ବନୁଭାଇନାଙ୍କର କେଉଁ ଅମଳର ବଡ଼ ନଡ଼ିଆଗଛ ଭାଙ୍ଗି ପଡ଼ିବାରୁ ଘରଟି ଭାଙ୍ଗିଗଲା । ଆଉ ତ ସେ ଅମଳ ନାହିଁ କି ରାଜା ମହାରାଜାଙ୍କର ସେ ବିଭବ ନାହିଁ, କିଏ ତାଙ୍କୁ ଘରଟିଏ କରିଦେବ ? ଯେ ଭିକ ମାଗି ଚଳେ, ସେ ଘରଟିଏ କରିବ କିପରି । ସେ ଅନ୍ୟ ଉପାୟ କିଛି ନ ଦେଖି ଯା'କୁ ତାକୁ ଡାକି ଭଙ୍ଗାଘରୁ କାଠ-ବାଉଁଶ କାଢ଼ି ସେହି ଉହାରେ ଚାଳିଆ ଖଣ୍ଡେ କରି ରହିଲେ । ମନକୁ ବୁଝାଇବାକୁ କହିଲେ, ହଁ···ମ, ଆମେ ମାମୁ-ମାଇଁ ଦି'ପ୍ରାଣୀ; ଏତେ ବଡ଼ ଘରଟିଏ କ'ଣ ହେବ । ଏହି ଚାଳିଆଖଣ୍ଡିକରେ ଚଳିଯାଇ ହେବନାହିଁ ? ଏତେ ପୁଣି ବୟସ ତାଙ୍କର ହେଲାଣି । ଆଉ ବୟସ ଅଛି ଯେ ପିଲାପିଲି ହେବେ ବୋଲି ଧାରଣା କରିବେ; ତାଙ୍କପାଇଁ କିଛି କରିଯିବାକୁ ଇଚ୍ଛା କରିବେ । ଗୋଟିଏ ବୋଲି ପୁଅ ହୋଇଥିଲା ଯେ, ସେ ତ ରହିଲା ନାହିଁ—ସେ ଆଉ ଘର କରିବେ କାହାପାଇଁ ?

ମିଶ୍ରେ ଖୁବ୍ ସକାଳୁ ଉଠି ନିତ୍ୟକର୍ମ ସାରି ବାଅଁଙ୍କ ପୂଜାରେ ବସିଥା'ନ୍ତି । ଯେତେହେଲେ ବ୍ରହ୍ମଣ ପିଲା ସେ । ଠାକୁର ପୂଜା ଟିକିଏ

ନ କଲେ ମନରେ କ'ଣ ଶାନ୍ତି ଆସିବ ? ଠାକୁର କହିଲେ ଶାଳଗ୍ରାମଟିଏ, ଆଉ ଦାରୁର ଜଗନ୍ନାଥ ମୂର୍ତ୍ତିଟିଏ । ଓଡ଼ିଆ ଘରେ ଶ୍ରୀଜଗନ୍ନାଥ ପୂଜା ନ ପାଇଲେ, ତାଙ୍କୁ ଆଉ କେହି ମୁକ୍ତି ଦେଇପାରିବେ ନାହିଁ । ଅଯୋଧ୍ୟାରେ ଶ୍ରୀରାମ ଯେଉଁଭଳି ବଳଶାଳୀ, ସେହିଭଳି ମଥୁରା, ବୃନ୍ଦାବନରେ ଶ୍ରୀକୃଷ୍ଣ ବଳଶାଳୀ । ଓଡ଼ିଶା ଭୂଇଁ ଶ୍ରୀଜଗନ୍ନାଥଙ୍କର । ତେଣୁ ସେ ଓଡ଼ିଆଙ୍କୁ ମୁକ୍ତି ଦେଇପାରିବେ । ସେଥିପାଇଁ ପରା ଓଡ଼ିଆ ରାଜାର ନିମନ୍ତ୍ରଣରେ ତା' ଯୁଦ୍ଧଯାତ୍ରାରେ ଘୋଡ଼ା ଚଢ଼ି ଯୁଦ୍ଧ କରିବାକୁ ଯା'ନ୍ତି । ଜଗନ୍ନାଥ ହେଉଛନ୍ତି ବଳୟୁରଭୁଜ । ସଂସାର ରକ୍ଷାପାଇଁ ତାହାର ଭିତରୁ କଳାଟିଏ ଯାଇ ଅବତାରରୂପେ ଜନ୍ମଗ୍ରହଣ କରନ୍ତି । ତେଣୁ ଜଗନ୍ନାଥ ହେଉଛନ୍ତି ଷୋଳକଳାର ଦେବତା । ଏଭଳି ଦିଅଁ ଆଉ କେଉଁଠି ଅଛନ୍ତି ନା ?

ଠାକୁର ପୂଜା ସରିଲା ପରେ ସେଦିନ ଦାନା ଯୋଗାଡ଼ପାଇଁ ସେ ବାହାରିପଡ଼ନ୍ତି । ମହାପ୍ରଭୁଙ୍କ ଦୟାରୁ ତାଙ୍କୁ ଭିକ ମିଳିଯାଏ । ଯାହା ପାଆନ୍ତି ତାହା ଘରକୁ ଆଣିଲା ପରେ ବ୍ରାହ୍ମଣୀ ତାହା ରାନ୍ଧନ୍ତି । ବ୍ରାହ୍ମଣ ଦିଅଁଙ୍କୁ ଭୋଗ ଲଗାଇ ଦିନରେ ସେହି ଥରୁଟିଏ ଗଣ୍ଡାଏ ଖା'ନ୍ତି । ତାହା ପ୍ରାୟ ସଞ୍ଜବୁଡ଼ ପୂର୍ବରୁ । ତା'ପରେ ଦିଅଁଙ୍କ ଆଗରେ ବସି ଓଡ଼ିଆ କବି ଜୟଦେବଙ୍କ ଗୀତଗୋବିନ୍ଦ ବୋଲନ୍ତି । ସେମାନେ ନିହାତି ଗରିବ ହେଲେ ମଧ୍ୟ ଆଉ ଅଧିକ ଆଶା ନ ରଖି ସେଇଥିରେ ସନ୍ତୁଷ୍ଟ ହୋଇଯା'ନ୍ତି ।

ବ୍ରାହ୍ମଣୀଙ୍କର ଆଉ ଭଲ-ମନ୍ଦରେ କ'ଣ ଅଛି । ଯେତେବେଳେ ପୁଅକଥା ମନେପଡ଼େ, ସେତେବେଳେ ଆଖିରୁ ଲୁହ ବୋହିପଡ଼େ । ବେଳେ ବେଳେ ପୁଅକଥା ମନେପକାଇ ଥକ୍କା ହୋଇ ବସିପଡ଼ନ୍ତି । ଦୁନିଆଟା ତାଙ୍କୁ ଖାଁ-ଖାଁ ଲାଗେ । ଭାବନ୍ତି, ମରିଗଲେ ବୋଧେ ଶାନ୍ତି ଆସନ୍ତା; କିନ୍ତୁ ତାହା କ'ଣ ଆସୁଛି ? ଖାଲି ଯାହା ଅଶାନ୍ତିରେ ଦିନ ଯାଉଛି । ଦିଅଁ-ଦେବତା ଭୁଚ୍ଛା ମିଛ । ଗୋଟାଏ ଖାଲି ମନକୁ ଭୁଲାଇବା କଥା । ତା' ନ ହୋଇଥିଲେ ରଥରେ ଦିଅଁଙ୍କୁ ଦର୍ଶନ କରିବାକୁ ଯାଇ ପୁଅକୁ ହରେଇ ଫେରଥା'ନ୍ତେ ?

ବ୍ରାହ୍ମଣ କିନ୍ତୁ ଭିନ୍ନ କଥା କହନ୍ତି । ସେ କହନ୍ତି, ମହାପ୍ରଭୁ ଆମ ଭଲପାଇଁ ତାକୁ ନେଇଯାଇଛନ୍ତି । ଦେଖୁନା ! ତା' ଜାତକ ଦେଖି ଅବଧାନେ କପରି କହୁଥିଲେ, ସେ ବଡ଼ ହୋଇ ଫେରିବ । ଜଗନ୍ନାଥେ ତାକୁ ଶଙ୍ଖରେ ପୂରାଇ ଚନ୍ଦ ଉହାଡ଼ କରିଛନ୍ତି, ତେଣୁ ତା'ର କେହି କିଛି କରିପାରିବେ ନାହିଁ । ସେ ଠିକ୍ ସମୟରେ ଆମ ପାଖକୁ ଫେରିଆସିବ । ସେଥିପାଇଁ ଦୁଃଖ କରିବା ଉଚିତ ନୁହେଁ ।

ଏ ମଧ୍ୟରେ କେତେବର୍ଷ ବିତିଗଲାଣି । ବ୍ରାହ୍ମଣ-ବ୍ରାହ୍ମଣୀ ଦୁହେଁ ବୁଢ଼ା-ବୁଢ଼ୀ ହୋଇଗଲେଣି । କେବଳ ବଳୟାରିଭୁଜ ଜଗନ୍ନାଥଙ୍କୁ ଭରସା କରି ବ୍ରାହ୍ମଣ କାଳ କଟାଇ ଆସିଛନ୍ତି । ଆଗେ ସେ ଯେଉଁଭଳି ଗରିବ ଥିଲେ, ଏବେ ବି ସେ ସେହିଭଳି ଗରିବ । ସେଥିପାଇଁ ବୁଢ଼ୀ କେତେଥର ଅଲଗୁଣା ଦେଇ କହିଲେଣି, ଆଉ ଦିଅଁଙ୍କୁ ପୂଜି ଲାଭ କ'ଣ ? ପୁଅ ତ ଗଲା ଆଉ ଫେରିଲା ନାହିଁ । ସେଦିନ ଯେଉଁ ଗରିବକୁ ଆଜି ସେହି ଗରିବ । କାଠର ଦିଅଁ ଜଗନ୍ନାଥଙ୍କୁ ଏତେ ପୂଜା କରିବା କାହିଁକି ? ଏଇ ଭାଗିବା ନଈ ବଢ଼ି ଥିଲାବେଳେ ତାଙ୍କୁ ପକାଇଦେଲେ ସେ ଶଶୁର ଘରକୁ ଚାଲିଯିବେ । ତେଣିକି ସେ ନିଶ୍ଚିନ୍ତ, ଆମେ ବି ନିଶ୍ଚିନ୍ତ ।

ଉତ୍ତରରେ ବ୍ରାହ୍ମଣ କହନ୍ତି, ସେଭଳି କହିବା ଅପରାଧ । ଯେ ଛପନକୋଟି ଜୀବ ସୃଷ୍ଟି କରିଛନ୍ତି, ଆଉ ତାଙ୍କୁ କର୍ମାନୁସାରେ ଫଳ ଦେଉଛନ୍ତି ତାଙ୍କୁ ସେଭଳି କୁହାଯାଏ ନାହିଁ । ଧର୍ମ ହେଉଛି ବିଶ୍ୱାସର କଥା । ଅବିଶ୍ୱାସ ଟିକିଏ ଆସିଲେ ଅମୃତକୁଣ୍ଡରେ ଟୋପାଏ ବିଷବିନ୍ଦୁ ଭଳି । ପୁଅ ଜଗୁ କେଉଁଦିନୁ ଫେରିଆସନ୍ତାଣି । କିନ୍ତୁ ତୁମର ଅବିଶ୍ୱାସ ସେଥିରେ ବାଧା ଦେଉଛି । ସେ କାଠରେ ଗଢ଼ା ବୋଲି ତାଙ୍କ ହୃଦୟ କାଠ ନୁହେଁ । ତୁମେ କ'ଣ ଶୁଣିନା, ଆଚାର୍ଯ୍ୟ ରାମାନୁଜଙ୍କୁ ଜଣେ ମୂର୍ତ୍ତି ପୂଜା ବିରୋଧି ପଚାରିଲା, ଆଚାର୍ଯ୍ୟ ! ଏ କାଠ, ପଥର, ପିତ ମୂର୍ତ୍ତିଗୁଡ଼ିକୁ ପୂଜା କରୁଛ କାହିଁକି ? ସେ କ'ଣ ଦିଅଁ ହୋଇଛନ୍ତି ଯେ, ତୁମ ପୂଜାରେ ସନ୍ତୁଷ୍ଟ ହେବେ ?

ଆଚାର୍ଯ୍ୟ କହିଲେ, ହେଉ ଦେଖ ବାବା ! ମୋର ଧୂନି ଜାଳିବା ସମୟ ହୋଇଯାଇଛି । ଟିକିଏ ନିଆଁ ଆଣିଦିଅ, ମୁଁ ଧୂନି ଜାଳିଲା ପରେ

ତୁମ କଥାର ଉତ୍ତର ଦେବ । ଲୋକଟି ସଙ୍ଗେ ସଙ୍ଗେ ଯାଇ ନିଆଁ ଲାଗିଥିବା ଖଣ୍ଡେ ଶୁଖିଲା କାଠ ଧରି ପହଞ୍ଚିଲା । ତାହା ଦେଖି ରାମାନୁଜ କହିଲେ, ହଇହେ ! ମୁଁ ତୁମକୁ ନିଆଁ ଟିକିଏ ମାଗିଥିଲି, ତୁମେ ଦାଉପୋଡ଼ା କାଠଖଣ୍ଡେ କ'ଣ ଆଣିଛ ? ଲୋକଟି କହିଲା, ନିଆଁ ଆଣିବାକୁ ହେଲେ, ଏହିଭଳି ତ କରିବାକୁ ହେବ—ତା' ନ ହେଲେ ନିଆଁ ଆଣିବି କିପରି ? ଆଚାର୍ଯ୍ୟ ହସି ହସି କହିଲେ, ତୁମର କାଠ ଯେପରି ନିଆଁ ନୁହେଁ, କିନ୍ତୁ କାଠରେ ନିଆଁ ଅଛି; ସେହିଭଳି କାଠ, ପଥର, ପିତଳ ମୂର୍ତ୍ତି ଭଗବାନ ନୁହନ୍ତି ସତ, କିନ୍ତୁ ସେ ମୂର୍ତ୍ତିରେ ଭଗବାନ ଅଛନ୍ତି । ସେଇ ଭଗବାନ ତୁମକୁ ମାନବରୁ ମହାମାନବ କରିଦେବେ ।

ବୁଢ଼ାଙ୍କ ମୁହଁରୁ ଏଭଳି କଥାଶୁଣି ବୁଢ଼ୀ ଚୁପ୍ ହୋଇଯା'ନ୍ତି ସତ; ମାତ୍ର ତାଙ୍କର ମନ ବୁଝେନାହିଁ ।

ସେଦିନ ଦୁଇଜଣ ମରହଟ୍ଟା ଆସି ଗାଁ'କୁ ଗାଁ' ବୁଲି କହିଦେଇ-ଗଲେ—"ଖଜଣା ରଖିଥିବ ! ଆଦାୟ କରିବାକୁ ଆଜି-କାଲି ମଧ୍ୟରେ ଲୋକ ଆସିଯିବେ । ସେମାନେ କାହାରିକୁ ଛାଡ଼ିବେ ନାହିଁ । ଧନୀ, ନିର୍ଧନ ତାଙ୍କ ପାଖରେ ସମାନ । ତାଙ୍କର ପାତର-ଅନ୍ତର ନାହିଁ କିମ୍ବା ସେ କାହାରିକୁ ବାଦ୍ ଦେବେ ନାହିଁ । ତେଣୁ ସମସ୍ତେ କଉଡ଼ି ରଖି ବସିଥାଅ ।"

ପ୍ରତାପରୁଦ୍ରଙ୍କ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ବିଶ୍ୱାସଘାତକତା କରି ପ୍ରତାପରୁଦ୍ରଙ୍କ ପୁଅମାନଙ୍କୁ ମାରି ଓଡ଼ିଶାର ରାଜା ହେଲେ । ତାଙ୍କ ପରେ ତାଙ୍କ ସେନାପତି ମୁକୁନ୍ଦ ହରିଚନ୍ଦନ ଗୋବିନ୍ଦ ବିଦ୍ୟାଧରଙ୍କ ପୁଅଙ୍କୁ ମାରି ଓଡ଼ିଶାର ସିଂହାସନ ଆରୋହଣ କଲେ । ଏହିଭଳି ଚାଲିଲା ବିଶ୍ୱାସ-ଘାତକତାର ପର୍ବ । ଫଳରେ ଓଡ଼ିଶାରେ ଆଉ ଶାନ୍ତି-ଶୃଙ୍ଖଳା ରହିଲା ନାହିଁ । ଅବିଭକ୍ତ ଓଡ଼ିଶାକୁ ମୋଗଲ ମରହଟ୍ଟାମାନେ ଅଧିକାର କରିନେଲେ । ଗଜପତି ମହାରାଜା ନାମକୁମାତ୍ର ରାଜା ହୋଇଥା'ନ୍ତି । ଏଣେ ମରହଟ୍ଟାଙ୍କ ମଧ୍ୟରେ କଳହ ଲାଗିବାରୁ ସୈନ୍ୟମାନେ ଠିକ୍ ସମୟରେ ଦରମା ପାଆନ୍ତି ନାହିଁ । ତେଣୁ ସେମାନେ ଗାଁ'କୁ ଗାଁ' ଲୁଟପାଟ କରି କଉଡ଼ି ଆଦାୟ କରି ଚାଲନ୍ତି । ସେମାନଙ୍କ ନାଁ' ଶୁଣିଲେ ଲୋକେ ଭୟରେ ଥରହରି । ଲୋକେ କହନ୍ତି, ସେମାନଙ୍କର ଦୟା, ମମତା ଟିକିଏ ହେଲେ ନାହିଁ । ଧନଦରବ

ସମ୍ଭବତ ଝିଅ-ବୋହୂଙ୍କ ଇଜ୍ଜତ୍ ପର୍ଯ୍ୟନ୍ତ ଲୁଟ୍ କରନ୍ତି । ସେମାନଙ୍କର ଅପର ନାମ ବର୍ଗୀ । ଗର୍ଭିଣୀ ଗାଈକୁ ବର୍ଗୀ ନାମ କହିଲେ ସେ ବାଛୁରି ଗୁଡ଼ାଇଦିଏ ।

ବର୍ଗୀ ଖଜଣା ଆଦାୟ କରିବାକୁ ଆସିବେ—ଏକଥା ଶୁଣିଲାମାତ୍ରେ ଧନ ଇଜ୍ଜତ୍ ବଞ୍ଚାଇବାକୁ ଗାଁ ଗୁଡ଼ି ଲୋକେ କଏ କୁଆଡ଼େ ପଳାଇଲେ । କାହା ଘରେ ମର ମର ହେଉଥିବା ବୁଢ଼ାଟାଏ କମ୍ବା ବୁଢ଼ୀଟାଏ ଘର ଜଗି ରହିଥା'ନ୍ତି ବା କାହା ଘରେ କେହି ନ ଥା'ନ୍ତି ।

ଅବସ୍ଥା ଦେଖି ବୁଢ଼ୀ ଗତକାଲଠାରୁ ବୁଢ଼ାଙ୍କୁ କେଉଁଆଡ଼େ ପଳାଇଯିବାକୁ କହିଲେଣି । ବୁଢ଼ା ମୋଟେ ରାଜି ନୁହଁନ୍ତି ପଳାଇବାକୁ । ସେ କହନ୍ତି, ଯେଉଁ ଘରେ ମୋ ଇଷ୍ଟ ଜଗନ୍ନାଥ ଆରାଧିତ ହେଉଛନ୍ତି, ସେ ଘରକୁ ଛାଡ଼ି ପଳାଇବି କିପରି ? ଶ୍ରୀଜଗନ୍ନାଥ ହେଉଛନ୍ତି କୋଟି ବିଶ୍ୱର ଈଶ୍ୱର । ସେ ଇଚ୍ଛା କଲେ ଏ ଗ୍ରାମକୁ, ଏ ଘରକୁ କେହି ଆସିପାରିବେ ନାହିଁ । ତାଙ୍କର ଯଦି ଇଚ୍ଛା ଥିବ ବର୍ଗୀଙ୍କ ହାତରେ ଆମକୁ ମାରିଦେବାକୁ, ତାହାହେଲେ ଆମେ ଏଠୁ ପଳାଇଗଲେ କ'ଣ ରକ୍ଷା ପାଇଯିବା ?

ବୁଢ଼ୀ ଆଉ କ'ଣ କରିବ ? ସ୍ୱାମୀ ଯେତେବେଳେ ଯିବାକୁ ରାଜି ନୁହଁନ୍ତି ସେତେବେଳେ ସେ ବା ଯିବେ କିପରି ? ତା' ଜୀବନଟା କ'ଣ ସ୍ୱାମୀଙ୍କ ଜୀବନଠାରୁ ବଡ଼ ? ସ୍ୱାମୀଙ୍କ ଜୀବନ ଯଦି ବର୍ଗୀମାନଙ୍କ ହାତରେ ଚାଲିଯାଏ, ତେବେ ସେ ବଞ୍ଚିରହି ଆଉ କରିବେ ବା କ'ଣ ? ବୁଢ଼ୀ ତ ହେଲାଣି—ଆଉ ଏ ଜୀବନରେ କ'ଣ ଅଛି ! ମରିଗଲେ କାମ ସରିଯିବ । ହେଉ, ଯାହା ହେବାର ହେବ ।

ଦିନ ଯାଇ ରାତି ଆସିଗଲା । ଗାଁ'ରେ ଲୋକେ ନ ଥିବାରୁ ଗାଁ'ଟା ଖାଁ'-ଖାଁ' ଲାଗୁଥାଏ । ବେଳେ ବେଳେ କୁକୁରଗୁଡ଼ାକ ଭୁକି ରାତିର ଭୟାବହତାକୁ ଆହୁରି ବଢ଼ାଇ ଦେଉଥା'ନ୍ତି । ସବୁ ସତ୍ତ୍ୱେ ଗାଁ' ମୁଣ୍ଡରେ ଗୋଟିଏ କୁଡ଼ିଆ ଘରେ ବୁଢ଼ା ବ୍ରାହ୍ମଣ ତାଙ୍କ ଆରାଧିତ ଗୋଟିଏ ଛୋଟ ଜଗନ୍ନାଥଙ୍କ ମୂର୍ତ୍ତି ଆଗରେ ବସିଥା'ନ୍ତି । ମହାପ୍ରଭୁଙ୍କୁ ଅନାଇ ବୋଲୁଥା'ନ୍ତି କେତେ ସ୍ତବ ସ୍ତୁତି । ବୋଲୁ ବୋଲୁ ମଝିରେ ମଝିରେ ଭାବପ୍ରବଣ

ହୋଇପଡ଼ନ୍ତ । ତାଙ୍କ ଆଖିରୁ ବହିପଡ଼େ ଲୁହ କେଇବୁନ୍ଦା । କପଡ଼ର ଏ କାଳରାତିଟି ପାହିବ—ଏହା ଥିଲା ବଳୟାରଭୁଜଙ୍କ ପାଖରେ ତାଙ୍କର ପ୍ରାର୍ଥନା ।

ଘଡ଼ି ଘଡ଼ି ହୋଇ ପ୍ରଥମ ପ୍ରହର ଗଡ଼ିଗଲା । କଆବୁଦା ମୂଳରୁ ପ୍ରହରକିଆ ବଲୁଆଦଳ ଭୁକିଉଠି ଜଣାଇଦେଲେ ଯେ, ରାତି ଗୋଟିଏ ପ୍ରହର ଗତ ହେଲା । ତା'ପରେ ରାତି ଆଗେଇଗଲା ଦ୍ୱି'ପ୍ରହର ଆଡ଼କୁ । ଗାଁ ସେ ମୁଣ୍ଡର ଜୋର କଡ଼ରେ ଥିବା କଆବୁଦା ପାଖରୁ ବଲୁଆଗୁଡ଼ାକ ଯେତେବେଳେ ପୁଣି ଭୁକିଉଠିଲେ, ସେତେବେଳେ ବୁଢ଼ା ଜାଣିପାରିଲେ ଦ୍ୱି'ପ୍ରହର ହୋଇଗଲା । ଆଉ ଦ୍ୱି'ପ୍ରହର ଗଲେ ରାତି ପାହିଯିବ ।

ହଠାତ୍ କିଛି ଦୂରରୁ ଘୋଡ଼ା ଟାପୁର ଶବ୍ଦ ଭାସିଆସିଲା । ଶବ୍ଦ ଧୀରେ-ଧୀରେ ଦୂରରୁ ପାଖେଇ ଆସିଲା । ସେମାନେ ଯେ ଆସିଗଲେ, ଏହା ଜାଣିବାକୁ ବୁଢ଼ାଙ୍କର ଆଉ ବାକି ରହିଲା ନାହିଁ । ହେଉ, ଯାହା ଜଗନ୍ନାଥ କରିବେ । ଯେତେହେଲେ ସେ ବଳୟାରଭୁଜ । ତାଙ୍କ ଭୁଜ ତଳେ କ'ଣ ବୁଢ଼ା-ବୁଢ଼ୀ ଦି'ଟାଙ୍କୁ ରଖିପାରିବେ ନାହିଁ ଯେ ସେଥିପାଇଁ ଏତେ ଚିନ୍ତା ।

କୁଡ଼ିଆଘର ଦ୍ୱାରମୁହଁରେ ଦଦରା କବାଟଟିଏ ଆଉଜା ହୋଇଥିଲା । ସେହି କବାଟକୁ କିଏ ଗୋଟାଏ ଠକ୍ ଠକ୍ କରିବାର ଶବ୍ଦ ହେଲା । ବର୍ଗୀମାନେ ଯେ କବାଟ ଠକ୍ ଠକ୍ କରୁଛନ୍ତି, ଏହା ବୁଢ଼ା ଜାଣିପାରିଲେ । ହେଉ, ବଳୟାରଭୁଜ ଯାହା କରିବ ' ସେ ଜଗନ୍ନାଥଙ୍କୁ ଅନାଇ କାନ୍ଦି-ଉଠିଲେ । "ହେ ମହାପ୍ରଭୁ ! ତୁ କ'ଣ ଏଠି ବର୍ଗୀଙ୍କ ହାତରେ ମାରିଦେବୁ "

ବୁଢ଼ୀ ଉଠି ଯାଉଥିଲେ କବାଟକୁ ଟିକିଏ ଠେଲି ଫିଟାଇଦେବାକୁ; ମାତ୍ର କେତେଜଣ ବଳୁଆ ଲୋକ ଦୁଆରମୁହଁରୁ କବାଟଟିକୁ ଟାଣି ନେଇ-ଗଲେ । ଏଣିକି କୁଡ଼ିଆ ମୁହଁ ପୂରାପୂରି ଖୋଲା । ସ୍ପଷ୍ଟ ଦେଖାଯାଉଥାଏ ଖଟୁଲି ଉପରେ ଜଗନ୍ନାଥ ମୂର୍ତ୍ତି ଆଉ ତାଙ୍କ ଆଗରେ ବୁଢାଟିଏ ହାତ ଯୋଡ଼ି ବସିଛି । ବୁଢ଼ୀଟି ଭୟରେ କାଠ ପାଲଟିଗଲାଣି । ବୁଢ଼ା ଆଉ ଦିହିଁଙ୍କ ମଝିରେ ଧିପଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଛି ।

କୁଡ଼ିଆଟି ତ ଗ୍ରେଟ । ତଥାପି ଦୁଇ-ତିନିଜଣ ତା' ଭିତରକୁ ପଶିଗଲେ । ଜଣେ କହିଉଠିଲା—"ଆମେ ଖବର ପଠାଇଥିଲୁ; ଖଜଣା ଦେବାକୁ, କଉଡ଼ି ରଖିଛ ?"

ବୁଢ଼ା ତ ଢାଆଁଙ୍କ ଆଗରେ ବସି ଗୁଣୁଗୁଣୁ ହୋଇ ସ୍ତୁତି କରୁଥାନ୍ତି; ତେଣୁ ବହୁ କଷ୍ଟରେ କହିଲେ, "ଆମେ ଗରିବ ଲୋକ, ଭିକ ମାଗି ପେଟ ପୋଷୁ । ଆମର ଭରସା ବଡ଼ଦେଉଳର କଳିଆ ବାହୁଲିଆ । ଦିନରେ ଗୋଟିଏ ବକ୍ତ ଖାଇବା କଷ୍ଟ, କଉଡ଼ି କେଉଁଠି ପାଇବୁ ?"

ପାଟି କରିଉଠିଲା ଗୋଟାଏ ବକ୍ତୁଆ ଲୋକ । ସେ କହିଲା— "ସେଗୁଡ଼ାକ ଆମେ କିଛି ଶୁଣିବୁ ନାହିଁ । ଆମର କଉଡ଼ି ଦରକାର । ରଖ୍ ତୋ ବଡ଼ଦେଉଳର କଳିଆ ବାହୁଲିଆକୁ କେଉଁଠୁ । ତା' ନ ହେଲେ ଏଠି ପିଟି ପିଟି ମାରିଦେବୁ ।"

ଏତିକବେଳେ କିଏ ଜଣେ ଗୁବୁକ୍‌ଟାକୁ ପଛପଟରୁ ପିଟିଦେଲା । ଗୁବୁକ୍ ଶବ୍ଦରେ ବିଚରା ବୁଢ଼ୀଟା ତଳେ କଚାଡ଼ି ହୋଇ ପଡ଼ିଲା । ଏହାପରେ ବୁଢ଼ା ଆଉ ନୀରବରେ ବସିପାରିଲେ ନାହିଁ କି ଢାଆଁଙ୍କୁ କିଛି ଜଣାଇପାରିଲେ ନାହିଁ । ସେ ଛଳ ଛଳ ଆଖିରେ ବର୍ଗୀଙ୍କୁ କହିଲେ, "ଆଜ୍ଞାମାନେ ! ଯାହା କହିବେ ମୋତେ କୁହନ୍ତୁ; ବୁଢ଼ୀଟା କିଛି ଜାଣେନାହିଁ । ଆମେ ଗରିବ··· ଭିକ ମାଗି ପେଟ ପୋଷୁ । ଦେଖୁନାହାନ୍ତି, ଘରଟି ପବନରେ ଭାଙ୍ଗିଗଲା ପରେ ଆଉ ଘରଟିଏ କରିପାରିଲୁ ନାହିଁ; ଏହି କୁଡ଼ିଆଖଣ୍ଡିକ କରି ରହିଛୁ । ଆମେ ବୁଢ଼ା-ବୁଢ଼ୀ ଦୁଇଜଣ । ଆମର ପୋଷଣାହାରୀ କେହିନାହାନ୍ତି । ଏକମାତ୍ର ଭରସା ସେହି ଜଗନ୍ନାଥଙ୍କ ଉପରେ । ସେ ପୁଅଟିଏ ଦେଇଥିଲେ, ହେଲେ ସେ କୁଆଡ଼େ ଚାଲିଗଲା ଯେ ତାକୁ ଆଉ ପାଇଲୁ ନାହିଁ ।"

—"ହେ ବୁଢ଼ା ! ତୋ ପୁଅ କୁଆଡ଼େ ଗଲେ କେତେ ରହିଲେ କେତେ । ଆମର ଖଜଣାଗଣ୍ଡାକ ଭଲରେ ଦେଇ ଦେ, ତା' ନ ହେଲେ ତୋ ଠାକୁରକୁ ଆଉ ତୋତେ ଏଇଠି ସାବାଡ଼ କରି ଚାଲିଯିବୁ । କେହି ତୋ ପିଠିରେ ପଡ଼ିବେ ନାହିଁ ।"

ଭେଁ-ଭେ ହୋଇ କାନ୍ଦିଉଠିଲେ ବୁଢ଼ା । "ହେ ମହାପ୍ରଭୁ ! ତୁ କଳିଆ ବାହୁଲିଆ—ତୋ'ର ସେ କଳିଆ ବାହୁ ଥାଉଁ ଥାଉଁ ଆମେ ଯନ୍ତ୍ର

ଅରକ୍ଷ ହେଉ ତେବେ ତୋ’ର ସେ ଭୂକକୁ କଳଙ୍କ ଲାଗିବ ନାହିଁ କ ? ତୁମେ ପରା ଏ ଜାତିର ଇଷ୍ଟ । ଜାତିପାଇଁ ତୁମେ ଦୁଇଭାଇ କଳା-ଧଳା ଘୋଡ଼ା ଚଢ଼ି କାଞ୍ଚିରାଜା ସହିତ ଯୁଦ୍ଧ କରିବାକୁ ଯାଇଥିଲ—ବର୍ତ୍ତମାନ ମୋ’ପାଇଁ ଦାରୁଭୂତ ମୁରାରି ହେଉଛ କାହିଁକ ? ତୁମ ରଥଯାତ୍ରା ଦେଖିବାକୁ ଯାଇ ପୁଅଟିକୁ ହଜାଇ ପୁରୁଷୋତ୍ତମରୁ ଫେରିଲି । ସେ ଗଲାଦିନୁ ତା’ ମା’ ତାକୁ ଝୁରି ଝୁରି ଅସ୍ଥି କଙ୍କାଳସାର ହୋଇଗଲାଣି । ତଥାପି ତୁମର ଦୟା ହେଲାନାହିଁ । ଆମକୁ ବର୍ଗୀମାନଙ୍କ ହାତରେ ମାଡ଼ ଖୁଆଉଛ ? ହେ ମହାପ୍ରଭୁ ! ତୁମେ ନ ରଖିଲେ ଆଉ କିଏ ରଖିବ ?”

ହଠାତ୍ ବାହାରୁ ଶୁଭିଲା—“ସାବଧାନ ଚରଣ ସିଂ...... !” ସଙ୍ଗେ ସଙ୍ଗେ ଘର ଭିତରକୁ ଯୋଦ୍ଧା ପୋଷାକରେ ଆବୃତ ଜଣେ ବଳବାନ୍ ଯୁବକ ପଶିଆସିଲେ । ତାଙ୍କୁ ଦେଖି ଘର ଭିତରେ ଥିବା ବର୍ଗୀମାନେ ମୁଣ୍ଡ ନୁଆଁଇ ପଛକୁ ଘୁଞ୍ଚିଗଲେ । ଯୁବକଜଣକ ଘର ଭିତରକୁ ପଶିଆସି ଖଟୁଲି ଉପରେ ବସିଥିବା ଜଗନ୍ନାଥଙ୍କୁ ଦେଖି ହାତ ଦୁଇଟିକୁ ଯୋଡ଼ି ପ୍ରଣାମ କଲେ । ତା’ପରେ କୋମଳ କଣ୍ଠରେ ପଚାରିଲେ, “ତୁମର କ’ଣ ପୁଅପାଡ଼ି କେହି ନାହାଁନ୍ତି ?”

ଉତ୍ତରରେ ବୁଢ଼ା କହିଲେ, “ନା ଆଜ୍ଞା ! ଆମର ମହାପ୍ରଭୁଙ୍କ ଛଡ଼ା ଆଉ କେହି ନାହାଁନ୍ତି । ପୁଅଟିଏ ଥିଲା, ତାକୁ ୫-୬ ବର୍ଷ ହୋଇଥିଲାବେଳେ ସଙ୍ଗରେ ନେଇ ପୁରୁଷୋତ୍ତମ ରଥଯାତ୍ରା ଦେଖିବାକୁ ଯାଇଥିଲୁ । ସେହି ଭିଡ଼ ଭିତରେ ସେ କେଉଁଆଡ଼େ ହଜିଗଲା, ଆମେ ତାକୁ ଆଉ ପାଇଲୁ ନାହିଁ । ସେ ଥିଲେ ତୁମରି ଭଳି ଯୁବକ ହୋଇଥା’ନ୍ତା ।”

ନରମ ଗଳାରେ ସେହି ଯୁବକ କହିଲେ, “ଆପଣ ତା’ ନାଁ’ କ’ଣ ଦେଇଥିଲେ ?”

—“ଆଜ୍ଞା ! ମୋର ଇଷ୍ଟ ଜଗନ୍ନାଥଙ୍କ ନାମାନୁସାରେ ତା’ ନାଁ’ ଜଗନ୍ନାଥ ଦେଇ ଶ୍ରଦ୍ଧାରେ ଜଗୁ-ଜଗୁ ବୋଲି ଡାକୁଥିଲୁ ।”

ଏଥର ସେହି ଯୁବକ ନିଜକୁ ସମ୍ଭାଳି ପାରିଲେ ନାହିଁ । ବାଷ୍ପାକୁଳ କଣ୍ଠରେ କହିଲେ—“ନନା ! ମୁଁ ତୁମର ସେହି ଜଗୁ । ମୋର ମନେଅଛି;

ମୁଁ ରଥଯାତ୍ରା ଦେଖିବାକୁ ମୋ ନନାଙ୍କ ସହିତ ପୁରୁଷୋତ୍ତମ ଯାଇଥିଲି; ଲୋକ ଭିଡ଼ ଭିତରେ ବଣାହୋଇ ଜଣେ ମରହଟ୍ଟାଙ୍କ ସହିତ ଗୁଲିଗଲି । ପ୍ରଥମେ ପ୍ରଥମେ ମୋ ନନା ଆଉ ବୋଉ ପାଇଁ କାନ୍ଦୁଥିଲି । ତା'ପରେ ମରହଟ୍ଟାଙ୍କର ଆଦର ଯତ୍ନ ପାଇ ସବୁ ଭୁଲିଗଲି । କେବଳ ଏତିକ ମୋର ମନେଥିଲି ନନା ମୋତେ ଜଗୁ ଡାକୁଥିଲେ । ଆମ ଘର ପାଖରେ ନଈ ବହିଯାଉଥିଲା ।"

—"ଏଁ···, ତୁ ମୋ ଜଗୁ······!" କୁଣ୍ଢାଇପକାଇଲେ ବୁଢ଼ା ଜଗୁକୁ । ତାଙ୍କ ଆଖିରୁ ଥପ୍ ଥପ୍ ହୋଇ ଲୁହ ବୋହିପଡ଼ିଲା । ସେ ତାଙ୍କ ସ୍ତ୍ରୀ'କୁ ଡାକ କହିଲେ, "ହେଇ ଶୁଣୁଛ ! ଆମ ଜଗୁ ଫେରିଆସିଛି । ବଳିୟାରଭୁଜ ଏତେଦିନକାରେ ଫେରାଇଦେଇଛି ।"

ବୁଢ଼ୀ ଗୃବୁକ୍ ଶବ୍ଦରେ ତଳେ ପଡ଼ିଯାଇଥିଲେ । ସଙ୍ଗେ ସଙ୍ଗେ ସେ ତକୁ ଉଠି କହିପକାଇଲେ—"ଆରେ ତୁ ମୋର ରୁକ୍ମୁଣୀର ଧନ କେଉଁଠି ଥିଲୁ ?"

ଯୁବକ କଇଁ କଇଁ ହୋଇ କାନ୍ଦୁଥା'ନ୍ତି; ସେହିଭଳି କାନ୍ଦୁଥା'ନ୍ତି ବୁଢ଼ା-ବୁଢ଼ୀ ଦୁହେଁ । ଅନେକ ବର୍ଷ·········ପ୍ରାୟ କୋଡ଼ିଏ ବର୍ଷରୁ ବେଶି ହେବ, ବାପ-ପୁଅର ଓ ମା'-ପୁଅର ଅପୂର୍ବ ମିଳନ ଘଟିଛି । ସେ ମିଳନର—ସେ ଆନନ୍ଦର ପଟାନ୍ତର ନାହିଁ ।

କୁଡ଼ିଆଟି ଛୋଟ । ବାହାରେ ଥିବା ସମସ୍ତ ମରହଟ୍ଟା ସୈନ୍ୟ ସେ କୁଡ଼ିଆ ଭିତରେ ଧରିବେ ନାହିଁ । ତଥାପି ବାହାରୁ କେତେଜଣ ଘର ଭିତରକୁ ପଶିଆସିଲେ । ସେମାନେ ଦେଖିଲେ, ସେମାନଙ୍କର ସେନାପତି କାନ୍ଦୁଛନ୍ତି—ଠିକ୍ ପିଲାଙ୍କପରି କାନ୍ଦୁଛନ୍ତି । ସେମାନଙ୍କ ଆଖିରେ ଲୁହ ଆସିଗଲା । ସେମାନେ ତଳକୁ ମୁହଁ ପୋତିଦେଲେ । ସତେ ଯେପରି ନିଷ୍ଠୁର ପଥରଗୁଡ଼ାକଙ୍କର ହୃଦୟ ଫେରିଆସିଛି ।

କିଛି ସମୟ ଗୁଲିଲା ସେହି କ୍ରନ୍ଦନରୋଳ । ଦୁଃଖ ବିପଦ ଭିତରେ ବାପ-ମା' ଯେ ତାଙ୍କର ପୁଅକୁ ଫେରିପାଇଲେ, ଏ ଆନନ୍ଦକୁ ସେମାନେ ସ୍ୱାଗତ କଲେ କ୍ରନ୍ଦନଦ୍ୱାରା । ସେନାପତିଙ୍କ ଆଖିରେ ଲୁହ ଦେଖି ତାଙ୍କ

ନଷ୍ଟରେ ସୈନ୍ୟମାନେ ମଧ୍ୟ କାନ୍ଦପକାଇଲେ । ମାତ୍ର କାନ୍ଦିଲେ ନାହିଁ ଏକମାତ୍ର ଶ୍ରୀଜଗନ୍ନାଥଙ୍କ ବିଗ୍ରହ । ସେ ଯେଉଁଭଳି ବଳୟାରଭୁଜ ସେହିଭଳି ଲୀଳାମୟ । ସବୁ ନାଟର ଗୋବର୍ଦ୍ଧନ ସେ । ସେ ତ କୋଡ଼ିଏ ବର୍ଷ ତଳେ ତାଙ୍କର ପ୍ରଧାନ ଯାତ୍ରା ରଥଯାତ୍ରାରେ ପୁଅକୁ ହଜାଇ ଦେଇଥିଲେ । ବୁଢ଼ା-ବୁଢ଼ୀ ଦି'ଟା ବହୁଦିନ ନୀଳାଚଳରେ ରହି ତାକୁ ଖୋଜି ଖୋଜି ନିରାଶ ହୋଇ ଫେରିଥିଲେ । ଆଜି ପୁଣି ଏ ଦୁର୍ଦ୍ଦିନରେ ସେ ଫେରିପାଇଲେ ତାଙ୍କର ପୁଅ ଜଗୁକୁ । ସେ ତ ସବୁ କରୁଛନ୍ତି; ସବୁର ନକ୍ସା; ସବୁର ଖସଡ଼ା ତାଙ୍କର ପାଖରେ ।

ଟିକିଏ ସୁସ୍ଥ ହୋଇ ବୁଢ଼ା ଆଗେ ଅନାଇଲେ ମହାପ୍ରଭୁଙ୍କୁ । ସେତେବେଳେ ତାଙ୍କୁ ଦେଖାଗଲା, ସତେ ଯେପରି ମହାପ୍ରଭୁ ହସୁଛନ୍ତି ! ହସି ହସି କହୁଛନ୍ତି—ତୁମେ ମୋତେ ଚିହ୍ନିଲ······ଜାଣିଲ ?

ପୁଣି ବୁଢ଼ାଙ୍କ ଆଖିରେ ଲୁହ ଭରିଗଲା । ସେ ମୁଣ୍ଡ ହଲାଇ କହିଲେ, ନା ମହାପ୍ରଭୁ ! ମୁଁ କିଛି ଜାଣି ପାରୁନାହିଁ···କିଛି ବୁଝି ପାରୁନାହିଁ । ତୁମର ଲୀଳା ବୁଝିବାର ଶକ୍ତି ମୋର ନାହିଁ ।



